# ଐତିହାସିକ ଭୂମିକା ॥

ଶ୍ରୀ ବୃନ୍ଦାବନଚନ୍ଦ୍ରବିହାର ରଚୟିତା ଶ୍ରୀ ଜଗନ୍ନାଥ ଗଜପତି ନାରାୟଣ ଦେବ ମହାରାଜା ପାରଳାଖେମଣ୍ଡିର ଜଣେ ଲବ୍ଧପ୍ରତିଷ୍ଠ ନରପତି ଥିଲେ । ସେ ଜଣେ ଅସୀମ ସାହସିକ ବୀରପୁରୁଷ ଥିଲେ । ଭକ୍ତିନୈପୁଣ୍ୟ ସଙ୍ଗେ ସାହିତ୍ୟ ଚର୍ଚ୍ଚା ଓ ପ୍ରଗାଢ଼ ଈଶ୍ୱର ଭକ୍ତି ତାଙ୍କର ପ୍ରଧାନ ଅବଲମ୍ବନ ଥିଲା । ସେ, ବୋଧହୁଏ, ଖ୍ରୀ । ୧୭୬୦ ଠାରୁ ୧୮୦୦ ପର୍ଯ୍ୟନ୍ତ ପାରଳା ଗଜପତି ସିଂହାସନ ଅଳଙ୍କୃତ କରିଥିଲେ ।

ତାହାଙ୍କର ରାଜତ୍ୱ ସମୟରେ ମୁସଲମାନମାନେ ଗଞ୍ଜାମର ରାଜଧାନୀମାନ ଆକ୍ରମଣ କରି ଅଧିକାଂଶ ରାଜଧାନୀ ସ୍ୱାୟତ୍ତ କରିଥିଲେ, ଏବଂ ପାରଳାଖେମଣ୍ଡି ମଧ୍ୟ ଆକ୍ରମଣ କରିଥିଲେ । କିନ୍ତୁ ପ୍ରବଳପରାକ୍ରମଶାଳୀ ଜଗନ୍ନାଥଦେବଙ୍କ ଦ୍ୱାରା ସେମାନେ ବାରମ୍ବାର ପରାସ୍ତ ଓ ବିତାଡ଼ିତ ହୋଇଥିଲେ । ମୁସଲମାନମାନଙ୍କ ହସ୍ତରୁ ବିମୁକ୍ତ ଗଞ୍ଜାମ ରାଜଧାନୀରାଜ୍ୟ ଜଗନ୍ନାଥ ନାରାୟଣଦେବଙ୍କ ଅଧୀନତା ସ୍ୱୀକାର କରିଥିଲେ । ସେ ବିଜୟନଗର ରାଜ୍ୟକୁ ଆକ୍ରମଣକରି ତାହାର କିୟଦଂଶ ସ୍ୱରାଜ୍ୟଭୁକ୍ତ କରି ପାରିଥିଲେ । ସମଗ୍ର ଓଡ଼ିଶାରେ ନିଜ ଆଧିପତ୍ୟ ସ୍ଥାପନ କରିବା ଅଭିଳାଷରେ ସେ ସ-ସୈନ୍ୟରେ ଅଧୁନାତନ ଓଡ଼ିଶା ଆକ୍ରମଣ ପୂର୍ବକ ତାତ୍କାଳୀନ ପୁରୀ ମହାରାଜା ଶ୍ରୀବୀର କେଶରୀ ଦେବଙ୍କୁ ପରାସ୍ତ କରି ପୁରୀ ସିଂହାସନ ଅଧିରୋହଣ କରିଥିଲେ । ମାତ୍ର ମହାରାଜା ବୀରକେଶରୀ ଦେବ କଟକରେ ଆଶ୍ରୟ ନେଇ ମରହଟ୍ଟା ସୁବେଦାର ଶିବଭଟ୍ଟ ସାମନ୍ତଙ୍କ ସାହାଯ୍ୟ ପ୍ରାର୍ଥୀ ହୋଇଥିଲେ । ସ୍ୱୀୟ ରାଜ୍ୟରୁ ସୁଦୂର ଅବସ୍ଥାନ ବଶତଃ ଶତ୍ରୁ ପକ୍ଷୀୟ ବହୁ ସଂଖ୍ୟକ ସମ୍ମିଳିତ ସୈନ୍ୟ ଦ୍ୱାରା ଆକ୍ରାନ୍ତ ହୋଇ ପରାସ୍ତ ଓ ଧୃତ ହେବା ଆଶଙ୍କାରେ ସେ ସୁକୌଶଳେ ନିଜ ରାଜ୍ୟକୁ ସ-ସୈନ୍ୟରେ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ତାହାଙ୍କର ରାଜତ୍ୱର ଶେଷ ସମୟ ପାରଳାଖେମଣ୍ଡି ଗଡ଼ଜାତ ପ୍ରଦେଶରେ ଅତିବାହିତ କରିଥିଲେ ।

ଶ୍ରୀକ୍ଷେତ୍ର ଜୟପୁରୁ ପ୍ରତ୍ୟାବର୍ତ୍ତନପରେ ସେ ଭାରତର ସମୁଦାୟ ତୀର୍ଥ ସ୍ଥାନ ମାନ ପର୍ଯ୍ୟଟନ କରି ଥିଲେ । ମଥୁରା ଓ ବୃନ୍ଦାବନ ତାହାଙ୍କ ତୀର୍ଥ ଯାତ୍ରାର ପ୍ରଧାନ ସ୍ଥଳ ଥିଲା । ସେ ଶ୍ରୀବୃନ୍ଦାବନରୁ ସ୍ୱରାଜ୍ୟକୁ ଫେରିଲା ବାଦ ଅପଣାର ଇଷ୍ଟ ଦେବତା ଶ୍ରୀ ରାମସ୍ୱାମୀଙ୍କ ଶ୍ରୀଛାମୁରେ ଅବସ୍ଥାନ କରି ସେବାରେ ମନୋନିବେଶ ପୂର୍ବକ ୧୭୬୮ ଶକାବ୍ଦ ପ୍ଲବଙ୍ଗିତ ନାମ ସମ୍ବତ୍ସର କାର୍ତ୍ତିକ ଶୁକ୍ଳ ପଞ୍ଚମୀ ଦିବସରେ ଏହି ଗ୍ରନ୍ଥ ଆରମ୍ଭ କରି ମାଘ ଶୁକ୍ଳ ପଞ୍ଚମୀ ଦିବସରେ ପୂର୍ଣ୍ଣ କରିଥିଲେ ।

ଶ୍ରୀ ବୃନ୍ଦାବନଚନ୍ଦ୍ରବିହାର ପ୍ରାଚୀନ ଛନ୍ଦୋବନ୍ଧରେ ବିରଚିତ ଭକ୍ତି ରସାତ୍ମକ ଚତୁର୍ଦ୍ଦଶ 'ପ୍ରକାଶ' ବିଶିଷ୍ଟ ଭକ୍ତି କାବ୍ୟ । ଏହାର ଭାଷା ଯେପରି ସରଳ ପ୍ରତ୍ୟେକ ପ୍ରକାଶ ସେହିପରି ଭାବପୂର୍ଣ୍ଣ । ଏତଦ୍ ଭିନ୍ନ ଗ୍ରନ୍ଥର ନାନା ସ୍ଥାନରେ ଅନେକାନେକ ମନୋହର ଭାବରାଶି ପରିପୂର୍ଣ୍ଣ ରହିଅଛି । କବି କୌଣସି ସ୍ଥାନରେ କବିତା ମଧ୍ୟରେ ଯଥୋଚିତ "ଘରେଇ" ଭାଷା ବ୍ୟବହାର କରି କବିତାର ମାଧୁର୍ଯ୍ୟ ବଢାଇ ଅଛନ୍ତି । ମହାତ୍ମା ଜଗନ୍ନାଥନାରାୟଣଦେବ ସଂଗ୍ରାମପ୍ରିୟ ଓ ବୀରପୁରୁଷ ଥିଲେ ସ୍ୱୟଂ ଭକ୍ତ କବିଙ୍କ ଆସନରେ ଉପବେଶନ କରି ନିଜ ଜାତୀୟ ସାହିତ୍ୟ ଚର୍ଚ୍ଚା ପ୍ରତି ପ୍ରଗାଢ଼ ଅନୁରାଗ ପ୍ରଦର୍ଶାଇ ଥିବା ସାମାନ୍ୟ ଗୌରବର ବିଷୟ ନୁହେ ।

'ପ୍ରାଚୀନ ଗ୍ରନ୍ଥ' ପ୍ରକାଶ ପ୍ରୟାସୀ ପାରଳାର ସୁନାମଧନ୍ୟ ସ୍ୱର୍ଗୀୟ ଶ୍ରୀପଦ୍ମନାଭ ନାରାୟଣ ଦେବ ଏହି ଗ୍ରନ୍ଥର ପାଣ୍ଡୁଲିପି ସଂଗ୍ରହ କରିଥିଲେ । କିନ୍ତୁ ତାହାଙ୍କର ଅକାଳ ବିୟୋଗରେ ଏହି ପୁସ୍ତକ ବହୁ ବର୍ଷ ଲାଗି ଅପ୍ରକାଶିତ ରହିଥିଲା । ବର୍ତ୍ତମାନ ତାଳପତ୍ର ବହି ଓ କାଗଜର ପାଣ୍ଡୁଲିପି ତୁଳନାରେ ଏହି ଗ୍ରନ୍ଥ ମୁଦ୍ରିତ ହୋଇଅଛି । ଅତଏବ ମୁଦ୍ରଣରେ କେତେ ଗୁଡ଼ିଏ ବର୍ଣ୍ଣାଶୁଦ୍ଧି ରହିଯାଇ ଥିବାରୁ ତାହାର ଶୁଦ୍ଧିପତ୍ର ପୁସ୍ତକର ପରିଶିଷ୍ଟରୂପେ ସଂଲଗ୍ନ ରହିଲା । ତେବେ ମଧ୍ୟ ଅନ୍ୟ କେତେ ମୁଦ୍ରାଙ୍କନ ଦୋଷ ଅବଶିଷ୍ଟ ରହିଥିବା ସମ୍ଭବପର । ସେହି ସବୁ ଅନ୍ୟ ସଂସ୍କରଣରେ ପରିମାର୍ଜିତ ହେବ ।

ପାରଳାଖେମୁଣ୍ଡି }
୩୧—୫—୧୭ } ପ୍ରକାଶକ ।

## ଶୁଦ୍ଧି ପତ୍ର ।

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୩ | ଶାମଳ | ଶ୍ୟାମଳ |
| ୨ | ୧୭ | ଛନ୍ଦୁଁ | ମୂର୍ଖ |
| ୩ | ୩ | ସପ୍ନ | ସ୍ୱପ୍ନ |
| ୪ | ୧୩ | ବାଳହ | ବାଳକୁ |
| ୪ | ୨୨ | ପୋଟେମାଢି | ପୋଷେଢ଼ି |
| ୪ | ୨୨ | ଅନ୍ତ୍ରଜିରେ | ଅନ୍ତ୍ରୁଡ଼ିରେ |
| ୪ | ୨୨ | ସ୍ୱଥଉଲେ | ଶୁଥଉଲେ |
| ୫ | ୬ | ଯେ | ଏ |
| ୬ | ୫ | ଛସ୍ମ | ରସ୍ମ |
| ୬ | ୨୧ | ଗୋ ମା କ ତୁମ୍ଭେ କାପ କଥା କହ | ଗୋପାଳ ତୁମ୍ଭେ ଛପ କଥା କହ । |
| ୭ | ୮ | ବଲ | ଢାଳ |
| ୭ | ୧୪ | ଚଳନ୍ତ୍ରେ | ଶୃଳନ୍ତ୍ରେ |
| ୭ | ୧୬ | ଶାମସୁନ୍ଦରା | ଶ୍ୟାମସୁନ୍ଦର |
| ୨୩ | ୮ | ଢେଇ | ଢୋଇ |
| ୨୩ | ୮ | କପିଥ୍ | କପିଥି |
| ୨୪ | ୪ | ଗିଢବର | ଗିରିଜାଇ |
| ୩୪ | ୨୧ | ନନ୍ଦ୍ରଗଡ | ନନ୍ଦ୍ରାଗଢ |
| ୩୫ | ୨ | ବାପଗ | ବାପିଜ |
| ୩୬ | ୧୭ | ଶାମଘନ | ଶ୍ୟାମଘନ |
| ୩୮ | ୧୫ | ମଳରେ | ମୂଳରେ |
| ୫୧ | ୭ | ଲୁଥଉଁ | ଲୁଥଉଁ |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୬ | ୨ | ଗଲାଙ୍କ | ଗଳାଙ୍କ |
| ୫୦ | ୮ | ଭବ | ବନ |
| ୫୩ | ୨୪ | ଗୀରେ | ଶୀରେ |
| ୫୬ | ୧୪ | ଭଖ୍ଖଠୀ | ଭଣ୍ଠୀ |
| ୫୬ | ୧୪ | କଷଇ | କଢ଼ାଇ |
| ୬୦ | ୧୧ | ମିଳବ | ମିଳ୍ବ |
| ୬୧ | ୩ | ନଜ | ଅଙ୍ଗ |
| ୬୪ | ୪ | ଅଠ | ଅଠି |
| ୬୪ | ୬ | ଶେଷ | ଶୋଷ |
| ୬୬ | ୧୩ | ଅଠ | ଅଠି |
| ୭୦ | ୯ | ରେଷ | ରୋଷ |
| ୯୦ | ୧୦ | ବନେ | ବଚ |
| ୯୬ | ୧୩ | ପୂଣି | ପୁଣି |
| ୯୭ | ୧୯ | ପଷ୍ଟରୁଛ | ପଚ୍ରୁଛ |
| ୯୭ | ୧୪ | ବୁଝୁଲେଣି | ବୁଝିଲେଣି |
| ୯୮ | ୩ | ୯୧୨ | ୧୧୨ |
| ୯୮ | ୧୬ | ଅପ | ଅପି |
| ୧୦୦ | ୨୨ | ଷଷ୍ଠମ | ସପ୍ତମ |
| ୧୦୩ | ୮ | ବବାଇ | ବୋବାଇ |
| ୧୦୪ | ୨୦ | ମେଛି | ମୋଡ଼ି |
| ୧୧୦ | ୨୦ | ପେଷ୍ଟପାଦି | ପେଷ୍ଟକାଦି |
| ୧୧୨ | ୩ | ଅବଧ୍ୟ | ଅବଶ୍ୟ |
| ୧୧୪ | ୪ | ବଧୂ | ବଂଧୂ |
| ୧୧୪ | ୨୦ | ଷଷ୍ଟ | ସପ୍ତ |
| ୧୧୫ | ୧ | ସପ୍ତମ | ଅଷ୍ଟମ |
| ୧୧୬ | ୭ | ନର | ନଳ |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୧୭ | ୧୪ | ମନଦୋଜନାଭୂମ୍ୱେ | ମୁ ନବଘନ ଭୂ |
| ୧୧୯ | ୮ | ଘଦ୍ବି | ଘଦ୍ବିଂ |
| ୧୧୯ | ୧୮ | ସେଠାଙ୍କୁ | ସେଠାରୁ |
| ୧୨୦ | ୮ | ଏଦ୍ବିଷଣୀ | ଏଦ୍ବିଷ୍ଣୀଠ |
| ୧୨୦ | ୧୭ | ମ | ମୁଁ |
| ୧୨୧ | ୭ | ପୁଷ୍ଟ | ପୃଷ୍ଟ |
| ୧୨୧ | ୧୪ | କୁସ୍ପଙ୍କୁ | କୃଷ୍ଣଙ୍କୁ |
| ୧୨୨ | ୨୨ | ଘଦ୍ବଂ | ଘଦ୍ବିଂ |
| ୧୨୨ | ୨୪ | ୭୩ | ୬୫ |
| ୧୨୩ | ୫ | ଶଯ | ଶଯ୍ୟା |
| ୧୨୩ | ୫ | ଦୂର | ଦୂରେ |
| ୧୨୪ | ୧୮ | କଲ | କଲ୍ପ |
| ୧୨୫ | ୬ | ଅରମ୍ୟ | ଅଗମ୍ୟ |
| ୧୨୫ | ୨୩ | ପୂର୍ଣ୍ଣିମାପିଣ୍ଡ | ପୂର୍ଣ୍ଣିମାପିଣ୍ଡୀ |
| ୧୨୫ | ୨୪ | ଏମନ୍ତ | ଏମନ୍ତେ |
| ୧୩୧ | ୪ | ବ୍ରହ୍ମା | ବ୍ରହ୍ମା |
| ୧୩୭ | ୯ | ଦ୍ୱୋଜ | ହୁଡ଼ି |
| ୧୩୭ | ୯ | ୧୬୬ | ୧୭୬ |
| ୧୪୬ | ୨ | ଗୋର | ଘୋର |
| ୧୪୯ | ୩ | ସପତମେ | ନବମରେ |
| ୧୬୯ | ୧୦ | ଗନ୍ଧା | ଗନ୍ଧ |
| ୧୯୨ | ୧୩ | ଝଝଟଙ୍କ | ଝଟଙ୍କ |
| ୧୯୯ | ୯ | ପୁପ୍ପ | ପୁଷ୍ପ |
| ୨୦୦ | ୨୩ | ଗଢବର | ଗିରିବର |
| ୨୦୧ | ୧୭ | ଲଗ | ଲଗି |
| ୨୦୨ | ୨୩ | ପଡ଼ିବାରୁ | ପଡ଼ିବାରୁ |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୦୬ | ୨ | ସ୍ଥୁପ୍ତର | ମନ୍ଥର |
| ୨୧୮ | ୧୬ | ଭଦ୍ଦଲେ | ଚଢ଼ିଲେ |
| ୨୨୧ | ୪ | ଶାମକୁଣ୍ଡ | ଶ୍ୟାମକୁଣ୍ଡ |
| ୨୨୨ | ୨୯ | ବାଂଧି | ବାଣୀ |
| ୨୨୩ | ୨୦ | ଚଳାଷେ | ଚଳାଯୈ |
| ୨୨୪ | ୧୩ | ବେନ | ବେନ |
| ୨୨୫ | ୩ | ଧଦାରେ | ଧଦାରେ |
| ୨୨୫ | ୧୫ | ପ୍ରଭ | ପିଭ |
| ୨୨୬ | ୧୨ | ଯାହ | ଯାହା |
| ୨୨୭ | ୧୧ | ଧାଂଇଲ | ଧାଇଁଲ |
| ୨୨୮ | ୩ | ଢୁଁଣ୍ଡିପଡ଼ | ଢୁଣ୍ଡିଛନ୍ତି |
| ୨୨୯ | ୨୨ | ନେଢେ | ନେଢ଼ |
| ୨୩୦ | ୪ | ପଲବ | ପଲ୍ଲବ |
| ୨୩୧ | ୧୫ | ଦେଷ | ଦୋଷ |
| ୨୩୧ | ୧୪ | ଘୃଷି | ଘୃଷି |
| ୩୩୧ | ୨୨ | ନଦନ୍ତ ବନ୍ଦା | ନନ୍ଦନନ୍ଦ, ବଢ଼ |
| ୧୩୨ | ୮ | ସଙ୍ଗ | ମୋଢି |
| ୨୩୫ | ୧୫ | ଢାଡି | ଛାଉ |
| ୨୪୧ | ୧୨ | ଭବନ | ଧ୍ୱଜନ |
| ୨୪୧ | ୧୨ | ସ୍ଥଳରେ | ସ୍ଥଳରେ |
| ୨୪୬ | ୧୧ | ଗୋପାବାଳା | ଗୋପାଙ୍ଗନା |
| ୨୪୭ | ୭ | ଅଧର | ଭୃଷ୍ମ |
| ୨୪୮ | ୧୭ | ଶ୍ରୀକୃଷ | ଶ୍ରୀକୃଷ୍ଣ |
| ୨୫୦ | [illegible] | ଷାଘ | ଷୋଘ |
| ୨୫୦ | ୨୧ | ଅଢିଢ଼ି | ଅଢିଢି |
| ୨୫୧ | ୧୪ | କଳ | କଢ଼ |



# ଶ୍ରୀ
# ବୃନ୍ଦାବନଚନ୍ଦ୍ର ବିହାର

---

ପ୍ରଥମ ପ୍ରକାଶ ।

---

ରାଗ ମଙ୍ଗଳଗୁର୍ଜ୍ଜରୀ ।

ଜୟ କୃଷ୍ଣ କମଳ-ନୟନ ଦୀନବନ୍ଧୁ ।
ଜୟ ଶ୍ରୀଗୋକୁଳଚନ୍ଦ୍ର ଜନ କୃପାସିନ୍ଧୁ ହେ ।୧।
ଶ୍ୟାମଳ ନିର୍ମ୍ମଳତର କାନ୍ତିନୀରଦଗଞ୍ଜନ ।
ଚର୍ଣ୍ଣିତ ଅରବିନ୍ଦ ସୁଷମା ବଦନ ଯେ ।୨।
ନୀଳେନ୍ଦୀବର ଲୋଚନ ସୁମୃଣାଳ ଭୁଜ ।
ପଦକର କୋକନଦ ଅତ୍ୟନ୍ତ ବିଭ୍ରାଜ ଯେ ।୩।
ପଦ୍ମ ମକରନ୍ଦ ଜିଏ ନବ ପୀତାମ୍ବର ।
ମଞ୍ଜୁ କଞ୍ଜପାଦି ପଦଚିହ୍ନ ମନୋହର ଯେ ।୪।
ତୁମ୍ଭ ପଦ୍ମପାଦରେ ମୋହର ଦଣ୍ଡବତ ।
ଆରମ୍ଭ କରଇ ବ୍ରଜବିହାର ଚରିତ ଯେ ।୫।

ଏକ ଦିନେ ଅଳକାରେ ପ୍ରବେଶ ନାରଦ ।
ହରିନାମ ଉଚ୍ଚାରି ବଜାନ୍ତି ବୀଣାବାଦ୍ୟ ଯେ ।୬।
ଦେଖି ନଳ କୁବେର ହୋଇଣ କୃତ କୃତ୍ୟ ।
କଲେ ବ୍ରହ୍ମଋଷିଙ୍କ ଚରଣେ ପ୍ରଣମିତ ଯେ ।୭।
ହେ ମୁନି ବ୍ରଜମଣ୍ଡଳେ ଶ୍ରୀକୃଷ୍ଣ ବିହାର ।
ପଷ୍ପି କହିଣ ମୋତେ କରିବା ନିସ୍ତାର ଯେ ।୮।
ଅଜ୍ଞାନେ ସ୍ଥାବରରୂପେ ଥିଲୁ କେତେ ଦିନ ।
ଏହେତୁ ନଜାଣୁ ବ୍ରଜଲୀଳାର ବିଧାନ ଯେ ।୯।
ଶୁଣି ଗଦ ଗଦେ ମୁନି କହନ୍ତି ବଚନ ।
ଧନ୍ୟ ବ୍ରଜବାସୀ ତୁମ୍ଭେ କୁବେର ନନ୍ଦନ ଯେ ।୧୦।
ଏ ବ୍ରଜବିହାର ଅକଳିତ ବାରାନିଧି ।
ବିସ୍ତାରି କହିବାକୁ ମୋହର କେତେ ବୁଦ୍ଧି ଯେ ।୧୧।
ତୁମ୍ଭେ କୃଷ୍ଣଚରିତ ଶ୍ରବଣେ ଇଚ୍ଛା କଲ ।
କି ପୁଣ୍ୟ ଦିବସ ଅଜ ମୋତେ ନିସ୍ତାରିଲ ଯେ ।୧୨।
ବ୍ରହ୍ମା ଶେଷ ଶଙ୍କରେ ଅଗମ୍ୟ ଲୀଳା ଯାର ।
ସେ ଲୀଳା ପ୍ରକାଶକୃତେ ମୁଁ କେତେମାତର ଯେ ।୧୩।
ଯୋଗମାୟା ତହୁଁ ଶୁଣି ଶ୍ରୀକୃଷ୍ଣ ଚରିତ ।
ତୁମ୍ଭେ ପୃଚ୍ଛିବାରୁ ମୁଁ କହିବା ଯାମରଥ ଯେ ।୧୪।
ଏ ବ୍ରଜମଣ୍ଡଳ ପଦ୍ମ ଆକାର ଶୋଭନ ।
ତଥିମଧ୍ୟେ ନନ୍ଦପୁର କେଶର ସମାନ ଯେ ।୧୫।
କୃଷ୍ଣ ଭୃଙ୍ଗ ଯହିଁ ନିତ୍ୟେ କରନ୍ତି ବିହାର ।
ସଦା ପ୍ରଫୁଲ୍ଲ କାରକ ଅତି ମନୋହର ଯେ ।୧୬।
ତରକାଳୁ ରୋହିଣୀ ଯେ ନନ୍ଦପୁରେ ସ୍ଥିତ ।
ବସୁଦେବ ସେବାରେ ହୋଇଣ ଅନୁରତ ଯେ ।୧୭।

ଏକଦିନେ ନିଶାରେ ଆଗତ ମାହେଶ୍ୱରୀ ।
ସମର୍ପିଲେ ରୋହିଣୀଙ୍କ ଆଣି ହଳଧାରୀ ଯେ ।୧୮।
ନନ୍ଦ ଶୟନ ମନ୍ଦିରେ ହୋଇଣ ପ୍ରବେଶ ।
ସ୍ୱପ୍ନରେ କହିଲେ ଦେବୀ ଏସନ୍ତ ସନ୍ଦେଶ ଯେ ।୧୯।
ରୋହିଣୀ କୋଳେ କୁମାର ମୁଁ ଦେଇ ଅଇଲି ।
ଅତି ଯତ୍ନେ ପ୍ରତିପାଳ ଏ କୁମାର ବୋଲି ଯେ ।୨୦।
ଉଦ କନ୍ଦେ ଯଶୋଦା ଅନେକ କାଳୁ ସେବେ ।
ତାହାରେତ ସ୍ପଦୟୂ ନୋହିଲା କଦାଁ ଏବେ ଯେ ।୨୧।
କହନ୍ତି ଭବାନୀ ଶୁଣ ଏ ମୋର ଉତ୍ତର ।
ପୁତ୍ର ଉତ୍ପତ୍ତି ହୋଇବେ ସାକ୍ଷାତ ଈଶ୍ୱର ଯେ ।୨୨।
ଆଜୁଁ ବରଷକ ସମ୍ପୂର୍ଣ୍ଣରେ ସାତଦିନ ।
ଏତେକ କହିଣ ଦେବୀ ହେଲେ ଅନ୍ତର୍ଦ୍ଧାନ ଯେ ।୨୩।
ଚେତି ଯଶୋଦାରେ ନନ୍ଦ କହନ୍ତି ଉଦନ୍ତ ।
ଦେଖ ରୋହିଣୀଙ୍କ ଜାତ ହୋଇଅଛି ସୁତ ଯେ ।୨୪।
ଶୁଣି ଯଶୋଦା ବୋଲନ୍ତି କହତ ଅନୀତି ।
ଅନେକ କାଳୁ ରୋହିଣୀ ଅମ୍ଭ ଘରେ ଛନ୍ତି ଯେ ।୨୫।
କୁମର ଜନମ କଥା ଅତି ଅସମ୍ଭବ ।
ଏତେ କାଳେ କାହ୍ନୁଁ ହେଲା ଏମନ୍ତ ବଭବ ଯେ ।୨୬।
କୁହାଁ କୁହାଁ ବାଣୀ ଶୁଣି ଯଶୋଦା ପ୍ରବେଶ ।
ଦେଖିଲା ଅତି ସୁନ୍ଦର କୁମାର ପ୍ରକାଶ ଯେ ।୨୭।
ଯାଇ କୋଳେ ଧରି କୁମରକୁ ଯଶୋବତୀ ।
ସଚେତ କରାଇଲେ ରୋହିଣୀଙ୍କି ଜଗତି ଯେ ।୨୮।
ଯଶୋଦା ରୋହିଣୀ ପୁତ୍ର ହେବ ପୁରେ ଘୋଷ ।
ଶୁଣି ନଳ କୁବେର ଏ ଅନ୍ତ୍ରେ କୃଷ୍ଣରସ ଯେ ।୨୯।

ସେହିଦିନୁ ଯଶୋବନ୍ତୀ ଅଛି ଶୋଭ୍ରବନ ।
ଗର୍ଭେ ପ୍ରବେଶ ହେବାରୁ ପ୍ରଭୁ ଭଗବାନ ଯେ । ୩୦ ।
ଏ ଅନ୍ତରେ ବରଷେ ସମ୍ପୂର୍ଣ୍ଣ ସପ୍ତ ଦିନ ।
ଶ୍ରୀକୃଷ୍ଣ ପ୍ରବେଶ ହେଲେ ନନ୍ଦର ଭବନ ଯେ । ୩୧ ।
ନନ୍ଦ କୋଳେ ବହି କୃଷ୍ଣ ତାତ ବୋଲି କହି ।
ପୁତ୍ର ଅଣି ବସୁଦେବ ଯମୁନା ଛଡାଇ ଯେ । ୩୨ ।
ଏତେ କହି ଅନ୍ତର ହୋଇଲେ ଦିଗମ୍ବର ।
ଏଅନ୍ତରେ ବସୁଦେବ ଆସେ ନନ୍ଦପୁର ଯେ । ୩୩ ।
ପୁତ୍ର ଥୋଇ ପୁତ୍ରି ଘେନି ଚଲେ ନିଜ ପୁରେ ।
ସଚେତ ହୋଇଣ ନନ୍ଦ ଅତିହିଁ ସତ୍ୱରେ । ୩୪ ।
ଦେଖିଲେ ଯଶୋଦା କୋଳେ ନବଘନ ମୂର୍ତ୍ତି ।
ଯଶୋଦାଙ୍କୁ ଉଠାଇଣ କହନ୍ତି ଉକତି ଯେ । ୩୫ ।
ବୋଇଲେ ବାଳକ ତୁମ୍ଭେ ନିଦ୍ରାରେ ଅଜ୍ଞାନ ।
ଦେଖ କୋଳେ ସୁନ୍ଦର କୁମାର ଉତପନ୍ନ ଯେ । ୩୬ ।
ଚେତି ଯଶୋବନ୍ତୀ ଘେନି କୁମର କୋଳରେ ।
ଜାଣି ପ୍ରବେଶ ହୋଇଲେ ଗୋପୀ ଏକାଳରେ ଯେ । ୩୭ ।
ମଣ୍ଡିଲେ ସୂତିକା ଗୃହ ଅତିହିଁ ଯତନେ ।
ବଚନ୍ଦ୍ର ଚନ୍ଦ୍ର ଅତପ ଶୋଭିତ ରତନେ ଯେ । ୩୮ ।
ଧନ କନକ ବସନ ଭୂଷଣ ଅନେକ ।
ବଣ୍ଟେ ଦେଲେ ନନ୍ଦ ହୋଇ ଅତିହିଁ ଉଚ୍ଛୁକ ଯେ । ୩୯ ।
ନାଭି ଛେଦି ଉଷ୍ଣ ଜଳେ ସ୍ନାନ କରାଇଲେ ।
ପୋଶୋଳି ସମ୍ଭାଳି ଅନ୍ତଭିରେ ସୁଆଇଲେ ଯେ । ୪୦ ।
ବ୍ରଜପୁର ରମଣୀ ସକଳ ତହିଁ ମିଳି ।
ଅଛନ୍ତି ଆନନ୍ଦରେ ଦିଅନ୍ତି ହୁଳହୁଳି ଯେ । ୪୧ ।

ଦେଖି କୁମାର ସ୍ୱରୂପ କେ ବୋଲେ ଏସନ ।
ଧନ୍ୟବନ୍ତ ଯଶୋବନ୍ତି ଏ ନନ୍ଦ ରାଜନ ଯେ ।୪୨।
ସାକ୍ଷାତ ନବ ମୂରତି ମଦନ ଜିତା ଏ ।
ଦର୍ଶନରେ କୁଳବନ୍ତୀ ବ୍ରତ ଧ୍ୱଂସ ହୋଏ ଯେ ।୪୩।
ଏମନ୍ତେ ଅନେକ ରୂପେ କରନ୍ତି ପ୍ରଶଂସା ।
ଦେଖ ବୃଷ୍ଣି କାଳରେ ନନ୍ଦର ଯେ ସୁଦଶା ଯେ ।୪୪।
ଚତୁର୍ଥ ଦିବସେ ହେଲା ପୂତନା ପ୍ରବେଶ ।
ସ୍ତନେ ବିଷ ଭରି ହୋଇଅଛି ଦିବ୍ୟ ବେଶ ଯେ ।୪୫।
ବାଳକ ନାଶରୁ ମୋର ପୀଡ଼ା ଅତିସ୍ତନ ।
ଦିଅ କୁମାରକୁ କରାଇବ କ୍ଷୀର ପାନ ଯେ ।୪୬।
ଯଶୋଦା କୋଳରୁ କୁମାରଙ୍କୁ ବଳେ ନେଲା ।
ଶ୍ରୀକୃଷ୍ଣ ମୁଖରେ ସ୍ତନ ନେଇ ନିଯୋଜିଲା ଯେ ।୪୭।
ଅନ୍ତର୍ଯ୍ୟାମୀ ନାଥ ତାହା ଜାଣିଲେ ସତ୍ୱରେ ।
କ୍ଷୀର ସଙ୍ଗେ ଜୀବନ ଶୋଷିଲେ ଝାଟିକାରେ ଯେ ।୪୮।
ପ୍ରାଣଛଡ଼ି ରାକ୍ଷସୀ ଯେ ପଡ଼ିଲା ଭୂମିରେ ।
ଦେଖି ଅତି ଆଶ୍ଚର୍ଯ୍ୟ ହୋଇଲେ ଗୋପ ନରେ ଯେ ।୪୯।
ଭୟଙ୍କର ସ୍ୱରୂପୀ ସେ ଅତିହିଁ ବିସ୍ତାର ।
ପୁତ୍ର ନ ଦେଖି ଯଶୋଦା ଅତିହିଁ କାତର ଯେ ।୫୦।
ଉରେ ଶିରେ କର ତାଡ଼ି କରନ୍ତି ରୋଦନ ।
ଆହା ମୋ ଦୁଃଖି ସଞ୍ଚାଳ ଦରିଦ୍ରର ଧନ ଯେ ।୫୧।
ଯଶୋଦା ରୋଦନ ଦେଖି ଦେବୀ ପୂର୍ଣ୍ଣମାସୀ ।
ସନ୍ନିଧେ ମିଳିଣ ପୁଣ କହନ୍ତି ଆଶ୍ୱାସି ଯେ ।୫୨।
ନ କର ରୋଦନ ପୁତ୍ର ଦେବଇ ଅଣାଇ ।
ଶୁଣି ଯଶୋବନ୍ତି ପାଦେ ପ୍ରଣାମ କରଇ ଯେ ।୫୩।

ବୀରା ରାଇ ଅଙ୍କାଦେଲେ ଶୀଘ୍ର ହୋଇ ଯାଅ ।
ଧୂଳ ଦେଇ ଯଶୋଦାଙ୍କ ସନ୍ତୋଷ କରାଅ ଯେ । ୫୪ ।
ଅଙ୍କାଯୋଜ ବୀରା ଖୋଜି ଘରୁରେ ଆଣିଲେ ।
ହୋଲେ ଦଧ୍ୟୋଦ୍ଧ ଯଶୋଦାଙ୍କ ଦୁଃଖକୁ ଛେଦିଲେ ଯେ । ୫୫ ।
ବିଷ୍ଣୁ ଶାନ୍ତି ଅର୍ଥରେ କଲେହ ବସ୍ତ୍ର ଦାନ ।
ଗୃହେ ଘେନ ଯଶୋଦାଙ୍କ ଅତି ତୋଷ ମନ ଯେ । ୫୬ ।
ଦେଖି ଏ ରୀତିକ ପୁର ନର ନାରୀ ଗଣ ।
ଆଶ୍ଚର୍ଯ୍ୟ ହୋଇଲେ ଦେଖି ପୂତନା ମରଣ ଯେ । ୫୭ ।
ସ୍ତନେ ବିଷ ଭରି ଶିଶୁ ମୁଖୁ ବାନ୍ଧିଥିଲା ।
ବିଷ ଜର ସ୍ତନଦ୍ୱାରେ ପ୍ରାଣେ ହତ ହେଲା ଯେ । ୫୮ ।
ଗୋପୀଗଣ ମିଳି ପୁଣ କହନ୍ତି ଉତ୍ତର ।
ଦେଖରେ ଚରିତ ତିନି ଦିନର କୁମର ଯେ । ୫୯ ।
କେ ବୋଲଇ ମଦନସୁନ୍ଦର ନନ୍ଦସୁତ ।
ଦେଖିଲାମାତ୍ରକେ ହରୁ ଅଛୁ ଆମ୍ଭ ଚିତ୍ତ ଯେ । ୬୦ ।
କେ ବୋଲଇ ଅପୂର୍ବ ବଚନ ମୋର ଶୁଣ ।
ଯମୁନାକୁ ଯାଉଁ ମୁଁ ଦେଖିଲି ମୁନିଗଣ ଯେ । ୬୧ ।
କୃଷ୍ଣଲୀଳା ଚରିତ କହନ୍ତି ସର୍ବ ଋଷି ।
ମୋତେ ଦେଖି ବୋଇଲେ ସେ ବନ୍ଦିତ ପ୍ରଶଂସି ଯେ । ୬୨ ।
ସ୍ନାନ ଧାରଣ ସର୍ବେ କଲେ ସେ ଗମନ ।
ପଛେ ଏକ ଋଷିଙ୍କି ମୁଁ କଲଇ ଦର୍ଶନ ଯେ । ୬୩ ।
ବୋଇଲି ତୋମା କି ତୁମ୍ଭେ କିସ କଥା କହ ।
କହିଲେ ସେ ମୁନି ମୋତେ ଫିଟାଇ ସନ୍ଦେହ ଯେ । ୬୪ ।
କୃଷ୍ଣ ଗୋପେ ଜାତ ହେଲେ ତାଙ୍କ ସେବା କର ।
ବୋଲାଇବ ତୁମ୍ଭେଗୋ ଶ୍ରୀକୃଷ୍ଣ ମନୋହାରୀ ଯେ । ୬୫ ।

କେ ବୋଲଇ ମୁ ଦେଖିଲି ନିଶାରେ ସାକ୍ଷାତ ।
ଦେବଗଣ ଯେବଣ ଜନ୍ମେ ଚତୁର୍ମୁଖ ଯେ ।୬୬।
ଗଲେ ପାରିଜାତକ କୁସୁମ ବୃଷ୍ଟି କରି ।
ଦେଖ ଏ କୁସୁମ ଚିହ୍ନ ରଖିଚ ସଂହତି ଯେ ।୬୭।
କେ ବୋଲେ ଆମ୍ଭର ମନୋରଥ ହେଲା ପୂର୍ଣ୍ଣ ।
ଶମ୍ଭରପୁରେ କନ୍ଦର୍ପ ରତିଙ୍କ ଯୋଗେ ଯେ ।୬୮।
ପତି ହୋଇ ମତି ତୋଷି ଦେଲା ଯେଉଁ ସୁଖ ।
ଏ ଅମ୍ଭର ହୃଦେ ଅନେକ ଟୁଟିଲା ଦୁଃଖ ଯେ ।୬୯।
ସାତଦିନେ ଉଠିଆର ଉତ୍ସବକୁ ଗଲେ ।
ଶକଟ ତଳରେ ନେଇ ଯତ୍ନେ ଶୁଆଇଲେ ଯେ ।୭୦।
ଏ ସମସ୍ତ ଦେଖିଣ ଶକଟାସୁର ଆସି ।
ଗୁପତ ହୋଇଣ ଥିଲା ଶକଟେ ପ୍ରବେଶି ଯେ ।୭୧।
ବାଳକ ଦେଖି ଉପରେ ପଡୁଥିଲା ମାଡି ।
ତଳନ୍ତେ ଶ୍ରୀକୃଷ୍ଣ ପାଦ ହାତେ ଖଣ୍ଡା ଗୁଡି ଯେ ।୭୨।
କ୍ଷୀର ଘୃତ ଭକ୍ଷି କ୍ଷୀରଶାୟୀଙ୍କ ପରାୟେ ।
ଦିଶିଲେ ଶ୍ୟାମସୁନ୍ଦର ଅତି ଶୋଭାମୟେ ଯେ ।୭୩।
ଧାଇଁ ଆସି ଯଶୋବନ୍ତୀ ପାଉଁଛି ଧଇଲେ ।
ଗୋପ ନର ନାରୀଗଣ ଆସି ରୁଣ୍ଡ ହେଲେ ଯେ ।୭୪।
କେ ବୋଲଇ ପୁଅର ଥିଲାଗୋ କେତେ ଚେଷ୍ଟା ।
ଯଶୋବନ୍ତୀ ପୁତ୍ର ଲଭି ପାଏ ଏତେ କଷ୍ଟ ଯେ ।୭୫।
କହନ୍ତି ବାଳକେ ଆମ୍ଭେ ଖେଳୁଥିଲୁ ବସି ।
ଛୋଡି ଏ ପ୍ରକାଶିଣ ଶରୀରେ ଗଲା ମିଶି ଯେ ।୭୬।
ଏମନ୍ତ ପ୍ରକାରେ କେତେ ଦିନ ଯେ ଅନ୍ତରେ ।
ପୁତ୍ର ଘେନି ଯଶୋବନ୍ତୀ ଉଭା ପ୍ରାଙ୍ଗଣରେ ଯେ ।୭୭।

ଅତି ଗର୍ବ ହେଜି ପୃଷ୍ଠ ରଖିଲେକ ତଳେ ।
ଦେଖନ୍ତି ଦେବସ୍ତ୍ରୀଗଣ ଅକାଶମଣ୍ଡଳେ ଯେ । ୭୮ ।
ତୃଣାବର୍ତ୍ତ ଉଡ଼ାଇଲା ଏ ସମୟେ ଅସି ।
ବାତ ଚକ୍ର ପରାୟେକ ଧୂର ମଧେ ପଶି ସେ । ୭୯ ।
ବସୁରଇ କଂଶଠାରେ ଦେବ ଏ ନନ୍ଦନ ।
ଅତି ପୁରଷ୍କାରେ ମୁ ପାଇବ ବହୁଧନ ଯେ । ୮୦ ।
ଉଡନ୍ତି ଅକାଶ ମାର୍ଗେ ଦେଖି ସ୍ୱର୍ଗ ନାରୀ ।
ମରୁ ଏ ରାକ୍ଷସ କୃଷ୍ଣ ମାରନ୍ତୁ ବସ୍ତି ଯେ । ୮୧ ।
ଦଇତର ମାୟୁକୁ ଜାଣିଲେ ମାୟାଧର ।
ଅତି ଗର୍ବ ହେଲେ ଯେହ୍ନେ ମହା ଗିରିବର ଯେ । ୮୨ ।
କଣ୍ଠ ରୁନ୍ଧନ୍ତେ ଦନୁଜ ହୋଇଲା ଅଜ୍ଞାନ ।
ଭୂମିରେ ପଡନ୍ତେ ତାର ଛେଡିଲେ ଜୀବନ ଯେ । ୮୩ ।
ଚକ୍ରବାତ ଘାତରେ ଉଚ୍ଛନ୍ନ ପୁରଜନ ।
କେବୋଲେ ନ ଦିଶେ ଭ୍ରାତ କେବୋଲେ ନନ୍ଦନ ଯେ ।୮୪।
କେ ବୋଲେ ଖୁଡୁତା ଶାଶୁ କେ ବୋଲେ ମଉଳା ।
କେ ବୋଲେ ମୋ ପୁତ୍ର ଶୁକ ପାଟେଇ ଉଡ଼ିଲା ଯେ ।୮୫।
ଏମନ୍ତେ ଅନେକରୂପେ କରନ୍ତି ରୋଦନ ।
ଆକୁଳ ହେଲେ ଯଶୋଦା ନ ଦେଖି ନନ୍ଦନ ଯେ । ୮୬ ।
ମୂର୍ଚ୍ଛାଗତ ହୋଇ ସେ ଭୂମିରେ ପଡ଼ି କାନ୍ଦି ।
ଦେଖି ପୌର୍ଣ୍ଣମାସୀ ପାଦ ତଳେ ପଡ଼ି ବନ୍ଦି ଯେ । ୮୭ ।
ପୁତ୍ର ଦାନ ଦିଅ ମୋତେ ଜଗତ ଜନନୀ ।
କୃଷ୍ଣ ନ ଦେଖିଲେ ନ ରହିବ ପ୍ରାଣ ଯେନ ଯେ । ୮୮ ।
ବୀରା ରାଇ ଦେବୀ ଆଜ୍ଞା ଦେଲେ ବେଗେ ଅଣ ।
ଦେଖିଲେକ ଯାଇ ସେଯେ ଅସୁର ମରଣ ଯେ । ୮୯ ।

ଶ୍ରୀକୃଷ୍ଣଙ୍କୁ ଆଣି ଯଶୋଦାଙ୍କରେ ସମର୍ପିଲା ।
ପୁତ୍ର ଦେଇ ଯଶୋବନ୍ତ ପରାଣ ରଖିଲା ଯେ ।୯୦।
ଏଥକୁ ସମ୍ପୂର୍ଣ୍ଣ ହେଲା ଏକବିଂଶ ଦିନ ।
ନାମକରଣେ ଗାର୍ଗବ ହେଲେ ଆଗମନ ଯେ ।୯୧।
ପାଠବସ୍ତ ଦୋଳରେ ଶୁଅନ୍ତେ ଅନୁପମ ।
ରୂପ ଦେଖି ଗାର୍ଗବ ଦେଲେକ କୃଷ୍ଣ ନାମ ଯେ ।୯୨।
ଧବଳ ମୂରତି ଦେଖି ବଳଭଦ୍ର ବୋଲେ ।
ଅତି ତୋଷେ ବେନି ନାମ ବେନି ପୁତ୍ରେ ଦେଲେ ଯେ ।୯୩।
କେତେ ଦିନ ଅନ୍ତେ ବାଳକ୍ରୀଡା କୃଷ୍ଣ ରାମ ।
ଯେଜନ ଜନନୀଏ ହୋଇଣ ଅତି ପ୍ରେମ ଯେ ।୯୪।
ଦୋଳା ପଲଙ୍କେ ଶୋଇଣ ଖେଳନ୍ତି ଶ୍ରୀହରି ।
କର ଶିଖାଜି ଚରଣ ଗୃହେ ଧୀର କରି ଯେ ।୯୫।
ଅଣ୍ଟାରେ ରଙ୍ଗ ଝୁମୁକା ଝୁମ୍ପାମାନ ଗୁନ୍ଥି ।
ଶ୍ରୀକୃଷ୍ଣଚନ୍ଦ୍ର ହସନ୍ତି ଅତି ତୋଷ ହୋଇ ଯେ ।୯୬।
ଦନ୍ତ ବାହାରେ ଲାଳରେ ହୋଇ ଜରଜର ।
ଅଇ ପଦ୍ମନାଭ କର କହନ୍ତି ଉତ୍ତର ଯେ ।୯୭।
ଝିଅ କାନ୍ଧି ପାଇଲ ଏ ଅପୂର୍ବ ପୁଅଙ୍କୁ ।
ପାକୁଆ ଲାଳୁଆ ଏ ଛିପୁଣ୍ଡ୍ର କାନ୍ଦୁଅଛୁ ଯେ ।୯୮।
କଳା ମେଘ ପ୍ରାୟେକ ଏ ଅଙ୍ଗ ଦିଶୁଅଛୁ ।
ଦେଖ ଦେଖ ଏ ହେମୋ ବାଣୀ ଶୁଣିଣ ହସୁଛୁ ଯେ ।୯୯।
ଯଶୋଦା ବୋଲନ୍ତି ଅତି ହୋଇଲ ଲାଳୁଆ ।
ଅମୂଲ୍ୟ ରତନ ମୋର ମାଣିକ ଟବୟ୍ୟୁ ଯେ ।୧୦୦।
ମାଏ ଏଣୁ ଭଲାୟୁ ହୋଇଣ ଛାଡ଼ି ଥାଉ ।
କଲ୍ୟାଣ କର ତୁମ୍ଭର ଅନୁଷଙ୍ଗ ପାଉ ଯେ ।୧୦୧।

ପୁଣି ରାମ କୋଳ କରି କୃଷ୍ଣଙ୍କୁ ଧରନ୍ତି ।
ନପାର କର ଧରଣ ଗେଲେ ଓଠାଚନ୍ତି ଯେ ।୧୦୨।
ବଡ଼ୁ କଉଚ ବୋଲି କେତେ ମାସ୍ତେ ଅଜଡୋଇ ।
ଅତି ଅନନ୍ଦେ ସ୍କନ୍ଧାନ୍ତ ଉଦ୍ଧ ଉରେ ଇଦ୍ଧି ଯେ । ୧୦୩ ।
ରାମ ପାଶେ ବସି କୃଷ୍ଣ ଶ୍ରୀଅଙ୍ଗ ଅଉଂସି ।
ଗେଲ କର ଓଠାରନ୍ତି ଦୋଇଣ ଯାଦବୀ ଯେ ।୧୦୪।
ଅଶ୍ରିଜଳରେ ଭେଜଣ ଝଗ୍ଳ ପୂରାଇ ।
ଶ୍ରୀକୃଷ୍ଣ କାନ୍ଦନ୍ତେ ପୁଣି ପ୍ରବୋଧନ୍ତି ଉଦ୍ଧିଂ ଯେ ।୧୦୫।
ହୁଇଁ ମାଏ ଯାଇ ପୁଅ ଧର ଏହା କହି ।
ନ ମାର ବାବୁ ତୁମ୍ଭ ଅଟେ ପାନ ଘ୍ରଇ ଯେ ।୧୦୬।
ଏହିରୂପେ ଦିଗ୍ଧ ଦିନକର ଲୀଳାମାନ ।
କର୍ଣ୍ଣ ପ୍ରବେଶନ୍ତେ ଧୂପ ଦିଅନ୍ତି ଯତନ ଯେ ।୧୦୭।
ପୁଣି ନନ୍ଦ ଯଶୋଦା ଯେ ସନ୍ନିଧିରେ ବସି ।
ପୁତ୍ରଙ୍କ ମୁଖକୁ ଚାହିଁ ହୋଇ ଅତି ତୋଷି ଯେ ।୧୦୮।
ତୁମ୍ଭ ପାଟଲା ଦାଢ଼ିକି ଯେବେ ନ ଦେଖିବ ।
ଯଶୋଦା ବୋଲନ୍ତି ମୋର କୁମର ଜଉବ ଯେ ।୧୦୯।
ଏତେବୋଲି ଯଶୋବନ୍ତି ନଜ କରେ ଧର ।
ସ୍ତନ ମୁଖେ ଦେଇଥାନ୍ତି ଅତିହିଁ ତୋଷେଭର ଯେ ।୧୧୦।
ମାତାଙ୍କ କୋଳରେ କୃଷ୍ଣ କଲେ ମଳ ମୂତ୍ର ।
ଅସୁଖେ ନନ୍ଦ ବୋଲନ୍ତି ଏ କଲ ତରତ ଗୋ ।୧୧୧।
ମାଏ ବୋଲନ୍ତି ଏ ମୋତେ ସଦା ଲାଗିଥାଉ ।
ଏହି ଉଲ୍ଲାସରେ ଏ ମୋହର ଦିନ ଯାଉ ଯେ ।୧୧୨।
ନନ୍ଦ ଯଶୋଦା ଏମନ୍ତ ବାତ୍ସଲ୍ୟ ରସରେ ।
ଦିନୁ ଦିନୁ ଅନୁରାଗ କହିଲେ ନ ସରେ ଯେ । ୧୧୩ ।

ନାନାରୂପେ ଖେଳନ୍ତି ଦେଇଣ ଗୁଳୁଚୁଙ୍ଗା ।
ଖଣ୍ଡେ ଦୂର ଯାଇଣ ପୁଣିହିଁ ପଛଘୁଞ୍ଚା ଯେ ।୧୧୪।
କରେ ଧରି ନବନୀତ ଅଣୁଥାଇ ଚୂଲି ।
ପୁଣି ପୁଣି ଡାକନ୍ତି ସେ ମାଆଁ ମାଆଁ ବୋଲି ଯେ ।୧୧୫।
ମୁଖେ ଚୁମ୍ବ ଦେଇ ମାଏ ଧୂଳି ଝାଡ଼ି ଧରି ।
ଗେଲ କରନ୍ତି କୋଳରେ ଯେନ କରି ହରି ଯେ ।୧୧୬।
କାଖ କରି ଶ୍ରୀକୃଷ୍ଣଙ୍କୁ କେବଣ କାମିନୀ ।
ହିଅରେ ଲଗାଇଣ ପୁଣିହିଁ କରେ ଯେନ ଯେ ।୧୧୭।
ଅଢେହିଁ ଘନ କଠିଣ କୁଚରେ ଲଗାଇ ।
ଗାଲବାଇ କେହୁ ହାଣ୍ଡି ଝୁଲଇ ବୋଲଇ ଯେ ।୧୧୮।
ଦେହ ଫୁଟିବ ବୋଲିଣ ଭକ୍ତିଁ କେ ବୋଲଇ ।
ହାଣ୍ଡି ଝୁଲନ୍ତେ କଙ୍କିଣୀ ଘଣ୍ଟି ବାଜଇ ଯେ ।୧୧୯।
କେ ବୋଲେ ହାଣ୍ଡି କନରେ କହିବ କାହାକୁ ।
କେ ବୋଲେ ସଜନୀ ଭାଗ୍ୟ ଥିବ ଗୋ ଯାହାକୁ ଯେ ।୧୨୦।
ନାନା ମତେ ଗୋପୀଗଣ ଏମନ୍ତ ଭାଷନ୍ତି ।
ମୁରୁଛି ନ ପାଇ କ୍ଷଣେ ଘରେ ନ ରହନ୍ତି ଯେ ।୧୨୧।
କ୍ରମେ ସମ ବୟସ ସଖାଙ୍କ ସଙ୍ଗେ ଖେଳ ।
ହାଣ୍ଡି ପହଣ୍ଡି ପାଖର ପ୍ରାଙ୍ଗଣରେ ବୁଲି ଯେ ।୧୨୨।
ଗୋପୀଗଣ ବେଢ଼ି ଶ୍ରୀକୃଷ୍ଣଙ୍କୁ ଏହା କହି ।
ରଙ୍ଗବାଜି କୃଷ୍ଣ ବଳରାମ ହାତେ ଦେଇ ଯେ ।୧୨୩।
ବେନି ଭାଇ ବନେ ଯାଇ ରଖ ବଛା ଗାଈ ।
ନାନାମତେ ଗୋପୀଗଣ ଏହି ମତେ କହି ଯେ ।୧୨୪।
କେଉଁ ଗୋପୀ ମାଣ ହୁଡ଼ବୋଟି ଭରି କରି ।
କନେ ଦିଅଇ ଅନେକ ଦ୍ରବ୍ୟ ମାନ ଭରି ଯେ ।୧୨୫।

କୃଷ୍ଣ କଥା କହିବ ଗୋ ବୋଲି କେ ଛଡ଼ାଇ ।
ଶୁଅପରା କହ କେଉଁ ଗୋପୀକା ପଢ଼ାଇ ଯେ ।୧୨୬।
କେତେ କହିବ ମୁଁ କୃଷ୍ଣ ଯେ ବାଲ୍ୟ ଚରିତ ।
ବର୍ଣ୍ଣିଲା କହି ବସିଲେ ହୋଇବ ବର୍ଷ ଶତ ଯେ ।୧୨୭।
ଏଥୁଅନନ୍ତରେ ଯେ କେତେଦେହେଁ ଦିନ ଗଲା ।
ଅତି ଅଦ୍ଭୁତ ଏ ଶ୍ରୀକୃଷ୍ଣ ବାଳ ଲୀଳା ଯେ ।୧୨୮।
କ୍ରମେ କ୍ରମେ କୁମାରଙ୍କ ସଙ୍ଗତେ ଖେଳନ୍ତି ।
କେତେବେଳେ ଗୋପୀଙ୍କର ଭୁବନେ ମିଳନ୍ତି ଯେ ।୧୨୯।
କାହା ପୁରେ ଘର କାହା ପୁରେ ନବନୀତ ।
କାହାକୁ ମାଗନ୍ତି କର କଠାଳ ବନ୍ଧୁତ ଯେ ।୧୩୦।
କାହା ପୁରେ ପଶି ହାଣ୍ଡି ଭାଙ୍ଗି ଗଳ ଦେଇ ।
କାହା କରୁ ଛଡ଼ାଇଣ ଯାଅନ୍ତି ପଳାଇ ଯେ ।୧୩୧।
କରନ୍ତି ଗୋପୀଏ ନନ୍ଦରାଣୀରେ ଗୁହାରି ।
ତୁମ୍ଭପୁତ୍ର ହେତୁରୁ ତେଜିବୁ ଏହି ପୁରୀ ଗୋ ।୧୩୨।
କେ ବୋଲେ ମୋ ପୁରେ ପଶି ଲବଣୀ ଖାଇଲା ।
କେ ବୋଲେ ମୋପୁରେ ଇଷ୍ଟଦେବତା ହୋଇଲା ଯେ ୧୩୩
କେ ବୋଲେ ମୋ କୁମାରୀଙ୍କ ବଧୂହେବ କହି ।
ଦଧି ସର ନବନୀତ ଖାଇଲା ଭୁଲାଇ ଯେ ।୧୩୪।
ଏମନ୍ତେ ଅନେକ ମତେ କହନ୍ତି ବଚନ ।
ଯଶୋବତୀ କହନ୍ତି ମୁଁ ଦେବ ନିଅ ଧନ ଯେ ।୧୩୫।
ଦଣ୍ଡଦ୍ରବ ନନ୍ଦନଏ ଥିବ ଅବା ଖାଇ ।
କେତେ ପରକାରେ ତୁମ୍ଭେ କହୁଛ ଲଗାଇ ।୧୩୬।
ଜନନୀରେ ବଳଭଦ୍ର କହନ୍ତି ଏମନ୍ତ ।
ଦେଖ ମୃତ୍ତିକା ଭକ୍ଷଣ କରେ ତୁମ୍ଭ ସୁତ ଗୋ ।୧୩୭।

ଶୁଣି ଯଶୋବତୀ ହୋଇଣ ଅତି କୋପ ଚିତ୍ତ ।
ହତେ ଘଟ ଘେନି ପୁତ୍ରକୁ କହନ୍ତି ଏମନ୍ତ ଯେ । ୧୩୮ ।
ନଖାଉ ପକାଉ କରେ ଦେଲେ ଦଧି ଘର ।
ମୃତ୍ତିକା ଭକ୍ଷଣ କରୁ ଏହି ରୀତି ତୋର ଯେ । ୧୩୯ ।
ନାହିଁ ବୋଲନ୍ତେ ଯଶୋଦା ବୋଇଲ ଦେଖା ତୁଣ୍ଡ ।
ଦେଖାନ୍ତେ ଦେଖିଲେ ଗର୍ଭେ ଜଗତ ବ୍ରହ୍ମାଣ୍ଡ ଯେ । ୧୪୦ ।
ମୂର୍ଚ୍ଛାଗତ ହୋଇଣ ଯଶୋଦା ମନେ ଘେନ ।
କିଅଛି ମୁଁ ଭ୍ରମ ତଳେ ଏମନ୍ତ ଦେଖିଲି ଯେ । ୧୪୧ ।
ପୁତ୍ରଙ୍କୁ କୋଳରେ ଧରି ପୁରେ ପରବେଶ ।
ପୌର୍ଣ୍ଣମାସୀଙ୍କି ବନ୍ଦନା କରି ଅତି ତୋଷ ଯେ । ୧୪୨ ।
ଏ ଅନ୍ତରେ କୃଷ୍ଣ ଗୋପେ କରନ୍ତି ବିହାର ।
ନାନା ଉପଦର୍ପ କରୁ ଥାନ୍ତି ସବ ପୁର ଯେ । ୧୪୩ ।
କାହା କୁମରକୁ ମାରି କାହାକୁ ଚଳାଇ ।
କାହାକୁ ଗାଳି କରଣ ଯାଆନ୍ତି ପଳାଇ ଯେ । ୧୪୪ ।
ଯଶୋଦା ଦଧିମନ୍ଥନ କରୁଥିଲେ ଦିନେ ।
ସମସ୍ତେ କହିଲେ ଯାଇ ଗୁହାରି ଏସନେ ଯେ । ୧୪୫ ।
ଶୁଣି ଯଶୋଦା ହୋଇଣ ଅତି କ୍ରୋଧ ମନ ।
କୃଷ୍ଣଙ୍କର ଭୁଜ ଯାଇ ଧଇଲେ ବନ୍ଧନ ଯେ । ୧୪୬ ।
ତୋଳେ ବାନ୍ଧି ଯଶୋଦା ପ୍ରବେଶ ହେଲେ ପୁରେ ।
ପଶିଲେ କୃଷ୍ଣ ଯାମଳା ଅର୍ଜ୍ଜୁନ ମଧ୍ୟରେ ଯେ । ୧୪୭ ।
ଉଠାଇନ୍ତେ ଉପୁଡ଼ି ଯେ ପଡ଼ିଲେ ପାଦପ ।
ଶାପ ବିମୁକ୍ତରୁ ହେଲେ ଦେବତା ସ୍ୱରୂପ ଯେ । ୧୪୮ ।
ବଟ ପତ୍ର ଶାୟୀ ବାଳ ମୁକୁନ୍ଦ ସ୍ୱରୂପ ।
ଧାଇଁ ଯଶୋଦା ଧଇଲେ ମନେ ବହି ତାପ ଯେ । ୧୪୯ ।

ତୁଷ୍ଟ ଶାନ୍ତ କରାଇଣ ବସ୍ତ୍ରେ ଦେଲେ ଦାନ ।
ଦେଖି ଅତି ଅଦ୍ଭୁତରୀତିକ ପୁର ଜନ ଯେ ।୧୫୦।
ଦେଖନ୍ତେ ଉତ୍ପାତ ହେଉ ଅଛୁ ଏ ନଗରେ ।
ବୃକ୍ଷେ ଫଳେ ବସ୍ତ୍ରର ରହିବା ଅନ୍ନ ପୁତ୍ରେ ଯେ ।୧୫୧।
ଧମସ୍ତ୍ରେ ବସ୍ତ୍ରହ ଯେ ବାହାର ସ୍ୱତ୍ତ୍ୱ ହୋଇ ।
ଯେ ଯାହାର ଦ୍ରବ୍ୟମାନ ଶଙ୍କଟେ ଘୁରାଇ ଯେ ।୧୫୨।
ଯାଇ ଅତି ଉତ୍ସୁକେ ପ୍ରବେଶି ବୃନ୍ଦାବନେ ।
ପୁରେକ ରଚଲେ ତହିଁ ଅତିହିଁ ଯତନେ ଯେ ।୧୫୩।
ପଦ୍ମ ଆକାର ମଣ୍ଡଳ ଅତି ଶୋଭାକର ।
ତଥିମଧ୍ୟେ ନନ୍ଦପୁର ଶୋଭନ କେଶର ଯେ ।୧୫୪।
ନନ୍ଦନ ବନ ସମାନ ଉପବନ ଶୋଭା ।
ଦ୍ୱାରପ୍ରତି ସମ ସ୍ୱର ଗୃହିଁ କେତୁ ଲୋଭା ଯେ ।୧୫୫।
ନିଷ୍ଠେ ରହିଲେ ନନ୍ଦ ଦେନ ବେନ ପୋଏ ।
କେ କହି ପାରବ ପୁର ଜନ ସୁଖୋଦୟେ ଯେ ।୧୫୬।
କେଉଁ ଗୋପୀ ଦେଖିଣ ବୋଲଇ ବକ୍ର ବାଣୀ ।
ଅହେ ନବ ମଦନ ରସିକ ଶିରୋମଣି ଯେ ।୧୫୭।
ବାଳ କାଳେ ହରୁଅଛ ନାଗରୀଙ୍କ ମନ ।
ଯୁବା ହେଲେ ହୋଇବ ଯୁବତୀ ପ୍ରାଣଧନ ଯେ ।୧୫୮।
ଶ୍ରୀକୃଷ୍ଣ ବୋଲନ୍ତି କହ ହ ରଙ୍ଗୀ ଉତ୍ତର ।
କୃତମାନ ଦେଖାଇ ମାନବ ମୋର ହର ଯେ ।୧୫୯।
ବୋଲ ଏ ଶମ୍ଭୁ ସେବଲେ ହେବ ସର୍ବସିଦ୍ଧି ।
ଅମ୍ଭେ ବାଳକ ନଜାଣୁ ଶିଖାଉଛ ବୁଦ୍ଧି ଯେ ।୧୬୦।
ତେବେ ଏ ଶମ୍ଭୁରେ ପାଣି ପଦ୍ମକୁ ଚଢ଼ାଇ ।
ତୋଷି ଶଙ୍କର କନ୍ଦର୍ପ ଚାପୁ ହେବୁ ଛାଡ଼ି ଯେ ।୧୬୧।

ଏମନ୍ତ ଅନେକ ରୂପେ ଗୋପୀ ବକ୍ର ବାଣୀ ।
ଶୁଣି ଶ୍ରୀକୃଷ୍ଣ କହନ୍ତି ମନେ ହସି ପୁଣି ଯେ ।୧୬୨।
ତୁମ୍ଭେ ଯେବେ କହୁଅଛ ଏମନ୍ତ ଉତ୍ତର ।
ବନେ ବତ୍ସ ଚରାଇବୁ ନ ରହିବୁ ପୁର ଯେ ।୧୬୩।
ଶୁଣି ଗୋପୀଗଣ ଅତି ଆନନ୍ଦିତ ମନ ।
ଶେଷ ହେଲା କୃଷ୍ଣ ବାଳଲୀଳାର ବଧାନ ଯେ ।୧୬୪।
ଏ ଭବସାଗର ତରଣିକୁ ଅଟେ ନାବ ।
ବର୍ଣ୍ଣିଲେ ଶ୍ରୀ ଜଗନ୍ନାଥ ନାରାୟଣ ଦେବ ଯେ ।୧୬୫।
ଅଜ୍ଞାନ କଳ କଲୁଷ କରିବାକୁ ନାଶ ।
କଲି ବୃନ୍ଦାବନଚନ୍ଦ୍ର ବହାର ପ୍ରକାଶ ଯେ ।୧୬୬।



## ଦ୍ୱିତୀୟ ପ୍ରକାଶ ।

ରାଗ ଅଷ୍ଟାଢ଼ଶୁକ୍ଳ ।

ଜୟ ଯମୁନା ମିହିର ନନ୍ଦିନୀ । ଏ ଯେଉଁ ଅଟୁ ଜଗତ ବନ୍ଦିନୀ ।
ଶ୍ରୀକୃଷ୍ଣ ଅଙ୍ଗ ସଙ୍ଗ ଲୀଳା ସ୍ଥଳ । ପ୍ରକାଶ ହୋଇ ବୃନ୍ଦାବନ ତୁଳ ।
ଗୋଷ୍ଠଜନପାବନୀ । ଶ୍ରୀକୃଷ୍ଣ ଅଙ୍ଗ କାନ୍ତି ହାରିଣୀ ।୧।

ଅତି ସୁନ୍ଦର ଶ୍ରୀମୁଖ ରାଜୀବ । ପ୍ରକାଶି ହୋଇ ଶୋଭୁ କଇରବ ।
ଅତି ଶୋଭବନ ମୃଣାଳ ଭୁଜ । ନୟନ ଭଙ୍ଗୀ ଏ ନୀଳ ଅମ୍ବୁଜ ।
କୋକନଦ କର । ନଖ କିଞ୍ଜଳ୍କ ବିଶଦ ସୁନ୍ଦର ।୨।

ଉରଜ କି ଚକ୍ରବାକ ଯୁଗଳ । ଜଘନ ସମ୍ପୁଟଜ ମଞ୍ଜୁଳ ।
ହଂସ ଗତିରେ ଅତି ମନୋରମ । ସ୍ୱଚ୍ଛ ତରଙ୍ଗ ବିଶେଷ ଅନୁପମ ।
କୃଷ୍ଣ ବିଳାସିନୀ । ଚରଣ ଦର୍ଶନେ ପାପ ନାଶିନୀ ।୩।

ନଳ କୁବେର ଯୋଡ଼ି ବେନି କର । ନାରଦେ ସ୍ତୁବନ୍ତି କୋମଳ
ଗୀର । ଶୁଣିତ ଅମର ସ୍ୱରୂପ ଲଛା । କହି ପୂର୍ଣ୍ଣ କରବ ମନୋ
ବାଞ୍ଛା । ।ଏଅନ୍ତେ ଶ୍ରୀହରି । ଏ ଲୀଳା କଲେ କହିବା ସ୍ତୋତ୍ର ।୪।

ନାରଦ ଅତି ଉତ୍ସବ ହୋଇ । କହନ୍ତି ନଳ କୁବେରଙ୍କୁ ଗୃହିଁ ।
ଏକଦିନେ ନନ୍ଦଅଗେ ଶ୍ରୀହରି । କହିଲେ ବନେ ରଖିବୁ ବାଛୁରି ।
ଗୋପାଳଙ୍କ ମେଳେ । ଏସମୟେ ଆସି ଯଶୋଦା ମିଳେ ।୫।

ଶୁଣି ବୋଇଲେ କି କହୁଛୁ ବାବୁ । ଅତି ସୁନ୍ଦର ସୁକୁମାର
ତନୁ । ଧନ ଅର୍ଜନେ କିମ୍ପାଇଁ ମୋର କାର୍ଯ୍ୟ । ତୋର ତନୁ କି କେ
ଧରବ ଧୈର୍ଯ୍ୟ । ତୁ ମୋ ଦୁଃଖିଧନ । ତୁ ବନ ଗଲେ କି ରହେ
ଜୀବନ ।୬।

ବୋଲନ୍ତି ଶ୍ରୀକୃଷ୍ଣ ଶୁଣଗୋ ମାତ । କୁଳ ବଧ୍ୟାରେ ନୋହିଲେ ସମର୍ଥ । କୁଳାଧମ ବୋଲି ଡାକୁଛି କଂସ । ଜଗତେ କୀର୍ତ୍ତି ଘୋଷିବ ସେହି । ଏସମୟେ ଆସି । ପ୍ରବେଶ ହେଲେ ତହିଁ ପୌର୍ଣ୍ଣମାସୀ । ୭ ।

ଦେଖି ଯଶୋଦା କହନ୍ତି ବଚନ । ତୁ କହୁଛୁ ଦେଖ କଅଁଳା ପୁଅ । ବତ୍ସ ରଖିବାକୁ କରଇ ପଥ । ଏହା ମୁଁ ଶୁଣି କରନ୍ତି ନିଷେଧ । ନ ଯେନେ ମୋ ଗିର । ତୁମ୍ଭେ କହିଲେ ଏ ହୋଇବ ସ୍ଥିର । । ୮ ।

କହନ୍ତି ପୌର୍ଣ୍ଣମାସୀ ଏ ବଚନ । ଛାଡ଼ିହିଁ ଭୟର ନ କର ମନ । ରଖ ଏ ବତ୍ସ ଗୋପାଳ ସଙ୍ଗତେ । ତୁମ୍ଭ ଧୃଷ୍ଟ କଥା ଲାଗଇ ମୋତେ । କହେ ଯଶୋମତୀ । ସର୍ବଦା ତୁମ୍ଭେ ହିତ ମୋ ଗତି । ୯ ।

ପୌର୍ଣ୍ଣମାସୀ ଶୁଣି କହେ ଉତ୍ତର । ନେବ ମୁଁ ଗୋବର୍ଦ୍ଧନ ମଲ୍ଲଘର । ଗୋଗୃହରଣ ବଦ୍ଧ୍ୟା ଅଛୁ ତା ତହିଁ । ଅର୍ପିବ ତାଙ୍କୁ ସନ୍ତୋଷ କରାଇ । କୃଷ୍ଣ ଘେନ ସଙ୍ଗେ । ତାବଟେ ପ୍ରବେଶ ହୋଇଲେ ରଙ୍ଗେ । ୧୦ ।

ଗୋବର୍ଦ୍ଧନ ମଲ୍ଲ କୃଷ୍ଣଙ୍କୁ ଦେଖି । ଧାଇଁ କୋଳକଲା ପରମସୁଖୀ । ଆଜ ମୋହର ହୋଇଲା ସୁଦିନ । ବୋଲି ଶ୍ରୀମୁଖେ ଦିଅଇ ଚୁମ୍ବନ । ସ୍ନାନ କରାଇ । ଭୋଜନ ଅନ୍ତେ ପଲଙ୍କେ ବସାଇ । । ୧୧ ।

ଚନ୍ଦ୍ରାବଳୀ ଦେଖି ଶ୍ୟାମସୁନ୍ଦର । ମଦନଶରେ ହୋଇଣ ଅସ୍ଥିର । ଅଳସାଇ ଅଙ୍ଗ ମୋଡ଼ିଲା ହୋଇ । କଟାକ୍ଷେ ପୁଣି ଚାହିଁବାର ଗୃହିଁ । ଏସମୟେ ଆସି । ପ୍ରବେଶ ହୋଇଲେକ ପୌର୍ଣ୍ଣମାସୀ । । ୧୨ ।

ଗୋବର୍ଦ୍ଧନ ମଲ୍ଲ ପ୍ରଣାମ କରି । ବୋଇଲା ବଡ଼ ଭାଗ୍ୟ ଅଛି ମୋହର । ହୋଇଲା ତେଣୁ ତୁମ୍ଭର ଦର୍ଶନ । ପବିତ୍ର ହେଲା ମୋହର ଭୁବନ । ଦେବୀ ଏ ବଚନ । କହନ୍ତି ଏତ ବାଳୁତ ନନ୍ଦନ । । ୧୩ ।

କୃଷ୍ଣ ହୋଇବେ ତୁମ୍ଭଙ୍କୁ ଅନୁକୂଳ । ଚନ୍ଦ୍ରାବଳୀ ଶୁଣି ଛାଡ଼ନ୍ତି ଲାଜ ।

କାହିଁକି ନିକଟନ୍ତ ବନ୍ଧାପନା । କଥବା ତୁମ୍ଭେ କରୁଅଛ ମନା ।
ଗୋବର୍ଦ୍ଧନ ମଲ୍ଲ । କହଇ ତୁମ୍ଭ ଜାଣିବ ବୋଲ । ୧୪ ।
ଦେବୀ ଚନ୍ଦ୍ରାବଳୀ ପାଶେ ପ୍ରବେଶ । ବୋଇଲେ ଅର୍ଘ୍ୟଥାଳ ଘେନି
ଆସ । ଦେଖ କୃଷ୍ଣଙ୍କୁ ନୟନ ପୁରାଇ । ବାଳକେ ଲାଜ ତରୁ କପ
ପାଇଁ । ଶୁଣି ଚନ୍ଦ୍ରାବଳୀ । ଅବଲେ କରେ ଘେନି ଅର୍ଘ୍ୟଥାଳ । ୧୫ ।
ଆସି ମିଳଲେ କୃଷ୍ଣ ସନ୍ନିଧାନ । ଶ୍ରୀଅଙ୍ଗେ କବେଶି ମନ ନୟନ ।
କନ୍ଦର୍ପ ଶରେ ହୋଇ ଜର ଜର । ନ ଚଳେ ପାଦ ନଅପେ ଉତ୍ତର
ଲୁଅଇଁ ବଦନ । କରନ୍ତି ଶ୍ରୀକୃଷ୍ଣ ସ୍ତୁତି ଧିଅନ । । ୧୬ ।
ବନ୍ଧାନ୍ତେ ଶ୍ରୀକୃଷ୍ଣ ପାଇଣ ଲାଜ । ଟେକି ନ ଶୃହାନ୍ତି ମୁଖ
ସରୋଜ । ପଦରେ ମାଡ଼ ଦେଇଛନ୍ତି ଦୃଷ୍ଟି । କରେ କନ୍ଦର୍ପ ଶର
ଅଙ୍ଗେ ବୃଷ୍ଟି । ଏଣେ ଚନ୍ଦ୍ରାବଳୀ । କଷ୍ଟେ କଷ୍ଟେ ଯାଇ ମନ୍ଦିରେ
ମିଳି । । ୧୭ ।
ପୌର୍ଣ୍ଣମାସୀ ଗୋବର୍ଦ୍ଧନ ମଲ୍ଲରେ । କହନ୍ତି କୃଷ୍ଣ ଆସିଲେ ତୋ
ପୁରେ । ବସ୍ତ୍ର ରଖିବା କରଛନ୍ତି ଶ୍ରଦ୍ଧା । ଦେବ ଏହାଙ୍କ ଗୋ-
ଗୃହଣ ବିଦ୍ୟା । ଏ ସଙ୍ଗତି ଶୁଣି । ଦେଲା ଅପୂର୍ବ ବିଦ୍ୟାମାନ
ଆଣି । । ୧୮ ।
ଶୁଣ ଏକ ଲକ୍ଷି ବାନା ପ୍ରତାପ । ଯେବେ ହୋଇଥିବ କପଟ ରୂପ ।
ପ୍ରକାଶ ହୁଅଇ ତାର ମସ୍ତକେ । ଶୁଣ କହଇ ପୁଣ ଏବେ ଏକେ ।
ଏ କଠାଉ ଚୂଣ । ଯହିଁ ବାନ୍ଧିଲେ ଚଢ଼ିଁ ଯାଇ ପୁଣ । ୧୯ ।
ତଭ ଅଙ୍ଗୁଳ ଏ ଦଣ୍ଡ ପ୍ରମାଣ । ପିନ୍ଧିଲେହରେ ଦେହାସ୍ଥିର ପ୍ରାଣ ।
ହିଂହ୍ୟ ବନ୍ଧାନ୍ତେ ଶତ୍ରୁ ହୋଏକିଣା । ଚଣ୍ଡାଧ୍ୱନରେ ଶତ୍ରୁ ବୁଦ୍ଧିବଣା ।
ଅଙ୍କୁରିତ ତୃଣ । ବଣାହେବା ଗୋରୁ ଅସନ୍ତି ଜାଣ । ୨୦ ।
କୃଷ୍ଣ ବୋଲନ୍ତି ଏ କାହୁଁ ପାଇଲ । ଶୁଣି କହନ୍ତି ଗୋବର୍ଦ୍ଧନ
ମଲ୍ଲ । ପୂର୍ବେ ମୁଁ ନ ଜାଣଇ ଗୋରୁ ରଖି । ଗୋପେଶ୍ୱର ପୁରେ

ହୋଇ ମୁଁ ଦୁଃଖି । ଶୋଇଥିଲି ରହି । ଈଶ୍ୱର ଦେଲେ ମୋତେ ଏହା କହି । । ୨୧ ।

ଯେବେ ଆସିବେ ନନ୍ଦର ନନ୍ଦନ । କରିବୁ ଏହା ତାହାଙ୍କୁ ପ୍ରଦାନ । କହିଣ ହୋଇଲେ ସେ ଅନ୍ତର୍ଦ୍ଧାନ । ରଖି ମୁଁ ଥିଲି ଅନେକ ଯତନ । ତୁମ୍ଭେ ନିଅ ଏବେ । ଗୁନ ବଦ୍ଧାରେ ଇଚ୍ଛା ହେଲ ଯେବେ । । ୨୨ ।

କୃଷ୍ଣ ନ ଦେଖି ନନ୍ଦ ଯଶୋବନ୍ତ । ଗୋବର୍ଦ୍ଧନ ମଲ୍ଲପୁରେ ଝଟିତି । ପ୍ରବେଶ ହୋନ୍ତେ ଗୋବର୍ଦ୍ଧନ ମଲ୍ଲ । ପାଦେ ପଡ଼ି ବୋଲେ କୃତାର୍ଥ କଲ । ଆଜ ମୋ ସୁଦିନ । ପବିତ୍ର କଲ ମୋହର ଭୁବନ । ୨୩ ।

ନନ୍ଦ କହନ୍ତି ଶୁଣ ବାବୁ ତୁହି । ବାଳକ ଏଠୁ କିଛି ନ ଜାଣଇଁ । କଂସ ଭୟରୁ ଉଦ୍ଧରିବୁ ମୋତେ । ଯେମନ୍ତେ ଗୋପେ ରହିବୁ ନିଶ୍ଚିନ୍ତେ । ଗୋବର୍ଦ୍ଧନ ମଲ୍ଲ । ବୋଲଇ କିଛିହିଁ ମନେ ନ ଘେନ । । ୨୪ ।

ଶ୍ରୀକୃଷ୍ଣଙ୍କୁ ଘେନି ଯଶୋଦା ନନ୍ଦ । ପୁରେ ପ୍ରବେଶି ମନରେ ଆନନ୍ଦ । ମଣୋହିଁ ଅନ୍ତେ ପଲଙ୍କେ ଶୁଆଏ । ପ୍ରଭାତୁ ଉଠିପୁଣି ଦେବ୍ରାଯ୍ୟେ । ତଯା ରଖିବାରେ । ମାଠ ସାଉଲେ ଅଟିହିଁ ଯତ୍ନରେ ୨୫

କର ମଣୋହିଁ ବନ୍ଧି ଶିରେ ଚୂଳ । ପିନ୍ଧି କାଛେଣି ଅଟିହିଁ ଅମୂଲ । ଶୋଭା ଦିଶନ୍ତି କୃଷ୍ଣ ବଳରାମ । ପ୍ରକାଶ ମୂର୍ତ୍ତିଚନ୍ଦ୍ର ନବ ଶ୍ୟାମ । ବାଳକଙ୍କ ସଙ୍ଗେ । ବାହାର ହୋଇଲେ [illegible] ରଙ୍ଗେ ।୨୬।

ପୁର ଦାଣ୍ଡେ ଦେଖି ଗୋପ ଯୁବତୀ । [illegible]ରକେ ଏମନ୍ତ ବୋଲନ୍ତି । ଅଭାଜିବ ଗୋ ନନ୍ଦ କେତେ ଧନ । [illegible]ନଙ୍କୁ ପୋଷଇ ଏକା ନନ୍ଦନ । ଯଶୋଦା ଜୀବନ । ଯଦ୍ଭବ କ ନ ଦେଖିଣ ନନ୍ଦନ । । ୨୭ ।

କେ ବୋଲଇ ଦେଖ କଅଁଳା ବଳି । ଏହାଙ୍କୁ କର୍ପା

ବନକୁ ପେଷନ୍ତି । ଅତି କୋମଳ ଶ୍ୟାମଳ ଶ୍ରୀଅଙ୍ଗ । ଦେଖିଲେ ଖୁଲବନ୍ତି ବ୍ରତ ଭଙ୍ଗ । ବାଳ ନୀଳମଣି । ଏ ତ ଛାଡିବେ ତସ୍ୟା ରଖା ପୂର୍ଣ୍ଣି । । ୧୮ ।

ଗୋପାଳଙ୍କ ମେଳେ ଗମନ୍ତି ହରି । ଯଶୋଦା ନନ୍ଦ ପଛେ ଅନୁସରି । ସୁବଳ ସୁଦାମଙ୍କ ଧରି କରି । କହନ୍ତି ପୁଣ ମଧୁର ଉତ୍ତର । ଅନ୍ତର ନୋହିବ । ଯେତେଣେ ଗଲେ କୃଷ୍ଣ ସଙ୍ଗରେ ଥିବ । । ୧୯ ।

ଯଶୋଦା ନନ୍ଦନ ବୃନ୍ଦାର ନାରୀ । ବଳରାମଙ୍କୁ କହନ୍ତି ଉତ୍ତର । କ୍ଷଣେହେଁ ପାଶୁ ଅନ୍ତର ନୋହିବୁ । ଯେତେଣେଗଲେ କୃଷ୍ଣସଙ୍ଗରେଥିବୁ । ଏତେକହି କାନ୍ଦି । ନନ୍ଦ କହନ୍ତି ନଯିବୁ କାଳନ୍ଦୀ । । ୨୦ ।

କାଳୀୟ ହ୍ରଦରେ ହୋଇ ସମ୍ପୂର୍ଣ୍ଣି । ପିଇଲେ ନ ବର୍ତ୍ତନ୍ତି ଜନ୍ତୁ ଗଣ । ନଯିବ କେବେ ଗୋବର୍ଦ୍ଧନ ପାଶ । ଅଧାକାମରେ ଅଛଇ ରାକ୍ଷସ । ସଞ୍ଚରନ୍ତି ବନେ । ଏମନ୍ତେ କେତେ ଦୁଷ୍ଟମାନେ । ୨୧ ।

କୃଷ୍ଣ କହନ୍ତି ନନ୍ଦ ଯଶୋଦାଙ୍କୁ । ଅମ୍ଭେ ଯିବୁ ତୁମ୍ଭେ ଯାଅ ପୁରକୁ । କ୍ଷୁଧାରେ ତସ୍ୟା ହୁଅନ୍ତି ଅକୁଳ । ବସୁତ ଉଛର ହେଲାନି ବେଳ । ଶ୍ରୀମୁଖେ ଚୁମ୍ବନ । ଦେଇ ଯଶୋଦା ପୁତ୍ରକୁ ବମନ । । ୨୨ ।

ଏମନ୍ତେ ରାମକୃଷ୍ଣ ବାଳ ମେଳେ । ମିଳିଲେ ଯାଇବଂଶୀବଟତଳେ । ଅତି ଆନନ୍ଦେ ଚରାଅନ୍ତି ବତ୍ସା । ତନ୍ନାର କରନ୍ତି ଆପଣା ଇଚ୍ଛା । କୃଷ୍ଣଙ୍କୁ ବସାଇ । କରନ୍ତି ରାଜା ଉପେନ୍ଦ୍ରର ତର୍ହିଁ । । ୨୩ ।

କେ ଉଚ୍ଛେ ମଣିମା ଡାକେ । ଛତ୍ର ଚାମର ଧରି ଏକେ । କେ ବଂଶୀ ସଧୀରେ ଧରି ବଧିରନ । କେ ବୋଲେ ସଦୁପାଦ ଯାବଧାନ । ଏମନ୍ତେ ଯେ କେଳି । କେତେ ପ୍ରକାରେ କଲେ ବନମାଳି । । ୨୪ ।

ବଚ୍ଛା ଚରାନ୍ତି ଅତିହିଁ ଆନନ୍ଦେ । କର ଧର ଦେଇ କେ କାହା କନ୍ଧେ । କାହାକୁ କେହୁ କରି ଆଲିଙ୍ଗନ । କେହୁ କାହା କରଧରି

ଗମନ । ଗୋପପୋଏ ମିଳ । କରନ୍ତି କୃଷ୍ଣସଙ୍ଗେ ରଙ୍ଗେଖେଳ ।୩୫।

ଗୋପାଳଙ୍କ ଘର ପୁରେ ପ୍ରବେଶ । ଏ ଅନ୍ତେ ଅସ୍ତ ହୋଇଲେ ଦିନେଶ । ଯଶୋଦା ଗୃହିଁ ଆନନ୍ଦିତ ମନ । କୋଳ କରି ମୁଖେ ଦେଲେ ଚୁମ୍ବନ । ଅତି ତୋଷହୋଇ । ଷଡ ରସରେ ଭୋଜନ କରାଇ । ।୩୬।

ନିଦ୍ରାଆଳସ୍ୟ ଗୃହିଁ ଯଶୋବନ୍ତି । ପଲଙ୍କ ଅଙ୍କରେ ନେଇ ଶୁଆନ୍ତି । ଏମନ୍ତେ ରଜନୀ ହୋଇଲା ଶେଷ । ଆସି ଉଦୟ ହୋଇଲେ ଦିନେଶ । ଯଶୋବନ୍ତି ଘୋଷି । ଉଠ ଗୋପ ପୋଏ ମିଳଲେ ଆସି । ।୩୭।

ଚେଇଁ ଉଠିଲେ ଶ୍ରୀକୃଷ୍ଣ ବଦନ । ଧୋଇଲେ ନବ୍ୟ କର୍ପୂର ଦଧି ମାନ । ମଣୋହିଁ ଅନ୍ନେ ଭୁଞ୍ଜିଲେ ତାମ୍ବୁଳ । ପ୍ରବେଶ ହେଲେ ଗୋପାଳଙ୍କ ମେଳ । ବତ୍ସା ପେଢ଼ ସଙ୍ଗେ । ଗମନ କଲେ ଅତି ତୋଷେ ରଙ୍ଗେ । ।୩୮।

ପ୍ରବେଶ ହୋଇଲେ ବୃନ୍ଦାବନରେ । କରନ୍ତି ଲୀଳା ଆନନ୍ଦ ମନରେ । ଠାବ ଠାବରେ ସ୍ଥଳ ଭଲେ ରହି । ଚରାନ୍ତି ବତ୍ସା ଅତି ତୋଷ ବହି । ବାଳପୋଏ ମେଳ । ବଟୁଅଙ୍ଗେ ନେଇ କଣ୍ଡୁର ତୋଳ । ।୩୯।

ମଧୁମଙ୍ଗଳ କ୍ରୋଧଭର ହୋଇ । କାହାକୁ ଅନାଇଣ ଗାଳି ଦେଇ । ଅରେ ଗୋପାଳେ ବ୍ରାହ୍ମଣ ନ ମାନ । ଦେଉଅଛ ଡରେ ତୁମ୍ଭ ଭଗିନୀ । କୃଷ୍ଣ ଶୁଣି ହଂସେ । ନେତ୍ରାନ୍ତେ ଠାରୁ ଦିଅନ୍ତି ହଶେଷୀ । ।୪୦।

ପୁଣି ବୋଲଇ ଶ୍ରୀକୃଷ୍ଣଙ୍କୁ ଗୃହିଁ । ନେତ୍ରାନ୍ତେ ଗୋପାଳଙ୍କୁ ଠାର ଦେଇ । ମେଳ ଲଗାଇ କଣ୍ଡୁର ତୋଳାଉ । ଛଡ଼ିହିଁ ନ ଛାଣିଲା ପର ଥାଉ । ଶୁଣି ଏ ବଚନ । କୃଷ୍ଣ ବଟୁକୁ କଲେ ଆଲିଙ୍ଗନ ।

ଗୋପାଳ ପୋଏ ନେଇଥିଲେ ବାନ୍ଧି । ପିଅଇ ଦେଲେ ତାହା ପୀତବାସ । ପୁଣ କେତେ ଦୂର କଲେ ଗମନ । ପଛରେ ରହି ଭଲ୍ଲୂକର ସ୍ଥାନ । ଜାଣନ୍ତେ ଗୋପାଳେ । ଭୟରେ ବତ୍ସ ଗଣ୍ଡିଂ ପଳାଇଲେ । ।୪୨।

ବୁଲି କେତେଦୂର ବୃନ୍ଦାବନରେ । ପ୍ରବେଶ ହେଲେ ଗୋପାଳ ମେଳରେ । ପୁଚ୍ଛନ୍ତି ପୋଏ ରଙ୍ଗ ତ ଅଧର । ବୋଇଲେ ବଟୁ ଏକାନ୍ତ ଉତ୍ତର । ଅଛୁ ଏ ବନର । ଖାଇଲେ ରଙ୍ଗ ହୁଅଇ ଅଧର । ।୪୩।

ଚୂନ ଠାକୁଣା ଗୁଳିଆ ଖଇର । ଫେଲ ମରିଥାନ୍ତୁ ଏକତ୍ରକର ଖାଇଲେ ଯେମନ୍ତ ରଙ୍ଗ ହୁଅଇ । ବଚନେ ତାହା କହିତନୂହର । ଶୁଣି ଗୋପସୁତେ । ଖାଇଲେ ଏମାନ ଅଣି ଭୁଞ୍ଜତେ । ।୪୪।
ଗୋପାଳେ ବ୍ୟଥା ପାଇ ଜ୍ଞାନ ହାର । କୃଷ୍ଣ ଅଗ୍ରତେ କଲେ ଯେ ଗୁହାର । ଅମ୍ଭଙ୍କୁ ଖଣ୍ଡି ଏହା ଖୁଆଇଲା । କୃଷ୍ଣ ବୋଇଲେ ଶତ୍ରୁ ସୁଝାଇଲା । ବଟୁ ଅପି ମିତ । ଏକାନ୍ତ କହେ ବଚତ୍ରଦେଖିଲି ।୪୫।

ତୁମ୍ଭଙ୍କୁ ଛାଡି ଗଲି କେତେ ଦୂର । ହୋଇଲି ଗୋବର୍ଦ୍ଧନ ସମୀପର । ଦେଖିଲି ତହିଁ ମାଧବୀ ମଣ୍ଡପ । ପୁଷ୍ପିତ ତରୁ ସୁଷମା ଅମାପ । ଶୁକ ସାର ତହିଁ । ଯାହା ବୋଲନ୍ତି ଶୁଣ ତା କହଇ । ।୪୬।

ଜୟ ଶ୍ରୀମତୀ ଜୟ ଗାନ୍ଧର୍ବିକେ । ଜୟ ବ୍ରଜେଶ୍ୱରୀ ଜୟ ରାଧିକେ । ଘୋଷନ୍ତି ଏହୁ ମଧୁର ବଚନ । ଶୁଣିତ ମୋର ନ ରହିଲା ଜ୍ଞାନ । ନ ଚଳଇ ପାଦ । ଏଣେ ଗ୍ଲାନଇ ତୁମ୍ଭର ବିଚ୍ଛେଦ । ।୪୭।

ରାଜକୁମାରଙ୍କ ବିହାର ସ୍ଥଳ । ଏହି ହେତୁଟି ଅତ୍ୟନ୍ତ ମଞ୍ଜୁଳ । ନାନାଜାତିରେ ପୁଷ୍ପ ବିକଶିତ । ଦେଖିବାମାତ୍ରେ ହୋଇଲି ମୋହିତ । ଏମନ୍ତ ବଚନ । ଶୁଣି ଶ୍ରୀକୃଷ୍ଣ ଆନନ୍ଦିତ ମନ । ।୪୮।

ବଟୁ କନ୍ଧରେ ଶ୍ରୀହସ୍ତକୁ ଦେଇ । ପୁଚ୍ଛନ୍ତି ପୁଣ ୨ ତୋଷ ହୋଇ ।

ଦେଖାଇବଟ ମୋତେ ସେହି ସ୍ଥଳ । ଚଞ୍ଚୁ ଟୋକନ୍ତି ହେଲା ଅସ୍ତ
ହେଲ । ହର୍ଷିଲ ମାନସ । ବତ୍ସପାଳ ଘେନ ପୁରେ ପ୍ରବେଶ । ୪୯ ।

ଭୋଜନ ଅନ୍ତେ କରନ୍ତି ଶୟନ । ନିଦ୍ରା ନଆସଇ ହେଳ ନୟନ ।
ଚଞ୍ଚୁ କହିବା ବଚନକୁ ଚିନ୍ତି । ଅତି ଅରୁଣ ହୋଇ ଅଛୁ ମତି ।
ପ୍ରଭାତୁ ଉଠିଲେ । ନିତ୍ୟ କର୍ମ୍ମ ଯାଇ ମଶୋର୍ଦ୍ଧି କଲେ । ୫୦ ।

ବତ୍ସାଙ୍କୁ ଘେନ ଗୋପାଳଙ୍କ ମେଳେ । ଯାଇ ବୃନ୍ଦାବନେ
ପ୍ରବେଶ ହେଲେ । କରନ୍ତି ଯୋଏ ନାନାରଙ୍ଗେ ଖେଳ । ଖେଳନ୍ତି
ଅତି ଉତ୍ସବରେ ଖେଳ । ଦେଖିଲେ କପିଥ୍ୱ । ବୋଇଲେ ଅମୃତ
ଫଳ ଯାଏ ହାତ । । ୫୧ ।

ଏମନ୍ତେ କହି ଗୋପାଳ ବୋଇଲା । ଏ ବୃକ୍ଷ କୃଷ୍ଣ ଧ୍ରାଗରେ
ହୋଇଲା । ଦେଖିଲେ କୃଷ୍ଣ ବତ୍ସାସୁର ମୁଣ୍ଡେ । ଏକ ଲକ୍ଷି ବାନ୍ଧା
ଉଡାଇ ଗୁଣ୍ଡେ । ଧଇଲେ ଚରଣ । ବୃକ୍ଷେ ପିଟନ୍ତେ ଛାଡ଼ି ଗଲା
ପ୍ରାଣ । । ୫୨ ।

କେ ବୋଲେ କପଟ ସ୍ୱରୂପେ ଅଛି । ଦେଖ ଏ ବତ୍ସା ମଧ୍ୟେ
ଥିଲା ପଶି । ଶ୍ରୀକୃଷ୍ଣ ଛାଣି ମାଇଲେ ତାହାକୁ । କପିଥ୍ୱ ଦେଇ
ତୋଷିଲେ ଅମୃକ୍ । ହରଷ ଗୋପାଳେ । ହୋଇ ନାଚନ୍ତି ଅତି
କୁତୂହଳେ । । ୫୩ ।

ସୁବଳ ମଧୁମଙ୍ଗଳ ସହିତେ । ଭ୍ରମର କରନ୍ତି କୃଷ୍ଣ ଏକାନ୍ତେ ।
ଦେଖିବା ଗୁଲି ମନୋହର ସ୍ଥଳ । ଆଗରେ ଗୁଲନ୍ତି ମଧୁମଙ୍ଗଳ ।
ଗଲେ କେତେ ଦୂର । ଦେଖିଲେ ବନ ଅତି ମନୋହର । ୫୪ ।

ଲତା ପୁଷ୍ପିତେ ଶୋଭା ହୋଇଛନ୍ତି । ବାନ୍ଧି ବକାଶ ମାଧବୀ
ମାଳତୀ । ଅଶୋକ ଛୁଇଅନା ଯନ୍ତ୍ରି ପନ୍ତି । ଚମ୍ପା ନାଗେଶ୍ୱର
ପ୍ରକାଶ ଅଛି । ସେ କୁନ୍ଦ ମନ୍ଦାର । ଛାଇ କୁଳରେ ଦିଶଇ
ସୁନ୍ଦର । । ୫୫ ।

ଶ୍ରୀକୃଷ୍ଣ ଗୃହିଁ ଉତ୍ସୁକିତ ମତି । ଚତୁ କର ଯନ ଧୀରେ କହନ୍ତି । ଦେଖାଅ ଅଛୁ ବିଜନ କୁଞ୍ଜ କାହିଁ । ଏକାକେ କଂଷଠୀ ମିଳାଯାଇ । କଟେଠ ମର୍କଟୀ । ଚୋଲଇ ଖଡାଇ ଦନ୍ତ ଲିଳଟି । ୫୬ ।

କାହୁଁ ଅଇଲ ତୁମ୍ଭେ କପଟଇଂ । ବୃନ୍ଦା ଦେବୀଙ୍କ ଆଜ୍ଞା ମୋତେ ନାହିଁ । ଏ ସ୍ଥାନେ ପୁରୁଷ ଯେବେ ଆସଇ । ସ୍ତ୍ରୀ ସ୍ୱରୂପ ନଷ୍ଟହେ ହୁଅଇ । ବେଗେ ଏଥୁ ଯାଅ । ମୋ ବଚନ ଯେନ ଷଣେ ନ ରହ ୫୭

ଏମନ୍ତ ଶୁଣି ତହୁଁ ବାହୁଡିଲେ । ବସା ବାଳକ ସଙ୍ଗତେ ମିଳ- ଲେ । ଦେଖିଲେ ଯମୁନା ନଦୀର ବାଙ୍କେ । ତହିଁ ବଣିଅଛୁ ଏକଇ ବକେ । ଅତି ବଡ କାୟେ । ଦିଶଇ କଇଳାସ ଗଈ ପ୍ରାୟେ ।୫୮।

ଦେଖି ଶ୍ରୀକୃଷ୍ଣଙ୍କ ଗିଳିଲା ବକେ । ବାଳକେ କାନ୍ଦନ୍ତି ଅତି ବକଲେ । ବୋଲନ୍ତି ଅରେ ବକ ଶ୍ୱଳୁ କାହିଁ । ଏ ଶ୍ୟାମଳ ମୂର୍ତ୍ତି ଗ୍ରାସିବାପାଇଁ । ଅହୋ ପ୍ରାଣ ସଖା । ବାରେ ହେ ସୁନ୍ଦର ବଦନ ଦେଖା । ୫୯ ।

କେ କାନ୍ଦି ଉଭେ ଶିରେ କର ତାଡ଼ି । କେ ଯାଇ ବକାସୁର ଅଗେ ପଡ଼ି । କେ ବୋଲେ ଅମ୍ଭର ନାଅ ଜୀବନ । ଅନ୍ୟର କଲୁ ଆମ୍ଭ ଶ୍ୟାମଘନ । ଦୁଷ୍ଟଙ୍କ ଦଳନ । ନାଭରେ ଥାଇ ଛାଣି ଅଦେ- ମୂନ । ୬୦ ।

କ୍ରନ୍ଦନ୍ତା ଅତି ପ୍ରାୟେ ଘେଡଷ୍ଟର । ପଡ଼ି ନ ପାରେ ଉଦ୍ଗାରେ ଅସୁର । ଗ୍ରାସିବାପାଇଁ ପାଟି ବସ୍ତ୍ରାଗନ୍ତେ । ଶ୍ରୀକୃଷ୍ଣ ଧଇଲେକ ବେନି ହସ୍ତେ । ବେନି ଫାଳ କଲେ । ତାଇ ଅସୁରକୁ ମାଇଲେ ହରି । ୬୧

କେ ପିଠେ ଲଉଡ଼ି ରେ ମାରେ ଲାତ । କେ ମାରେ ଆଣୁଅ କେ ମାରେ ମୋଥ । କେ ବୋଲେ ମୋ ବାଡ଼ିରେ ପ୍ରାଣ ଗଲା । କେ ବୋଲେ ମୁ ବଧା ମାଇଲି ମଲା । ଏମନ୍ତ ପ୍ରକାର । କୁଡା କୁହି ହୋଇ ହେଲେ ବାହାର । ୬୨ ।

ଏଥୁଅନ୍ତରେ କେତେ ଦୂର ଚଳି । ଶୁଣିଲେ ପୁଣି ଗନ୍ଧ ଫୁଲ
ଫୁଲ । ସୁବଳଙ୍କୁ ଡାକି କହନ୍ତି ହରି । ମୋ ଶୁଭୁଛି ଆସ ବୁଝିକରି ।
ସୁବଳ ଚଳିଲେ । ଗଉରୀ ତୀର୍ଥରେ ଯାଇ ମିଳିଲେ । ୬୩ ।
ଦେଖିଲା ଗଡ଼ି ରମଣୀ ମାନଙ୍କୁ । ଅତି ଆଶ୍ଚର୍ଯ୍ୟ ହୃଦରେ
ମନଙ୍କୁ । କୁସୁମ ତୋଳି ସଖୀନଙ୍କୁ ଯାଇ । ନିଜ ପୁରକୁ ଚଳନ୍ତେ
ଚତୁରୀ । ସୁବଳ ଲେଉଟି । ବାଳକମାନେ ଶ୍ରୀକୃଷ୍ଣଙ୍କୁ ଭେଟି ।୬୪।
ଏକାନ୍ତେ ଶ୍ରୀକୃଷ୍ଣେ କହେ ସୁବଳ । ଗଉରୀ ତୀର୍ଥେ ଥିଲେ
କନ୍ୟା କୁଳ । କହି ନୁହେ ତାଙ୍କ ଶରୀର କାନ୍ତି । ତରୁ ଲଗାଏ
କେଉଁଠି ପ୍ରକାଶନ୍ତି । ଧନ୍ୟ ଶୋଭାବନ । ନ ଦେଖି କାହିଁ ସୁନ୍ଦରୀ
ନୟନ । । ୬୫ ।
ସୁବଳ ଠାରୁଁ ଶ୍ରୀକୃଷ୍ଣ ଏମନ୍ତ । ଶୁଣି ହୋଇଲେ ଅତିଉତ୍ସୁକିତ ।
ବୋଲନ୍ତି ଏବେ ଅମ୍ଭେ ଯିବା ଚାଲ । ସୁବଳ ବୋଲନ୍ତି ଉତ୍ତର
ବେଳ । କାଲିଠୁ ଅପେକ୍ଷା । ବସ୍ତ୍ରା ଘେନି ନିଜ ପୁରକୁ ଯିବା ।୬୬।
ଠାରୁଁ ସମସ୍ତେ ଏକ ରୂଣ୍ ହୋଇ । ପ୍ରବେଶ ହେଲେ ନିଜପୁରେ
ଯାଇ । କହନ୍ତି ପୋଏ ଅତି କୁତୂହଳେ । ଶ୍ରୀକୃଷ୍ଣ ବତ୍ସାସୁରକୁ
ମାଇଲେ । ପୁଣ ବକାସୁର । ହେଳ ଫାଳିଲେ ନନ୍ଦକୁମର ।୬୭।
କୁହାକୁହି ହେଲେ ଗୋପେ ସକଳେ । କୃଷ୍ଣ ଯିନା ରକ୍ଷା ଗତି
ଗୋକୁଳେ । ଏଥନ୍ତେ ଶ୍ରୀକୃଷ୍ଣ ମଣୋହିଁ ଯାଇ । ସୁଖେ ପଲଙ୍କ
ଅଙ୍କେ ନିଦ୍ରା କରି । କନ୍ୟା ଗଣ ଚିନ୍ତି । କଥା ହୁଅନ୍ତେ ହୋଇଲା
ପାହାନ୍ତି । । ୬୮ ।
ବୃନ୍ଦାବନଚନ୍ଦ୍ର ବିହାର ରସ । ବର୍ଣ୍ଣିଲା ଏହୁ ଦୈତ୍ୟାରି ପ୍ରକାଶ ।
ଭବ ସମୁଦ୍ର ତରିବାକୁ ନାବ । ଶ୍ରୀ ଜଗନ୍ନାଥ ନାରାୟଣ ଦେବ ।
କଲେ ବିରଚନ । ଶ୍ରୀକୃଷ୍ଣ ପାଦପଦ୍ମ କରି ଧ୍ୟାନ । ।୬୯।



## ତୃତୀୟ ପ୍ରକାଶ ।

### ରାଗ କଳସା ।

ଜୟ ବାଗୀଶ୍ୱରୀ ଜୟ ଦେବୀ ସରସ୍ୱତୀ ।
ସର୍ବଦା ତୁମ୍ଭ ଚରଣେ ମୋହର ଭକତି ।
ତୁମ୍ଭ ଅନୁଗ୍ରହରୁ ମୁଁ ଶ୍ରୀକୃଷ୍ଣ ଚରିତ ।
କହିବା ଇଚ୍ଛା କରନ୍ତି ମୁଁ ନୋହେ ସମର୍ଥ । ୧ ।
କେବଳ ତୁମ୍ଭ କରୁଣା ବିନା ନୋହେ ସିଦ୍ଧି ।
ମୁଁ ଜଡ଼ ବର୍ଣ୍ଣିପାରିବ କୁଣ୍ଠିତ ମୋ ବୁଦ୍ଧି ।
ତୁମ୍ଭେ ମୋ ହୃଦରେ ବାସ କର ବୁଝାଇଲେ ।
ଶ୍ରୀକୃଷ୍ଣ ଭକ୍ତଙ୍କ ରସ କହିବ ମୁଁ ଭଲେ । ୨ ।
ଜୟଶ୍ରୀ ଗଉରଚନ୍ଦ୍ର ଅଖିଳ ତାରକ ।
ଭକ୍ତ ଉଦ୍ଧାରକ କଳି କଳ୍ମଷ ହାରକ ।
ଜଗତରେ ଧନ୍ୟ ନବଦ୍ୱୀପ ବାରାନିଧି ।
ସାକ୍ଷାତ ଉଦୟ ତୁମ୍ଭେ ପୂର୍ଣ୍ଣ କଳାନିଧି । ୩ ।
ଶଚୀ ମାତା ନୟନ ଚକୋର ଉଲ୍ଲାସକ ।
ଭକ୍ତବୃନ୍ଦ ଚିତ୍ତ କଇରବ ପ୍ରକାଶକ ।
ଶ୍ରୀକୃଷ୍ଣ ଚୈତନ୍ୟ ସାକ୍ଷାତ ଯେ ଏକ ମୂର୍ତ୍ତି ।
ତୁମ୍ଭ ଲୀଳା ବର୍ଣ୍ଣିବେ ବଳିଲା ମୋର ମତି । ୪ ।
ଜୟ ଜୟ ବକ୍ରେଶ୍ୱର ପଣ୍ଡିତ ଠାକୁର ।
ଭକ୍ତି ଉପଦେଶ ମୋତେ ଅନୁଗ୍ରହ କର ।
ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣନା କୃତେ ମୋର ବୁଦ୍ଧି ।
କେବଳ ତୁମ୍ଭ କରୁଣା ବିନା ନୋହେ ସିଦ୍ଧି । ୫ ।

ନଳ କୁବେର ପୁଚ୍ଛନ୍ତି ନାରଦ ଅଗ୍ରତେ ।
ଏ ହେଲା ଶ୍ରୀକୃଷ୍ଣ ଲୀଳା କହ ଏଥୁ ଅନ୍ତେ ।
କହନ୍ତି ନାରଦ ଶୁଣ ଏ ମୋର ଉତ୍ତର ।
ପ୍ରାତଃ ପୌର୍ଣ୍ଣମାସୀ ମିଳେ ନନ୍ଦର ମନ୍ଦିର । ।୬।
ସୁବଳ ବଚନେ କୃଷ୍ଣ ଛନ୍ନ ଛନ୍ନ ଚିତ୍ତ ।
ପୌର୍ଣ୍ଣମାସୀଙ୍କି ପୁଚ୍ଛନ୍ତି କହ ଏ ବୃତ୍ତାନ୍ତ ।
ସୁବଳ ଯେ ଦେଖିଲେ ଗଉରୀ ତୀର୍ଥେ ଯାଇ ।
କାହାର ଯୁବତୀ ଯେ କ କାର୍ଯ୍ୟେ ଥିଲେ ଚହିଁ । ।୭।
ପୌର୍ଣ୍ଣମାସୀ କହେ ଶୁଣ ହେ ନନ୍ଦ ନନ୍ଦନ ।
ଚନ୍ଦ୍ରାବଳୀ ନାମ ତା ଅଟଇ ବଦ୍ୟମାନ ।
ଗୋବର୍ଦ୍ଧନ ମଲ୍ଲର ଅଟଇ ପ୍ରିୟବତୀ ।
ତୁମ୍ଭ ଦର୍ଶନ ଲାଳସେ ଗୈରଙ୍ଗା ପୂଜନ୍ତି । ।୮।
ତୁମ୍ଭେ ଯେବେ ବାଞ୍ଛିଲ ଏ କାର୍ଯ୍ୟ ସିଦ୍ଧି ହେବ ।
ବୀରା ନେଇ ତୁମ୍ଭଙ୍କୁ ତାହାଙ୍କୁ ମିଳାଇବ ।
ଏତେ କହି ପୌର୍ଣ୍ଣମାସୀ ଅନ୍ତର ହୋଇଲେ ।
ନିତ୍ୟ କର୍ମ୍ମ ଅନ୍ତେ କୃଷ୍ଣ ମଣୋହି ପାଇଲେ । ।୯।
ଗୋପାଳଙ୍କ ମେଳେ କୃଷ୍ଣ ବତ୍ସା ଧେନୁ ସଙ୍ଗେ ।
ପ୍ରବେଶ ହୋଇଲେ ଯାଇ ବୃନ୍ଦାବନେ ରଙ୍ଗେ ।
ସଖୀ ସଙ୍ଗେ ଚନ୍ଦ୍ରାବଳୀ ହୋଇଲେ ବାହାର ।
ପ୍ରବେଶ ହୋଇଲେ ଯାଇ ଗଉରୀ ତୀର୍ଥର । ।୧୦।
ହୁଳହୁଳ ଶୁଣି କୃଷ୍ଣ ସଖା ସଙ୍ଗେ ଘେନି ।
ସତ୍ୱରେ ହୋଇଲେ ଯହିଁ ଅଛନ୍ତି କାମିନୀ ।
ଲତାନ୍ତରେ ଥାଇ ଦେଖି ଅତ୍ୟନ୍ତ ସୁନ୍ଦରୀ ।
ଆଗେ ଉଭା ହେଲେ ଯାଇ ଧଇର୍ଯ୍ୟ ନ ଧରି । ।୧୧।

କୃଷ୍ଣଙ୍କୁ ଦେଖି ରମଣୀ ଜାଣ ସଚକିତ ।
ବଗୁରନ୍ତି ନବଘନ ଉଦେ କି ସାକ୍ଷାତ ।
ବହୁଂତ ଏ ପୀତାମ୍ବର ବକ ପନ୍ତି ହାର ।
ଉଦେ କି ଇନ୍ଦ୍ର କୋଦଣ୍ଡ ଚନ୍ଦ୍ରିକା ନିକର । ॥ ୧୨ ॥
ନେତ୍ର ଚାତକଙ୍କୁ ଦେଉ ଅଛୁ ଘନ ରସ ।
କାହ୍ନୁଁ ଏ ମିଳିଲେ ଆଜି ଅପୂର୍ବ ପୁରୁଷ ।
ମୋହନ ମୂରତି ଦେଖି ସମସ୍ତେ କାତର ।
କହିବାକୁ ନ ଆସଇ କାହାର ଉତ୍ତର । ॥ ୧୩ ॥
ସେବେ ବୋଲେ ତୁମ୍ଭେ ଆମ୍ଭ ପୁରେ ଯାଇଥିଲ ।
ଚନ୍ଦ୍ରାବଳୀ ମନ ଧନ ଚୋରାଇ ଆଣିଲ ।
ସେ ଦିନୁ ଅତି ଅଜ୍ଞାନ ହୋଇଲା ସୁନ୍ଦରୀ ।
ଉତ୍ସୁକିତ ମନ ତୁର ଶରେ ତନୁ ଦାହେ । ॥ ୧୪ ॥
ଆଜ୍ଞା ଦେଇ ଅଛନ୍ତି ଆମ୍ଭଙ୍କୁ ପୌର୍ଣ୍ଣମାସୀ ।
ଗଉରୀ ପୂଜିବା କାଳେ ଯେ ମିଳିବେ ଆସି ।
ତୁମ୍ଭ ସଖୀ ମନ ଧନ ଚୋରା ସେହି ଜାଣ ।
ଏବେ ଦେଖି ହୋଇଲେ ନ ଛାଡ଼ୁ ଏ ପ୍ରମାଣ । ॥ ୧୫ ॥
ଶ୍ରୀକୃଷ୍ଣ କହନ୍ତି ହସି ଶୁଣ ବ୍ରଜ ବାଳୀ ।
କାହାର ଏଠାରେ ଦୋଷ ବୁଝ ଚନ୍ଦ୍ରେ ସ୍ଥଳ ।
ହୁଳହୁଳି ନାଦ ମନ୍ତ୍ରେ ଆଣିଲ କଢ଼ାଇ ।
ଧୂପ ସୁଗନ୍ଧ ଔଷଧେ ଦେହକୁ ବଢ଼ାଇ । ॥ ୧୬ ॥
ମନ ମାତଙ୍ଗକୁ ରୂପ ଠୋପରେ ପକାଇ ।
ପୁଣି ବନ୍ଧୁ ଅଛ ଏବେ ଦୁର୍ବାଦ ଲଗାଇ ।
ପ୍ରବେଶ ହୋଇଲେ ମଧୁ ମଙ୍ଗଳ ଏ କାଳେ ।
କିପାଇଁ ମୁ କହୁଛ ଶୁଣ ସମସ୍ତେ ନିଷ୍ଠଳେ । ॥ ୧୭ ॥

ମନ ଯନ ଘେରା ଏହି ଅଟଇ ପ୍ରମାଣ ।
ପୂର୍ବେ ଘେରିଥାଇଛୁ ଏବେ ଆସିଅଛୁ ପୁଣ ।
ବାହୁ ରଜ୍ଜୁରେ ବନ୍ଧନ କର୍ଯ୍ୟେ ଗୋ ଝର ।
ଉପରେ ନେଇଁଣ ଲଦ ସ୍ତନ ଗଉରବର । ।୧୮।
ଏସମୟେ ବୀରା ଆସି ପ୍ରବେଶ ହୋଇଲା ।
ପୌର୍ଣ୍ଣିମାସୀଙ୍କ ଆଦେଶ ବୋଲି ଯେ କହିଲା ।
ଏ ଭୂମିର ନିଜ କାନ୍ତ ଏହାଙ୍କୁ ଗୋ କର ।
ଅତି ଆନନ୍ଦରେ ବୃନ୍ଦାବନରେ ବିହର । ।୧୯।
ତୋଳ ଗୁନ୍ଥିଲେ ଯତନେ ନାନା ପୁଷ୍ପ ମାଳା ।
ଚନ୍ଦ୍ରାବଳୀ ଚମ୍ପାମାଳା ଦେଲେ କୃଷ୍ଣ ଗଳା ।
କୃଷ୍ଣ ଚନ୍ଦ୍ରାବଳୀଙ୍କି ମର୍କତ ମାଳା ଦେଲେ ।
ସମସ୍ତ ସଖୀ ଉତ୍ସୁକେ ଦେଲେ ମାଳେ ମାଳେ । ।୨୦।
କୃଷ୍ଣ ଦର୍ଶନ ଲାଳସେ ବେଢ଼ିଲେ ଯୁବତୀ ।
ଉଦନ୍ତେ ବସ୍ତ୍ରାବାଳକ ମଣ୍ଡଳ ଆକୃତି ।
ବଳୟ ଆକାର ମୃଗ ଗଣ ପଛେ ରହି ।
ବାମା ଏ ବାହାରେ ରହି ନ ପାରଲେ ଯାଇ । ।୨୧।
ଧ୍ରୁବଗ୍ରାହି ଛାଣି ଶୀଘ୍ରେ ଶ୍ୟାମଳାର ମନ ।
କର ବନ୍ଧାନ୍ତେ ସେ ପ୍ରବେଶିଲେ ଯତ୍ନ ଧାନ ।
ବନମାଳା ଲମ୍ବାଇ ଅତିହିଁ ସ୍ନେହଭରେ ।
କର ଧର ଦେଲେ କୃଷ୍ଣ ବାମାର କନ୍ଧରେ । ।୨୨।
ଦେଖି ସର୍ବ ଗୋପୀଗଣ ନମ୍ର ମୁଖ ହୋଇ ।
କହନ୍ତି ଶ୍ରୀହରି ପୁଣ ସପ୍ରେମେ ଲଗାଇ ।
ସର୍ବାଙ୍ଗ ମଣ୍ଡିତ ହେଲା ଭୂମିର ମାଳାରେ ।
ଶ୍ୟାମଳା ମଣ୍ଡନ ହେଲା ଏ ମୋର ଗଳାରେ । ।୨୩।

ଶାନ୍ତି କରେ ଅଶକ୍ତ ମୋହର ଶରୀର ।
ତେଣୁ ଶ୍ୟାମଳା ଉପରେ ଦେଲି କର ଭର ।
ପାଦେ ପ୍ରଣମିଣ ଗୋପୀ ଶିରେ ଦେଇ କର ।
ବୋଲନ୍ତି ଗର୍ବ ଗଞ୍ଜନ ବାନା ଯେ ଭ୍ରମର । ॥ ୧୪ ॥
ଏଥୁଅନନ୍ତରେ ଚନ୍ଦ୍ରାବଳୀଙ୍କ ସଙ୍ଗରେ ।
ସଖୀଗଣ ଘେନ କୃଷ୍ଣ କୁଞ୍ଜରେ ରଙ୍ଗରେ ।
ଅତି ହରଷରେ ମିଳ ଚତୁରୀ ସକଳ ।
ସଙ୍ଗୀତ ଆରମ୍ଭ କଲେ ବଜାଇଣ ତାଳ । ॥ ୧୫ ॥
କେ ବସନ୍ତ କେ ମାଳବ କେହି ଗୁଣ୍ଡକେରୀ ।
କେ ଅତି ରୁଚିରେ ଆଳାପ କରେ ଗଉରୀ ।
ନାନା ମତେ ନାଗରୀ ତଣ୍ଡବ ରଚାଇଲେ ।
ସୁରସରେ ଆନନ୍ଦ ସାଗରେ ଭସାଇଲେ । ॥ ୧୬ ॥
ଇନ୍ଦ୍ରାଦି ଦେବ କୁସୁମ ବରଷିଲେ ଉର୍ଦ୍ଧ୍ୱଂ ।
ତରୁ ଲତା ପକ୍ଷୀ ମୃଗ ଉତ୍ସୁକତ ହୋଇ ।
ଚନ୍ଦ୍ରାବଳୀ ସଙ୍ଗେ କୃଷ୍ଣ କୁଞ୍ଜରେ ବିହାର ।
କେ ବର୍ଣ୍ଣି ପାରବ ସେ କାଳର ଶୋଭା ସାର । ॥ ୧୭ ॥
ନବଘନେ ତଡ଼ିତ ଯେମନ୍ତ ଶୋଭାବନ ।
ତମାଳେ କନକଲତା ଯେମନ୍ତ ଶୋଭନ ।
ଜମ୍ବୁନଦ ସ୍ତମ୍ଭରେ ଯେସନ ମରକତ ।
କୃଷ୍ଣସଙ୍ଗେ ଚନ୍ଦ୍ରାବଳୀ ଦିଶନ୍ତି ତେମନ୍ତ । ॥ ୧୮ ॥
ଏ ନବ ରସ ନାଗର ସେ ଚତୁରୀମଣି ।
ଏ ନବ ପଦ୍ମିନୀ ସେ ମଧୁପ ଶିରୋମଣି ।
ତର କାଲୁ ସୁର ଶରେ ହୋଇ ସନ୍ତାପିତ ।
ସମସ୍ତ ପ୍ରକାରେ ପୂର୍ଣ୍ଣ କଲେ ମନୋରଥ । ॥ ୧୯ ॥

ପଦ୍ମା ସେତେ ସଖୀ ଅତି ପରିହାସ ଭାଷି ।
ଦେଖ ପୂର୍ଣ୍ଣ ଚନ୍ଦ୍ର ରାହୁ ଗ୍ରାସିଛୁ ଗୋ ଆସି ।
ମୁକ୍ତ କାଳ ହେଲେ ସିନା ହେବ ସ୍ନାନ ଦାନ ।
ଏତେକ କହିଣ ସଖୀ ହୋଇଲେ ମଉନ । ୩୦ ।
ଏହା ଶୁଣି ଶ୍ରୀହରି ବାହାରେ ଅଛି ଉଭା ।
ଚନ୍ଦ୍ରାବଳୀ କର ଧରି ବିଶନ୍ତି ସେ ଶୋଭା ।
ମୁଖରା ପ୍ରବେଶ ଜାଣି ସେ ଶ୍ୟାମସୁନ୍ଦର ।
ଚନ୍ଦ୍ରାବଳୀ ସଙ୍ଗ ଛାଡ଼ି ହୋଇଲେ ଅନ୍ତର । ୩୧ ।
ଏସମୟେ ମୁଖରା ପ୍ରବେଶ ହେଲା ଆସି ।
ଚନ୍ଦ୍ରାବଳୀ ରୂପ ଦେଖି ପୁଚ୍ଛଇ ସନ୍ତୋଷି ।
କପାଁ ଅସ୍ତ ବ୍ୟସ୍ତ ଅଙ୍ଗ ହୋଇଛୁ ତୋହର ।
ଶୁଣି ପଦ୍ମା ସଦ୍ୟ ରଚି କହନ୍ତି ଉତ୍ତର । ୩୨ ।
କୁଞ୍ଜେ ପଶି କୁସୁମ ତୋଳନ୍ତେ ମହାଭୟୀ ।
ଗନ୍ଧ ଲୁବ୍ଧ ଭ୍ରମର ମିଳିଲେ ପାଶେ ଆସି ।
ମଧୁପ ନିବାରି ରଡ଼ି ପଳାଇ ଆସିଛୁ ।
ଦେଖ ଶ୍ରୀଅଙ୍ଗେ କେତକୀ କଣ୍ଟକ ଲାଗିଛୁ । ୩୩ ।
ଧୂଣ ପଲ୍ଲବଇ କାହିଁ ମରକତ ମାଳା ।
ପଦ୍ମା କହେ ଶ୍ୟାମଳ ଉଡ଼ାଇ ନେଉଥିଲା ।
ପଛାଇ ଦେଉନ୍ତେ ଅମ୍ଭେ ଯାଉଁଟି ଅଣିଲୁ ।
ଅତି ତୋଷେ ସଖୀର ଗଳାରେ ଲମ୍ବାଇଲୁ । ୩୪ ।
ଏମନ୍ତ ଶୁଣି ମୁଖରା ଆନନ୍ଦ ମାନସ ।
ବଧୂକୁ ଘେନି ହୋଇଲା ପୁରରେ ପ୍ରବେଶ ।
ବତ୍ସା ବାଳକ ସଙ୍ଗରେ ବାହାର ଗୋବିନ୍ଦ ।
ପୁରେ ପ୍ରବେଶ ହୋଇଲେ ଅତିହିଁ ଆନନ୍ଦ । ୩୫ ।

ଏହିରୂପେ ପ୍ରତିଦିନ କରନ୍ତି ବିହାର ।
କୃଷ୍ଣ ଚନ୍ଦ୍ରାବଳୀ ପ୍ରୀତି ପ୍ରକଟ ଗୋଚର ।
ମୁଖରା ଜାଣିଣ ତହୁଁ କରଇ ଅକଟ ।
କପାଟ ଦେଇଣ ରାତ୍ରୁ ଜଗି ଥାଇ ବାଟ । ।୩୬।
ସମୟ ନ ପାଇ କୃଷ୍ଣ ଅତିହିଁ ଆକୁଳ ।
ଜରବଧ ନୟନରୁ ବହୁଥାଇ ଜଳ ।
ଷଡରସ ଭୋଜନରେ ନ ବଳଇ ମତି ।
ଶୟନେ ସ୍ୱପନେ ଦିଶେ ଚନ୍ଦ୍ରାବଳୀ ମୂର୍ତ୍ତି । ।୩୭।
ନୂତଣରେ ହେଉଥାନ୍ତି ଅତି ଜର ଜର ।
ସାଙ୍କ  ବଳାରେ ଜରଗରେ ଥର ଥର ।
ବିରହ ବ୍ୟାଧିରେ ଦିଶେ ଶ୍ରୀମୁଖ ବିରଙ୍ଗ ।
ଏକା ବସି ଚଳୁଥାନ୍ତି ଚନ୍ଦ୍ରାବଳୀ ସଙ୍ଗ । ।୩୮।
ବୀରା ଅଗ୍ରତେ କହନ୍ତି ପଙ୍କଜ ଲୋଚନ ।
ଚନ୍ଦ୍ରାବଳୀଙ୍କ କହ ମୋ ତନସ୍ଥ ବଚନ ।
ଜୀବନ ନ ରହେ ଆଉ ତା ସଙ୍ଗ ନୋହିଲେ ।
ଏତେବୋଲି ବୀରାହସ୍ତେ ପଦ୍ମମାଳା ଦେଲେ । ।୩୯।
ପ୍ରବେଶ ହୋଇଲେ ବୀରା ଚନ୍ଦ୍ରାବଳୀ ପୁରେ ।
ଶୟନ କରିଛି ଧାଇ ଅବନୀ ଉପରେ ।
କେତେ ଜଳେ ତିନ୍ତି ଯାଉଅଛି ଛିନ୍ନ ବାସ ।
ବଚନ ନ ପାରେ କହି ବ୍ୟାକୁଳ ମାନସ । ।୪୦।
ନିଦ୍ରା ନ ଆସଇ କେତେ ମନ ଛନ୍ନ ଛନ୍ନ ।
କେବଳ ହୃଦରେ କରେ ଶ୍ୟାମଘନ ଧ୍ୟାନ ।
ବୀରା ଆଶ୍ୱାସି କହନ୍ତି ଶୁଣ ଚନ୍ଦ୍ରାବଳୀ ।
ହୃଦେ ଘେନ କୃଷ୍ଣ ଦେଇ ଛନ୍ତି ପଦ୍ମମାଳି । ।୪୧

ବୋଲନ୍ତି କହିବୁ ମୋର ପ୍ରାଣ ମିତଣୀକ ।
ଧନ୍ନ ନ ପାରଇ ଦେହ ତା ତନୁ ଏଣିକ ।
ବୀରାର ବଚନ ଶୁଣି ସେ ରମଣୀ ମଣି ।
ହୃଦୟରେ ଲମ୍ବାଇଲା ପଦ୍ମମାଳା ଆଣି । ।୪୨।
କର୍ପୂର ବଟିକା ନେଇ ବୀରା କରେ ଦେଲେ ।
ଆଜ ମୋ ପୁରକୁ ବିଜେ କରନ୍ତୁ ବୋଇଲେ ।
ଅଚିହ୍ନି ପତ୍ରରେ ବୀଣା କୃଷ୍ଣ ପାଶେ ଯାଇ ।
କର୍ପୂର ତାମ୍ବୂଳ ଦେଲା ଶ୍ରୀହସ୍ତରେ ନେଇ । ।୪୩।
କହିଲେ ମୋ ପୁରରେ ଅଜ ବିଜୟ କରିବେ ।
ତାଙ୍କ ଦିବ୍ୟ ଚିତ୍ତରେ କରୁଣା ଥିବ ଯେବେ ।
ସଙ୍କେତ ପାଇଣ କୃଷ୍ଣ ଅତି ଉଲ୍ଲସିତ ।
ଏଅନ୍ତରେ ଅସ୍ତକୁ ଭଜିଲେ ଦିନନାଥ । ।୪୪।
ମନ ଆନନ୍ଦରେ ଶୀଘ୍ରେ ମଣୋହିଁ ସାରଲେ ।
ତେଜ ସଖା ଯେବ ପଲଙ୍କରେ ପହୁଡିଲେ ।
ପୁର ନିଃଶବଦ ହେଲି ବାହୁଡ଼ିଲେ ଘର ।
ପ୍ରବେଶ ହୋଇଲେ ଯାଇ ଚନ୍ଦ୍ରାବଳୀ ପୁରୀ । ।୪୫।
ଅତି ଉଚ୍ଚ ପାଚେରୀ ପଣିତ ନୋହିଁ ତାହେ ।
ମୁଖରା ଶୋଇଛି ଦ୍ୱାରେ ପକାଇ କପାଟ ।
ତେଜ ସଖା ଯେଜ ସଙ୍ଗେ ଗମ୍ଭୁଁ ବାହୁଡିଲେ ।
କରମଙ୍ଗା ଶାଖା ଏକ ଯୋଗରେ ଦେଖିଲେ । ।୪୬।
ସୁବଳ କନ୍ଧେ ଉଠି ଛନ୍ଦଣି ରନ୍ଧ୍ର ଧରି ।
ବାଜି ପଥୀରେ ଭିତରେ ହୋଇଲେ ଶ୍ରୀହରି ।
ଦ୍ୱାର ସମୀପେ ମିଳନ୍ତି କେହୁ ସଖୀ ତହିଁ ।
ବୋଇଲେ ତୁମ୍ଭେ ଆସିଛ ଏଥକୁ କପାଇଁ । ।୪୭।

କୃଷ୍ଣ ବୋଲନ୍ତି ଚତୁରେ ତୁମ୍ଭେ ନ ଜାଣଇ ।
ଶୁଣି ହସ୍ତ ଧରି ପୂରେ ଗେଲା ପଦ୍ମା ସଖି ।
ଚନ୍ଦ୍ରାବଳୀ ଉଠି କୃଷ୍ଣେ ଆଲିଙ୍ଗନ କରି ।
ପଲଙ୍କେ ବସାଇ କହେ ବଚନ ଚାତୁରୀ । ।୪୮।
ହରଷରେ ସୁଖ ଯେବେ କରଇ ଆତୁରେ ।
ଦୁଃଖ କରାଇବା ଝଣ୍ଟ ଚତୁର ନ କର ।
ବନମାଳୀ ବୋଲନ୍ତିରେ ଶୁଣ ପ୍ରାଣ ସଖି ।
ସମସ୍ତ ପ୍ରକାରେ ମଣ ଦାସୀ ଅଟୁ ତୁହି । ।୪୯।
ଚନ୍ଦ୍ରାବଳୀ ବୋଲନ୍ତି ହେ ନବୀନ ସୁନ୍ଦର ।
ତୁମ୍ଭ ଦର୍ଶନ ବିହୁନେ ଜୀବନ ଅଥିର ।
ଏଥୁଅନନ୍ତରେ ନାନା ରସେ ବିହରିଲେ ।
ଚାରି ପହର ମଦନ ତାପକୁ ହରିଲେ । ।୫୦।
ରଜନୀ ଶେଷକୁ ଜାଣି ଯିବା କଲେ ଇଚ୍ଛା ।
କହନ୍ତି ସଙ୍ଗେ ନ ପୂରଇ ମନୋ ବାଞ୍ଛା ।
ଯିବାବେଳେ ପୁଣ ପୁଣ ଚୁମ୍ବନକୁ ଦେଇ ।
ବୋଲନ୍ତି ପାସୋରିବୁ ନାହିଁଟି ପ୍ରାଣ ସଖି ଗୋ । ।୫୧।
ଚନ୍ଦ୍ରାବଳୀ ବୋଲନ୍ତି ଯେ ହେ ଶ୍ୟାମସୁନ୍ଦର ।
ଜୀବନ ବିହୁନେ ପିଣ୍ଡ ରହେ କି କାହାର ।
ଏଅନ୍ତରେ କୃଷ୍ଣ ତହୁଁ ଚଳିଲେ ବହନ ।
ସଖାଙ୍କ ସଙ୍ଗେ ସତ୍ଵରେ ପ୍ରବେଶ ଭୁବନ । ।୫୨।
ଯଥୀରେ ଯାଇ ପଲଙ୍କେ ହେଲେ ନିଦ୍ରାଗତ ।
ନିଶା ଅନ୍ତେ ଉଦୟ ହୋଇଲେ ଦୀନନାଥ ।
ପ୍ରାତଃକାଳୁ ମୁଖରା ଉଠି ଯେ ଅତି ଖରେ ।
ମିଳିଲାକ ଚନ୍ଦ୍ରାବଳୀ ଶୟନ ମନ୍ଦିରେ । ।୫୩।

ପତ୍ରରଇ ସର୍ଖୀଙ୍କି ହିମ ଏ ଅଦଭୂତ ।
କର୍ପୂର କସ୍ତୁରି ଗନ୍ଧ ଚନ୍ଦନ ବାହିତ ।
ଶୁଣି ସେତ୍ୱା ମୂଖରାରେ ଏମନ୍ତ ଭାଷିଲା ।
କସ୍ତୁରି ମୃଗ ଗୋଟିଏ ଗାତ୍ରରେ ଅଛିଲା । ।୫୪।
ଗାତ୍ରଯାକ ଏହି ପ୍ରାଙ୍ଗଣରେ ବୁଲୁଥାଇ ।
ଚଞ୍ଚଳ ଶେଷ ହେଜିଣ ଗଲା ସେ ପଳାଇ ।
ମୂଖରା ଦେଖିଲା ଯାଇ ପାଦପଦ୍ମ ଚହ୍ନ ।
ସଖୀଙ୍କି ପତ୍ରରେ ଏହ୍ନ କେବଣ ହଯାଛ । ।୫୫।
ଛତ୍ର ଚାମର ଧ୍ୱଜ ଅଙ୍କୁଶ ଚହ୍ନ ଏତ ।
କହ କହ ଅଛତ ସମସ୍ତ ବିପରୀତ ।
ସେତ୍ୱ ପୁଣି ବଚନରେ ଏମନ୍ତ କହିଲେ ।
ସାକ୍ଷାତ ବ୍ରହ୍ମାଣ୍ଡ ନାଥଙ୍କ ହସ୍ତ ଥିଲେ । ।୫୬।
ସଙ୍କେତ ଦେଖାଇ ଏହା କହି ଯାଇଛନ୍ତି ।
ଗୋବର୍ଦ୍ଧନମଲ୍ଲଙ୍କୁ ପ୍ରାପତ ହେବ ରାତ୍ରି ।
ଛତ୍ର ଚାମର ଅଙ୍କୁଶ ପାଇ ବନ୍ଧୁମାନ ।
ପ୍ରବେଶ ହୋଇବେ ଅଜ ପୁରରେ ବଦନ । ।୫୭।
ଶୁଣି ମୂଖରା ଅତିହିଁ ଆନନ୍ଦ ହୋଇଲା ।
ଭୂମି ଭୁଣ୍ଡ ସୁରୁଣ୍ଡ ଗୋ ହେଉ ଯେ ବୋଇଲା ।
ଗୋବର୍ଦ୍ଧନମଲ୍ଲ ଚଢ଼ି ଅସ୍ୱଅଛି ରାତ୍ରି ।
ମୂଖରା ଅନ୍ତରେ ଲୋକେ ଏମନ୍ତ କହନ୍ତି । ।୫୮।
ଏହାଶୁଣି ବୃଦ୍ଧି ମନେ ଆନନ୍ଦ ହୋଇଲା ।
ପୁରେ ଅସି ଗୋବର୍ଦ୍ଧନ ମଲ୍ଲ ପ୍ରବେଶିଲା ।
ଅନେକ ବାଦ୍ୟ ଭୂଷଣ କଲେ ବନ୍ଧୁମାନ ।
ମୂଖରା ସତ୍ୟକୁ ଘେନି ସଖୀଙ୍କ ବଚନ । ।୫୯।

ଏଥିଅନ୍ତେ କେତେ ଦିନ ହୋଇଲା ଅନ୍ତର ।
ସଖୀଗଣ ପୁଣି ମେଳ କରନ୍ତି ସତ୍ୱର ।
ଯାଇ ମୁଖରା ଆଗରେ କହିଲେ ଏମନ୍ତ ।
ରାତ୍ରରେ ଏକ ସ୍ୱପନ ଦେଖିଲିଗୋ ମାତ । ।୬୦।
ବନ୍ଦ୍ୟପେନୀ କ୍ରୋଧଭରେ କହିଲେ ଏମନ୍ତେ ।
ସ୍ୱର୍ଗ୍ୟ ଯାଇ ନ ଅଛା ଯାଗୋଉ ଦେଲେ ମୋତେ ।
କହିଁ ମୋତେ ପୂଜା ନ କରଇ ଚନ୍ଦ୍ରାବଳୀ ।
ଏ ବଚନ ଶୁଣି ବୃଦ୍ଧି ହୋଇଲା କାହ୍ନୁଳ । ।୬୧।
ପଦ୍ମାକୁ ବୋଇଲା ତୁମ୍ଭେ ବଧୂ ସଙ୍ଗେ ଘେନ ।
ଯାଇ ପୂଜା କର ଅପୂର୍ବ ବନ୍ଦ୍ୟପେନୀ ।
ଶୁଣି ସଖୀଗଣ କର୍ତ୍ତ୍ୟ ବଧିକ ଯାଇଲେ ।
ସତ୍ୱରେ ଯାଇ ଗଉରୀ ତୀର୍ଥରେ ମିଳଲେ । ।୬୨
ଶ୍ରୀକୃଷ୍ଣ ସ୍ନାହାନ ଅନ୍ତେ ମଣୋହିଙ୍କ ଯାଇ ।
ବୃନ୍ଦାବନେ ପ୍ରବେଶ ହୋଇଲେ ବେଣୁଧାରି ।
ଗଉରୀ ତୀର୍ଥେ ପ୍ରବେଶି ଚନ୍ଦ୍ରାବଳୀ ସଙ୍ଗେ ।
କୁଞ୍ଜେ ରହି ବହାର କଲେ ସେ ନାନାରଙ୍ଗେ । ।୬୩।
ଲୀଳା ଅନ୍ତେ କୁଞ୍ଜରୁ ବାହାର ଶ୍ୟାମଘନ ।
କରେ ଧରନ୍ତି ଚନ୍ଦ୍ରାବଳୀର ବଦନ ।
ଏ କାଳେ ଅପିମିଳଲା ମୁଖରା ସତ୍ୱରେ ।
ଚନ୍ଦ୍ରାବଳୀ ହାଥ ଧରନ୍ତି କୃଷ୍ଣ କରେ । ।୬୪।
ବୋଲେ ନନ୍ଦସୁତ କେଡ଼େ ଭରସା ତୋହର ।
ବପନ୍ନ ଧର ଓଠାରୁଅଛୁ ମୋ ବଧୂର ।
ଆଉ କେଉଁ କୁଳବଧୂ ରଖିବୁ ତୁ ଭଲେ ।
କଂସ ଅଗେ କହି ଦଣ୍ଡ ଦିଅଇବ ଭଲେ । ।୬୫।

ଏବଚନ ଶୁଣି ସେ ବୋଲନ୍ତି ବନମାଳୀ ।
ଚନ୍ଦ୍ରାବଳୀ ନେଇଛୁ ମୋ ମରକତ ମାଳୀ ।
ମୁଖରା ଚନ୍ଦ୍ରାବଳୀଙ୍କି କହଇ ଉତ୍ତର ।
ମାଳା ଅଣିଛୁଁ କହ ଏ କାଦମ୍ବଗର । ।୬୬।
ସଖୀ ବୋଲେ ଶ୍ୟାମଳ କେବାର ମାଳା ଗୋଟି ।
ଭୂମିରେ ପଡନ୍ତେ ଅମ୍ଭେ ଅଣିଲୁ ସାଉଁଟି ।
ଅତି ଯତ୍ନେ ଲମ୍ବାଇଛୁ ସଖୀର ଗଳାରେ ।
କୃଷ୍ଣର ବୋଲି ନ ଜାଣୁ ଶୁଣିଲୁ ଏଠାରେ । ।୬୭।
ମୁଖରା ବୋଇଲେ ଏବେ ଦିଅ ମାଳା ତାର ।
ଶୁଣି ଚନ୍ଦ୍ରାବଳୀ ଦେଲେ ଶ୍ରୀକୃଷ୍ଣ ଗଳାର ।
ଶ୍ରୀକୃଷ୍ଣ ବୋଇଲେ ଯେବେ ସରଧା ତୁମ୍ଭର ।
ଦେଉଅଛୁ କଅଁ ମୋର ଉର ମୋତିହାର । ।୬୮।
ଏତେବୋଲି ଚନ୍ଦ୍ରାବଳୀ ଗଳେ ଲମ୍ବାଇଲେ ।
ଦେଖି ସଖୀ ଅନନ୍ଦରେ ହୁଳହୁଳ ଦେଲେ ।
ତରୁ ଲତା ଉଲ୍ଲସେ କୁସୁମ ବରଷନ୍ତି ।
ସାର ଶୁକ ଆଦି ଦ୍ୱିଜେ ଧ୍ୱନି ପ୍ରକାଶନ୍ତି । ।୬୯।
ମୁଖରା ପୁଚ୍ଛଇ ଏଏ ମଙ୍ଗଳାଚରଣ ।
ସଖିଏ କହିଲେ ତୁମ୍ଭେ କରାଅ ବରଣ ।
ଏବଚନ ଶୁଣିଣ ମୁଖରା ଲାଜ ପାଇ ।
ତୁନହୋଇ ରହିଲା ସେ ଉତ୍ତର ନଦେଇ । ।୭୦।
ବଧୂକୁ ସଙ୍ଗତେ ଘେନି ଗଉଡ ତୀର୍ଥରେ ।
ଯାଇ ମିଳିଲା ସଭିଙ୍କି ଅନନ୍ଦ ମନରେ ।
ମଧୁମଙ୍ଗଳେ ଅର୍ଘ୍ୟ କରାଇ ଗଉରୀ ।
ପୂଜା ବଢ଼ାଇ ପ୍ରବେଶ ହେଲେ ନନ୍ଦପୁରୀ । ।୭୧।

ଅନ୍ତ କାଳ ଜାଣି ଏଥନ୍ତରେ ଦାମୋଦର ।
ବସ୍ତ୍ର ତାଳ ସଙ୍ଗେ ରଙ୍ଗେ ମିଳିଲେ ସ୍ୱପୁର ।
ଏମନ୍ତ କେତେ ଦିନ ଅନ୍ତରେ ବନମାଳୀ ।
ଚନ୍ଦ୍ରାବଳୀ ସଙ୍ଗ ନୋହିବାରୁ ମନେ ଗ୍ଲାନି । ।୧୨
ରାତ୍ର ଅର୍ଦ୍ଧରୁ ଶୟନ ମନ୍ଦିରୁ ବାହାର ।
ଯାଇ ପ୍ରବେଶ ହୋଇଲେ ଚନ୍ଦ୍ରାବଳୀ ପୁର ।
ଗଡ ମଠେ ପାଚେରୀ ଡେଇଁଲେ ଗୋପୀନାଥ ।
ଧୀରେ ଧୀରେ ଠୁକନ୍ତି କପାଟ ପରେ ହାତ । ।୧୩।
ଚେତି ଚନ୍ଦ୍ରାବଳୀ ଉଠି କପାଟ ଫେଡନ୍ତେ ।
କଙ୍କଣ ଶବଦ ବୁଢ଼ି ଶୁଣିଲା କେମନ୍ତେ ।
ମୁଖରା ମୁଖ ରାବକୁ ଶୁଣି ଚନ୍ଦ୍ରାବଳୀ ।
ପୁଣିହିଁ ଲେଉଟି ଅଛି ପଲଙ୍କରେ ମିଳି । ।୧୪।
ଏମନ୍ତରେ ରାତ୍ରେ ଘଡ଼ିକ ଘଡ଼ି ଉଠେ ।
ବୁଢ଼ିର ଚାତ୍ରତ ଜାଣି ଯାଅନ୍ତି ଲେଉଟି ।
ଏକାନ୍ତରେ କୃଷ୍ଣ ରହି ବଦରୀ ମୂଳରେ ।
ବକ୍ଷସ୍ଥଳ ତିନ୍ତ୍ର ଯାଉ ଅଛି ନେତ୍ର ନୀରେ । ।୧୫।
କନ୍ଦର୍ପ ଶରେ ଶ୍ରୀକୃଷ୍ଣ ଅତି ଅକ୍ଷକତ ।
ପଦ୍ମ କୁମ୍ଭ ରଖି ଚଳଲେ ଗୋପୀନାଥ ।
ପ୍ରଭାତରୁ ଉଠି ସଖୀ ସଙ୍ଗେ ଚନ୍ଦ୍ରାବଳୀ ।
ମନ ଅତି ତରସ ବଦରୀ ତଳେ ମିଳି । ।୧୬।
ଦେଖିଲେ ଅବନୀ ତିନ୍ତ ଅଛି ନେତ୍ର ଜଳେ ।
ପାଦ ପଦ୍ମ ଚିହ୍ନ ଗୃହିଁ ଜୀବନ ବଳକେ ।
ବୋଲନ୍ତି ଏଠାରେ ବସି ଥିଲେ ଶ୍ୟାମଘନ ।
ମୋର ବିଚ୍ଛେଦରେ ସେ ଗୋ କରନ୍ତି ରୋଦନ । ।୧୭।

ପୁଣଦେଖିଲେ ପଦ୍ମ କୁମୁଦ ଚହିଁ ଅଛି ।
ପୁଣପୁଣ ଉପରେ ଶିରେ ଲଗାଇ ମୃଗାକ୍ଷି ।
ଗୃହିଁ ଯେନ୍ୟା ପକ୍ଷୀ ଚହିଁ କହଇ ଏମନ୍ତ ।
ଡାକି ଯାଉଛନ୍ତି ଶିବା ଆସିବା ସଙ୍କେତ । ।୭୮।
ବୋଲେ କୁମୁଦ ବହାନ୍ତ କାଲୁ ଆସିଥିଲି ।
ପଦ୍ମ ବିକାଶକୁ ଜାଣି ଅନ୍ତର ହୋଇଲି ।
ଚନ୍ଦ୍ରାବଳୀ ବୋଇଲେ ଗୋ ଶୁଣ ପ୍ରାଣସଖି ।
ମୋହ ଯେନ ଶ୍ୟାମଚନ୍ଦ୍ର ନେଲେ ଏତେ ଦୁଃଖି । ।୭୯।
ବନମାଳୀ ଚନ୍ଦ୍ରାରେ ଗୋ ହୋଇଣ ଆକୁଳ ।
ଅନୁକ୍ଷଣେ ନ ରହଇ ନାହ୍ନଙ୍କୁ ଛଳ ।
ଏକାନ୍ତ ମନ୍ଦିରେ ବସି ବଗୁରଇ ମନେ ।
ମୋ ଶ୍ୟାମଚନ୍ଦ୍ରର ରୂପ ଦେଖିବ କେ ସନେ । ।୮୦।
କର୍ପୂର ଚନ୍ଦନକୁ ମଣଇ ହୁତାଶନ ।
ଦଶ ସମ ମଣେ ମନ୍ଦ ମଳୟ ପବନ ।
ଚନ୍ଦ୍ରକର ମଣଇ ପ୍ରଚଣ୍ଡ ଚଣ୍ଡକର ।
କୋକିଳ ଧ୍ୱନିକୁ ଶୁଣି ହୁଅଇ ଅରୁଚି । ।୮୧।
ନିଦ୍ରାଅଳସ ତହିଁନେ ଅତି କୃଶତାର ।
ଅନେକ ରୂପେ ସଖୀ କରନ୍ତି ଉପଚାର ।
ଶାନ୍ତିକୁ ନ ଭଜଇ ଲାବଣ୍ୟ ରସିଜ୍ୟ ।
ସଖୀ ଚିନ୍ତନ୍ତି ହେଲା ଏ ଅସାଧ୍ୟ ବ୍ୟାଧି । ।୮୨।
ଏମନ୍ତ ସମୟେ ପୌର୍ଣ୍ଣମାସୀ ପରବେଶ ।
ଦେଖିଲେକ ଚନ୍ଦ୍ରାବଳୀ କି ରହେ ଅବଶ୍ୟ ।
ଗୋବର୍ଦ୍ଧନମଲ୍ଲକୁ କହନ୍ତି ଦେବୀ କଥା ।
ଦେଖି ବଧୂ ସନ୍ତାପ ଲଭିଲୁ ମନେ ବ୍ୟଥା । ।୮୩।

ବୋଲେ ଗୋବର୍ଦ୍ଧନମଲ୍ଲ ତ କରିବ ବୁଦ୍ଧି ।
ବେଳକୁ ବେଳ ହୋଇଲା ପ୍ରବଳ ଏ ବ୍ୟାଧି ।
ପୌର୍ଣ୍ଣମାସୀ ବୋଲନ୍ତି ଯେ ମୋର ବୋଲ କର ।
ମନ୍ତ୍ର ଯନ୍ତ୍ର ଜାଣଇଁ ଗେ ଯଶୋଦା କୁମର । ।୮୪।
ଦେଶରେ ଅଛଇ ଯେ ତୁମ୍ଭର ସାନ ଝିଅ ।
ବିଳମ୍ବ ନ କର ତାଙ୍କୁ ଆଣ ବେଗେ ଯାଇ ।
ଶୁଣି ଗୋବର୍ଦ୍ଧନମଲ୍ଲ ଅତିହିଁ ସତ୍ୱରେ ।
ପ୍ରବେଶ ହୋଇଲେ ଯାଇ ନନ୍ଦର ମନ୍ଦିରେ । ।୮୫।
ନନ୍ଦ ଯଶୋଦାଙ୍କୁ ନମସ୍କାର କରି କହେ ।
ବଧୂଙ୍କୁ ତୁମ୍ଭର ବ୍ୟାଧି ହେଲା ଅତିଶୟେ ।
କୃଷ୍ଣ ଭଲ କରିବେ କହିଲେ ପୌର୍ଣ୍ଣମାସୀ ।
ନନ୍ଦ ଯଶୋଦା କହିଲେ କୁମରେ ଆଶ୍ୱାସି । ।୮୬।
ବେଗେ ଗୋବର୍ଦ୍ଧନ ମଲ୍ଲ ପୁରେ ଯାଅ ବାବୁ ।
ଚନ୍ଦ୍ରାବଳୀଙ୍କର ବ୍ୟାଧି ଭଲ ଯେ କରିବୁ ।
ଶୁଣି ଗୋବର୍ଦ୍ଧନମଲ୍ଲ ସଙ୍ଗେ କୃଷ୍ଣ ଗଲେ ।
ଚନ୍ଦ୍ରାବଳୀ ବ୍ୟାଧିବନ୍ତ ହୋଇଛି ଦେଖିଲେ । ।୮୭।
ବୋଲନ୍ତି ଯେ ଅସାଧ୍ୟ ହୋଇଛି ଏହୁ ବ୍ୟାଧି ।
ବଗୃରଣ ଏହାକୁ କହିବା ମହୌଷଧ ।
ତପେଣ ଧମ୍ନ ଲେଖ ଚାମ୍ପ କରକୁ ଧରିଲେ ।
ନାଡ଼ିକାକୁ ଦେଖି ନିଜ କପାଳ କଣ୍ଟିଲେ । ।୮୮।
ବୋଇଲେ ତୁମ୍ଭର ଯେବେ ଥିବ ଶୁଭ ଦଶା ।
ଅତିହିଁ କଷ୍ଟରେ ବଞ୍ଚିବ ଯେ ମହାଳସା ।
ହେମନ୍ତେ ଅଗ୍ନି ଯେସନ ଶିଶିରେ ତପନ ।
ବସନ୍ତରେ କରାଇବ ବନରେ ଭ୍ରମଣ । ।୮୯।

ଗ୍ରୀଷ୍ମେ ଶୀତ ଉପଶ୍ରେ ବର୍ଷାରେ ଅଙ୍ଗାର ।
ଶରଦରେ କ୍ଷୀରପାନ କରାଇବ ବାଳୀ ।
ଅତଇବ ଯେବେ ଏହୁ ନାଇ ଉପଯୋଗ ।
ତେବେ ସେ ସାଧ ହୋଇବ ଅବଳାର ରୋଗ । ।୧୦।
ଚନ୍ଦ୍ରଙ୍କର କିରଣରେ ଚକୋର ଯେମନ୍ତ ।
କୃଷ୍ଣ କର ଲାଗି ଚନ୍ଦ୍ରାବଳୀ ସେହି ମତ ।
ଉଠିଁ ପଲଙ୍କାରେ ବସି ବଦନ ଲୁଅଇଁ ।
ଦେଖି ଗୋବର୍ଦ୍ଧନମଲ୍ଲ ହରଷେ କହଇ । ।୧୧।
ଚନ୍ଦ୍ରାବଳୀଙ୍କର କଥା ଲାଗଇ ତୁମ୍ଭଙ୍କୁ ।
ମୁହିଁ ଯାଉଅଛୁ କାଲି କଂସ ଭୁବନକୁ ।
ଦିନୁ ଦିନୁ ଚନ୍ଦ୍ରକଳା ବଢ଼ଇ ଯେମନ୍ତ ।
ଚନ୍ଦ୍ରାବଳୀ କୃଷ୍ଣ ଅଙ୍ଗ ଲାଗି ଶୋଭାବନ୍ତ । ।୧୨।
ନାରଦକୁ ପଚ୍ଚରନ୍ତି କୁବେର କୁମର ।
କେମନ୍ତ ହୋଇଲା କହ ରାଧାଙ୍କ ବହାର ।
ନାରଦ କହନ୍ତି ଶୁଣହେ ନଳ କୁବେର ।
ଯାହା ପଚ୍ଚରଲୁ ତୁ ସଂସାର ମଧ୍ୟେ ସାର । ।୧୩।
ବୃଷଭାନୁ ନାମେଣ ଗଡ଼ିରେ ଏକ ରାଜା ।
କୀର୍ତ୍ତିଦା ବୋଲିଣ ତାଙ୍କ ଏକଇ ଭାରଯା ।
ଶ୍ରୀରାଧିକା ଅଟନ୍ତି ଯେ କୁମାରୀ ତାଙ୍କର ।
ଅତି ରୂପବତୀ ଯେ ବ୍ରହ୍ମାଣ୍ଡମଧ୍ୟେ ସାର । ।୧୪।
ବୃଷଭାନୁ ବଚ୍ଚରିଲେ ବାହା କରିବାକୁ ।
କୀର୍ତ୍ତିଦା ବୋଇଲେ ମୁ ଯେ କହୁଅଛି ସତ୍ୟକୁ ।
ଚନ୍ଦ୍ରସେନଙ୍କ ଭାରଯା ଗୋପେନ୍ଦ୍ରେ ଠାରେ ।
ଥିଲେ ମୁ ମିଳଲି ଯାଇ ସେହି ସମୟରେ । ।୧୫।

କୁମର କୁମାରୀ ହେଲେ କରାଇବା ବନ୍ଧ ।
ବୋଲି ପ୍ରମାଣ କରନ୍ତି କେ ଅନ୍ନ କରିବା ।
ବୃଷଭାନୁ ପୁଚ୍ଛିଲେ ଯେ ବ୍ରାହ୍ମଣ ମାନଙ୍କୁ ।
ଯେ କହିଲେ ବସ୍ତ୍ର କର ତ ଲଗ୍ନ ଘଡ଼ିକୁ । ।୯୬।
ଏ ହେନ ଅଭିମନ୍ୟୁକୁ ବସ୍ତ୍ର କରାଇଲେ ।
ଧନ ରତ୍ନ କନକ ଅନେକମତେ ଦେଲେ ।
ଅଭିମନ୍ୟୁ ଶୁଣି ଚନ୍ଦ୍ରାବଳୀଙ୍କ ସମ୍ବାଦ ।
ରାଧିକା ରୂପକୁ ଦେଖି ମନରେ ବିଷାଦ । ।୯୭।
ବଶ୍ୟରଇ ରହିବ ମୁଁ ଯାଇ ଅନ ପୁର ।
କୁଳବନ୍ତି ବ୍ରତ ହରେ ଏ ନନ୍ଦ କୁମର ।
ଜାଣି ପୌର୍ଣ୍ଣମାସୀ ନାନ୍ଦୀମୁଖୀ ବୃନ୍ଦାମତି ।
ତାଙ୍କ ଆଜ୍ଞା ଦେଲେ ତୁମ୍ଭେ ଯାଅ ଗୋ ଝଟତି । ।୯୮।
ଅଭିମନ୍ୟୁ ପୁର ଛାଡି ଯିବ ଗୋ ବୋଲଇ ।
ତୁମ୍ଭେ ଏବେ ଯାଇ ତାଙ୍କୁ ଅସ ଗୋ ବୁଝାଇ ।
ଜାଣି ପ୍ରବେଶ ହୋଇଲେ ଅଭିମନ୍ୟୁ ପୁରେ ।
ପୁଚ୍ଛିଲେ ପୁଣ ଏମନ୍ତ ବଚନ ମଧୁରେ । ।୯୯।
ତୁମ୍ଭେ କପାଁ ଯିବ ହୋଇ ଅଛ ଆନପୁର ।
ଅଭିମନ୍ୟୁଁ କହେ ପୁଣ ଏମନ୍ତ ଉତ୍ତର ।
ଏ ଗୋପରେ ଜାତ ହୋଇଛି ନନ୍ଦସୁତ ।
ଦେଖିବା ମାତ୍ରକେ ହରେ କୁଳବନ୍ତୀ ବ୍ରତ । ।୧୦୦।
ପ୍ରାଣ ଧନ ଗଲେହେଁ ମହତ ମାନ ଥାଉ ।
ତୁମ୍ଭେ ସବୁ ଜାଣ ମୁଁ କହିବି କସ ଆଉ ।
ଦେବୀ ବୋଇଲେ ରାଧାଙ୍କୁ କପାଇଁ ଦେଖିବେ ।
ଏ ପୁରୁ କ ଯାଅ ହେନ ମୋର ବୋଲ ଏବେ ।୧୦୧।

ନେତ୍ର ସମୀପରେ ଥାଇ କପାଳ ମଧ୍ୟଦେଶେ ।
ତେସନ ଶ୍ରୀମନ୍ତ ଥାନ୍ତୁ ଅନ୍ତଃପୁରେ ସୁଖେ ।
ଏମନ୍ତେ ଅଭିମନ୍ୟୁକୁ କରି ସମାଧାନ ।
ପ୍ରବେଶ ହୋଇଲେ ପୌର୍ଣ୍ଣମାସୀସନ୍ନିଧାନ । ।୧୦୨।
ପୌର୍ଣ୍ଣମାସୀ ସ୍ମରଇଲେ ଦୁର୍ବାସା ଋଷିରେ ।
ଋଷି ତକ୍ଷଣେ ପ୍ରବେଶ ହେଲେ ସେହିଠାରେ ।
ଦର୍ଶନ କରି କହନ୍ତି ଏମନ୍ତ ବଚନ ।
ତୁମ୍ଭେ ରାଧାକୃଷ୍ଣ ଲୀଳା କରାଅ ବହନ । ।୧୦୩।
ଶୁଣି ମୁନି କହନ୍ତିଯେ ଏମନ୍ତ ଉତ୍ତର ।
ମୋତେ ଏହିଅର୍ଥେ ପେଷିଛନ୍ତି ବେଦବର ।
ପୌର୍ଣ୍ଣମାସୀ ବୋଲନ୍ତି ଶୁଣହେ ତପୋଧନ ।
ରାଧା ସୂର୍ଯ୍ୟ ପୂଜିବାରେ କରାଅ ବହନ । ।୧୦୪।
ଶୁଣି ମୁନି ଶୀଘ୍ରେ ଅଭିମନ୍ୟୁ ପୁରେ ଗଲେ
ଜଟିଳା ପୁତ୍ରବଧୂକୁ ଘେନି ପ୍ରଣମିଲେ ।
କଲ୍ୟାଣ କରଣ ମୁନି ଏମନ୍ତ କହନ୍ତି ।
ଏ ବଧୂ ଅଟନ୍ତି ଯେ ତୁମ୍ଭର ଭାଗ୍ୟବତୀ । ।୧୦୫।
ତୋପୁରେ ଲକ୍ଷ୍ମୀ ସାକ୍ଷାତେ ବଢେ କରଛନ୍ତି ।
ଏହାର ସକାଶୁ ତୋର ଅଚଳ ସମ୍ପତ୍ତି ।
ଶୁଣି ଅଭିମନ୍ୟୁକୁ କପୋଳେ ଦେଇ କର ।
ଇଷ୍ଟଅଛି ବୋଲି ଯେ କହିଲେ ମୁନିବର । ।୧୦୬।
ଜଟିଳା ଆତୁର ହୋଇ କହଇ ଏସନ ।
ଏଥକୁ ଉପାୟ ମୋତେ କହିବା ବିଧାନ ।
ରାଧିକା ଅଟନ୍ତି ସତୀ ନାରୀ ମଧ୍ୟେ ସାର ।
ସୂର୍ଯ୍ୟ ପୂଜା କଲେ ଯିବ ପୁତ୍ରରିଷ୍ଟ ତୋର । ।୧୦୭।

ଏତେ କହି ମୁନି ଗଲେ ନନ୍ଦଭୁବନକୁ ।
ଦେଖି ନନ୍ଦ ଯଶୋଦା ପ୍ରଣାମ କଲେ ତାଙ୍କୁ ।
ଶ୍ରୀକୃଷ୍ଣ ରାମଙ୍କୁ ଆଣି କରାଇ ପ୍ରଣାମ ।
ତନୁ ଧରଣି କହିଲେ ସେ ମୁନି ଉତ୍ତମ ।୧୦୮।
କୃଷ୍ଣଚନ୍ଦ୍ର ଅତିହିଁ ଦୁର୍ବଳ ହୋଇଛନ୍ତି ।
ବୃଷଭାନୁ ନନ୍ଦିନୀ ଯେ ଅଟନ୍ତି ଶ୍ରୀମତୀ ।
ତାହାଙ୍କ ହସ୍ତରେ ଯେ ରନ୍ଧନ କରାଇବ ।
ଭୋଜନ କଲେ କୃଷ୍ଣଙ୍କ ବଳ ପ୍ରକାଶିବ । ।୧୦୯।
ଏତେ କହି ମୁନିବର ତହୁଁ ଗଲେ ଚଳି ।
ପୌର୍ଣ୍ଣମାସୀ ପାଶେ ଆସି ବୃନ୍ଦାଦେବୀ ମିଳି ।
କର ବେନି ଯୋଡ଼ିଣ ସେ କହଇ ଏମନ୍ତ ।
ଶ୍ରୀକୃଷ୍ଣ ଲୀଳାକୁ ବୃନ୍ଦାବନ ଉତ୍ସୁକିତ । ।୧୧୦।
ଶୁଣି ପୌର୍ଣ୍ଣମାସୀ କହି ଏମନ୍ତ ଉତ୍ତର ।
ବୃନ୍ଦାବନରେ କରିବେ ଶ୍ରୀକୃଷ୍ଣ ବିହାର ।
ମଧୁ ପୁଷ୍ପ ଫଳ କୁଞ୍ଜ କର ସଞ୍ଚୟନ ।
ଏ ବଚନ ଶୁଣି ବୃନ୍ଦା ଗଲେ ବୃନ୍ଦାବନ । ।୧୧୧।
ଏଥୁଅନ୍ତେ କଂସ ହୋଇ ମାନସେ ହରଷ ।
ଅଘାସୁରକୁ ଡାକିଣ ଦେଲେକ ଆଦେଶ ।
ମହାମହା ମଲ୍ଲମାନେ ହେଲେ ପ୍ରାଣହତ ।
ଗୋବର୍ଦ୍ଧନ ସମୀପରେ ଥିବୁ ତୁ ଗୁପତ । ।୧୧୨।
ନନ୍ଦସୁତକୁ ନାଶିବୁ ଯାଇତୁ ବହନ ।
ପଠାଇଲା ଧନରତ୍ନ କରି ବହୁମାନ ।
କଂସ ଆଜ୍ଞା ଘେନିଯେ ସତ୍ୱରେ ଅଘାସୁର ।
ରହିଲା ଗୁପତେ ଗୋବର୍ଦ୍ଧନ ସମୀପର । ।୧୧୩।

ଏଅନ୍ତରେ ଗ୍ରୀଷ୍ମଋତୁ ହୋଇଲା ପ୍ରବେଶ ।
ପ୍ରଭାତରୁ ବସ୍ତ୍ରାବାଳ ଯେସନ ପୀତବାସ ।
ପ୍ରବେଶ ହୋଇଲେ ଯାଇ ଶ୍ରୀବୃନ୍ଦାବନରେ ।
ଗୋପାଳଙ୍କୁ ଯେସନ ତାହା ବହାର ରଙ୍ଗରେ । ।୧୧୪।
ଗୋବର୍ଦ୍ଧନ ସମୀପରେ ମିଳିଲେକ ଯାଇ ।
ପାଞ୍ଚ ବସ୍ତ୍ରାତଯେ ଅଘାସୁର ଅଛୁ ଶୋଇ ।
ଗିରି ଗହ୍ୱର ପରାୟେ ମେଲିଲେ ତଣ୍ଡରେ ।
ପ୍ରବେଶ ହେଲେ ସମସ୍ତେ ଭାଗର୍ଭ ଉଦରେ । ।୧୧୫।
ଜାଣି ଅଘାସୁର ଶୀଘ୍ରେ ପକାଇଲା ପାଟି ।
କୃଷ୍ଣ ଜାଣି ବାହାରିଲେ ତାମୂର୍ଦ୍ଧନ ଫାଟି ।
ସମସ୍ତେ ବାହାରି ଅଘାଶିରେ କଲେ ନୃତ୍ୟ ।
ଦେବେ ପୁଷ୍ପ ବରଷିଲେ ଦୈତ୍ୟ ହେଲା ହତ । ।୧୧୬।
ନାଚନ୍ତି ଗାଅନ୍ତି ପୋଏ ନାନା କୁତୂହଳେ ।
ପ୍ରବେଶ ହୋଇଲେ ଯାଇ ବାଣ୍ଡୀରବଟତଳେ ।
କ୍ଷୁଧାତୁର ହୋଇଣଯେ କରନ୍ତି ବଗ୍ରର ।
ଶ୍ରୀକୃଷ୍ଣ ବୋଲନ୍ତି ଆଣ ଅନ୍ନ ଯେ ଯାହାର । ।୧୧୭।
ଆଣି ଏକ ଠାବ କଲେ ଅନ୍ନ ବ୍ୟଞ୍ଜନକୁ ।
ଭୋଜନ କରନ୍ତି ତୋଷେ ଯେ ଯାହା ମନକୁ ।
କାହା କରୁ ଛଡ଼ାଇ ଯେ ଭୁଞ୍ଜନ୍ତି ଶ୍ରୀହରି ।
କାହା କରେ ଦିଅନ୍ତି ଉତ୍ସୁକ ହୋଇ କରି । ।୧୧୮।
କେହୁ ଅଧେ ଖାଇ ବୋଲେ ଦେଖ କି ମଧୁର ।
ତାହା ନେଇଁ ଶ୍ରୀକୃଷ୍ଣ ଭୁଞ୍ଜନ୍ତି ତୋଷକର ।
ଦେଖି ଦେବବର ବଗ୍ରରଇ ମନେ ମନେ ।
ଅଶେଷ ବ୍ରହ୍ମାଣ୍ଡନାଥ ଅଟଇରେ ଏସନେ । ।୧୧୯।

ସୁଣିହିଁ ଏରୂପରେ ପାଞ୍ଚିଲା ଯାଉଛିବାରେ ।
ବତ୍ସ ଗଣ ଯେବେ ହଉ ଗଲାକ ଯାଉରେ ।
ଏଣେ କୃଷ୍ଣ ବତ୍ସାଗଣ ନ ଦେଖି ଅଲୁଭେ ।
ବଣ୍ଠ ସୁବଳଙ୍କୁ ଯେବେ ଲୋଡ଼ିବାରେ ଗଲେ । ।୧୬୦।
ଶ୍ରୀକୃଷ୍ଣ ନଥିବାର ଦେଖିଣ ବେଦପତି ।
ବଳେ ଗୋପାଳ ସୁଅଙ୍କୁ ହରିଲା ଝଟତି ।
ତୋଷେ କମଣ୍ଡଳର ଭିତରେ ପୁରାଇଲା ।
ଅଟିହିଁ ସତ୍ୱରେ ନିଜ ପୁର ଚଳିଗଲା । ।୧୬୧।
ବତ୍ସାଗଣ ଲୋଡ଼ି ନ ପାଇଲେ କୃଷ୍ଣ ଯହୁଁ ।
ଅଷି ଭୋଜନ ସ୍ଥାନରେ ପ୍ରବେଶିଲେ ତହୁଁ ।
ଦେଖିଲେ ଯେ ସେଠାରେ ନାହାନ୍ତି ଗୋପବାଳେ ।
ଏହୁ ଅଦଭୁତ ବୋଲି ମନରେ ଭାଳିଲେ । ।୧୬୨।
ଜାଣିଲେ କପଟ ଏ ତେ କଲା ବେଦବର ।
ବତ୍ସା ବାଳଙ୍କ ଶ୍ରୀଅଙ୍ଗୁ କଲେ ଯେ ବାହାର ।
ଅସ୍ତ କାଳ ଜାଣି ପ୍ରବେଶିଲେ ପୁରେ ଆପେ ।
ଦେଖି ଯଶୋଦା କହନ୍ତି କୁମରେ ଅଧୋପେ । ।୧୬୩।
ନିରବଧି ବନସ୍ତରେ କେଉଁ ବୁଦ୍ଧି ଦିନ ।
ତୋତେ ନ ଦେଖି କେମନ୍ତେ ଧରିବ ଜୀବନ ।
ଏତେବୋଲି ଶ୍ରୀକୃଷ୍ଣଙ୍କୁ ମଣୋହିଁ କରାଇ ।
ପଲଙ୍କ ଉପରେ ଯତ୍ନେ ଶୁଆଇଲେ ନେଇ । ।୧୬୪।
ଅତି ସୁଖେ ନିଦ୍ରା ଭର ପଙ୍କଜନୟନ ।
ଏଉତ୍ତାରେ ରଜନୀ ହୋଇଲା ଅବସାନ ।
ଉଠିଲା ସଖୀ ଗଣଙ୍କୁ ଏମନ୍ତ କହଇ ।
ରାଧାସଙ୍ଗେ ଯେବେ ସୂର୍ଯ୍ୟ ପୂଜା କର ଯାଇ । ।୧୬୫

ଅଜ ବଇଶାଖ ଯେ ପୌର୍ଣ୍ଣିମୀ ଗୁରୁବାର ।
ଚଖୁ ସଙ୍ଗେ ହେବ ପୂଜା ଅନୁକୂଳ କର ।
ଏ ବଚନ ଶୁଣି ସବେ ଗୋପୀ ପାଶେ ଯାଇ ।
ଯେ ଯା ସେବା ମତେ ନିତ୍ୟ ବସ୍ତୁ ବଢ଼ାଇ । ॥ ୧୨୬ ॥
ସେବନ ସଙ୍ଗତେ ସୂର୍ଯ୍ୟପୂଜା ଯେ ଯାହାର ।
ଶ୍ରୀମତୀଙ୍କ ହେନ ସଖୀ ହୋଇଲେ ବାହାର ।
ଗନ୍ଧ ଚନ୍ଦନ ତଣ୍ଡୁଳ ତାମ୍ବୂଳ ଲଡ଼ୁ ।
ଭ୍ରମର ଚମ୍ପକ ଲତା ହାତ ହୋଇ ଛତା । ॥ ୧୨୭ ॥
ଭୃଙ୍ଗବଧୂ କରେ ଯନ୍ତ୍ର ବାଦ୍ୟ ତନ୍ତ୍ର ଧରି ।
ଇନ୍ଦୁଲେଖା ସମୀପେ ସୁଦେବୀ ଜଳଝରି ।
ରାଗ ଆଳାପ କରନ୍ତି ରଙ୍ଗଦେବୀ ସଙ୍ଗେ ।
ଯେ ଯାହା ସେବା ଅଚଳ ବାହାରିଲେ ରଙ୍ଗେ । ॥ ୧୨୮ ॥
ବୃନ୍ଦାବନ ସମୀପେ ପ୍ରବେଶ ହେବାଛାଣି ।
ପାଛୋଟି ଅଇଲେ ବୃନ୍ଦାଦେବୀ ଗଣ ସେନ ।
ମହାମନୋରମ ଯେ ଦେଖିଲେ ବୃନ୍ଦାବନ ।
ତରୁ ଲତା ପୁଷ୍ପିତରେ ଅତ୍ୟନ୍ତ ଶୋଭନ । ॥ ୧୨୯ ॥
ଚମ୍ପା ନାଗେଶ୍ୱର କୁରୁଅଳା ଯେ ମନ୍ଦାର ।
ପାଟଳୀ ରଙ୍ଗଣୀ କନିଅର କରବର ।
ବକୁଳ ମଲ୍ଲି ମାଧବୀ ମାଳତୀ କଞ୍ଚଣ ।
କୁନ୍ଦ କୁରୁବକ ଯେ ମରୁଆ ରଙ୍ଗବାଣ । ॥ ୧୩୦ ॥
ତଗର ତରାଟ ନବମାଳିକା ସେବତୀ ।
ଅଶୋକ ତମାଳ ଯେ କଦମ୍ବ ପନ୍ତି ପନ୍ତି ।
ମନ୍ଦ ବାତେ କମ୍ପିତେ ବଳନ୍ତି ପୁଷ୍ପ ଡାଳେ ।
ଶ୍ରୀମନ୍ତ ବଢ଼ନ୍ତେ ଜାଣି କି ଭ୍ରମର ଡାକେ । ॥ ୧୩୧ ॥

ପରାଗରେ ଭୂଷିତ ଯେ ବୃନ୍ଦାବନ ଭୂତ ।
କରିଅଛି ପାହାଡ଼ା ରାଧିକା ବଳେ ସ୍ଥିତ ।
ମନ୍ଦବାତ ଅଥବା ବ୍ୟଜନ ଗୁଳେ ଧୀରେ ।
ମଙ୍ଗଳ ଧ୍ୱନି କରନ୍ତି କୋକିଳ ନିକରେ । ।୧୩୨।
ନମ୍ର ହୋଇଛନ୍ତି ତରୁ ଅତି ଫଳଭର ।
କରୁଛନ୍ତି କିବା ଶ୍ରୀମତୀଙ୍କି ନମସ୍କାର ।
ଯେବେ କଳ୍ପତରୁ ପୁଷ୍ପ ଲତା ପାରିଜାତ ।
ଯହିଁ ଶିଳା ଚିନ୍ତାମଣି ସ୍ଥାବର ଦେବତ୍ୱ । ।୧୩୩।
କେଉଁଠାରେ ମାଧବୀ ମଣ୍ଡପ ଶୋଭିବନ ।
କାହିଁ ମାଲତୀର କୁଞ୍ଜ ଅତ୍ୟନ୍ତ ଯତନ ।
ମଧୁ ମତ୍ତେ ମଧୁକର କରନ୍ତି ଝଙ୍କାର ।
ଅମୃତ ତୁଲ୍ୟ ଫଳରେ ସର୍ବ ତରୁବର । ।୧୩୪।
ଶ୍ରୀମତୀ ଦେଖିଣ ଅତି ଆନନ୍ଦ ହୋଇଲେ ।
ଧନ୍ୟ ବୃନ୍ଦାଦେବୀ ବନପାଳିଛୁ ବୋଇଲେ ।
ତହୁଁ ଯାଇ ରାଧାକୁଣ୍ଡ ପାରୁଷରେ ମେଳ ।
ଶୋଭା ଦେଖି ମୋହର ଏ ମେଳ ବୋଲି ସ୍ଥଳ । ।୧୩୫।
ମୁଖ ପଦ୍ମରେ ଦିଶଇ ଅତି ଶୋଭାବନ ।
ପ୍ରକାଶ କୁମୁଦହାସ ମାକେନ୍ଦୀ ନୟନ ।
ବାଳ ଶୈବାଳ ଯେ ଅତ୍ୟନ୍ତ ମନୋହର ।
ବାହୁ ମୃଣାଳ ଯେ କୋକନଦ ପଦକର । ।୧୩୬।
କହ୍ଲାର ପ୍ରକାଶ କ ପାଷ,ତ ନଖପନ୍ତି ।
ନିର୍ମଳ ତା ଅଙ୍ଗକାନ୍ତି ପ୍ରକାଶିତ ଅତି ।
ନାଭୀ ଗଭୀର ତା ସ୍ତନ ଚକ୍ର କି ଯୁଗଳ ।
ହଂସ ଗତିରେ ହୋଇଛି ଅତ୍ୟନ୍ତ ମଞ୍ଜୁଳ । ।୧୩୭।

ଯହିଁ ପ୍ରବେଶ ହୋଇଲେ ସୂର୍ଯ୍ୟ ପୂଜା ସ୍ଥାନ ।
ଦେଖି କୃଷ୍ଣ ପାଦଚିହ୍ନ ଅତି ତୋଷ ମନ ।
ଦେଖି ମୋହିତ ହୋଇଲେ ପାଦର ଲକ୍ଷଣ ।
ଚିତ୍ରାଙ୍କୁ ବୋଇଲେ ତୁମ୍ଭେ ବେଗେ ଲିହି ଆଣ ।୧୩୮।
ଅଜ୍ଞା ପାଇ ଚିତ୍ରା ଲିହି ଆଣିଲା ପତ୍ରରେ ।
ଯାଇ ଦେଖାଇଲା ନେଇଁ ଶ୍ରୀମତୀ ଛମୂରେ ।
ଗୃହିଁଲେ ବ୍ରହ୍ମାଦି ଦେବେ ତାଙ୍କର ଲକ୍ଷଣ ।
ସମ୍ପୂର୍ଣ୍ଣ ହୋଇଛୁ ଯହିଁ ଉନବିଂଶ ଚିହ୍ନ ।୧୩୯।
ଦେଖି ଅତି ଉତ୍କଣ୍ଠିତ ଶ୍ରୀମତୀଙ୍କ ମତି ।
ଶ୍ୟାମକୁଣ୍ଡରେ ପଶିଣ ସ୍ନାନ କରନ୍ତି ।
ଏସମୟେ ପୌର୍ଣ୍ଣମାସୀ ପ୍ରବେଶ ହୋଇଲେ ।
ଏ ତୁମ୍ଭର କାନ୍ତ ପଦ ଚିହ୍ନ ଗୋ ବୋଇଲେ ।୧୪୦।
ହେ ପଦ୍ମିନୀ ଏ ପଦ ସୂର୍ଯ୍ୟଙ୍କୁ ପୂଜା କର ।
ବୃନ୍ଦାବଣି ଜାଣନ୍ତି ଯେ ଏଥିର ମନ୍ତ୍ରର ।
ଶୁଣି ଶ୍ରୀମତୀ ବୋଇଲେ ଚିତ୍ରାଙ୍କୁ ଅନାଇଁ ।
ପାଦ ପଦ୍ମ ଚିହ୍ନ ପୁରୁଷଙ୍କୁ ଦେଖାଲିହି ।୧୪୧।
ତଦଅନ୍ତେ ସୂର୍ଯ୍ୟ ପୂଜା ସ୍ଥାନେ ଯାଇ ମିଳି ।
ପାଦ ପଦ୍ମ ସ୍ଥାପି ସର୍ବେ ଦେଲେ ହୁଳହୁଳି ।
ତଥମତେ ସୂର୍ଯ୍ୟ ପୂଜା ସାରିଲେ ଶ୍ରୀମତୀ ।
ନନ୍ଦ ପୁରେ ପ୍ରବେଶ ଯେ ହୋଇଲେ ତତଛି ।୧୪୨।
ରାଧାକୁଣ୍ଡ ଶ୍ୟାମକୁଣ୍ଡ ରାସ ରଙ୍ଗସ୍ଥଳ ।
ଦର୍ଶନ କର ଶ୍ରୀ ବୃନ୍ଦାବନର ମଣ୍ଡଳ ।
ବ୍ରଜବିହାର ତୃତୀୟ ପ୍ରକାଶ ସଂକ୍ଷେପ ।
କହେ ଜଗନ୍ନାଥ ନାରାୟଣ ଦେବ ନୃପ ।୧୪୩।

## ଚତୁର୍ଥ ପ୍ରକାଶ ।

—୦ଃଃ୦ଃଃ୦—

### ରାଗ କାମୋଦୀ ।

ଜୟ ଶ୍ରୀ ବୃନ୍ଦାବନ ତିଧୁର ମଧ୍ୟେ ଯନୟ ବ୍ରହ୍ମାଦି ଦେବଙ୍କ ଯାହା ହ୍ୱାଳ । ସ୍ଥାବର ରୂପ ହେଲେ ଯେ ସ୍ଥାନରେ ରହିଲେ ଦେଖନ୍ତି ରାଧାକୃଷ୍ଣ କେଳ ଯେ । ଚଙ୍ଗସ୍ଥଳ । ଦିଶଇ ଅତ୍ୟନ୍ତ ମଞ୍ଜୁଳ । ଯହିଁ ବଟକଣ୍ଠେ ଆଦିମୂଳ । ଯେ ତରୁ ଲତା କୁଳ କଳ୍ପତରୁ ମଞ୍ଜୁଳ ଚନ୍ଦ୍ରାମଣି ଶିଳା ପଟଳ ଯେ । ।୧।

ଜୟଭଦ୍ର ଶ୍ରୀ ଲୋକ ଘ୍ରାଣିର ବନ ଚୟ ତାଳ ଖଦୀର ଯେ ବକୁଳ । କୁମୁଦ କାମ୍ୟବନ ମଧୁ ଶ୍ରୀବୃନ୍ଦାବନ ଦିଶନ୍ତି ଅତ୍ୟନ୍ତ ମଞ୍ଜୁଳ ଯେ । ନବ ଭୂବ । ତ୍ରିପୁର ମଧ୍ୟେ ଶୃଙ୍ଗାର । ହରେଷ୍ୟ ଯହିଁ କୃଷ୍ଣ ବିହାର । ଶେଷ ଶିବ ବଟସ୍ଥି ମାନସେ ନରେଷ୍ୟ ପାଛି ଯେ ରେଣୁ କରନ୍ତି ଅହାର ଯେ । ।୨।

ଯହିଁ ଯମୁନା ହାର ଶ୍ରୀମଣି ଶୋଭା ଧାର ବରାଜି କନକ ପଦକ । ଯେ ଯଖୀ ମଖା ଚାର ନବରତ୍ନ ନକ୍ଷର ଶ୍ରୀକୃଷ୍ଣ ମର୍କତ ନାୟକ ଯେ । ବନଭୂବ । ହୋଇଛି ଅପୂର୍ବ ରମଣୀ । ବହିଛି ଏ ପଦକ ଅଣି । ହୃତ ସମସ୍ତ ଖେଦ ବହି ମନେ ପ୍ରମୋଦ କୃଷ୍ଣ ଲୀଳାରେ ପୁଣ୍ୟ ଧୁଣି ଯେ । ।୩।

ଜୟ ଶ୍ରୀ ପୌର୍ଣ୍ଣମାସୀ ଶ୍ରୀକୃଷ୍ଣଙ୍କର ସଂଯୋଗେ ଲୀଳା ପ୍ରକଟ ବିଧାୟିନୀ । ସାକ୍ଷାତ ଅଚିଶକ୍ତି ବ୍ରଜ-କୁଳ ଦେବତା ଶ୍ରୀମତୀ ଆନନ୍ଦ ଦାୟିନୀ ଗୋ । ଯୋଗମାୟା । ତୁମ୍ଭ ପାଦେ ମୋ ନମସ୍କାର । ମୋରେ କରୁଣା ଦେବୀ କର । ଏହୁ କୃଷ୍ଣବିଳାସ ବହିବାରେ ଉଲ୍ଲାସ ହେଉଛି ମାନସ ମୋହର ଗୋ ।୪।

ଏଥିଅନ୍ତରେ ପୁଣି ଶ୍ରୀରାଧା ଠାକୁରାଣୀ ପାଦ ପଦ୍ମ ତଳକୁ ଚୁଣି । ଏହି ସମୟ ଜାଣି ଚିତ୍ରା ଚିତ୍ରପଟକୁ ଦର୍ଶନ କରାଇଲା ଅଣି ଯେ । ଠାକୁରାଣୀ । ଦେଖିଲେ ଶ୍ରୀକୃଷ୍ଣ ମୂରତି । ଲୋଭିତ ହେଲା ନେତ୍ର ଅତି । ତହେଁ ଲଭି ଉତ୍ସୁକ ନ ପଡ଼ଇ ପଲକ ଅଶେଷ ଲାବଣ୍ୟ ସମ୍ପତ୍ତି ଯେ ।୫।

ତହିଁ ନୃଦେ ଭୂପତି ପୁଣ ପୁଣ ଗୃହାନ୍ତ ଶ୍ରୀକୃଷ୍ଣ ସୁନ୍ଦର ବଦନ । ବାହେଁ ଅଶ୍ରୁ ସାତ୍ତ୍ୱିକ ହତ ହୋଏ ବବେକ ପ୍ରହାରେ ହରତେ ମଦନ ଯେ । ସୁକୁମାରୀ । ଦେଖି ବଗୃରେ ସଙ୍ଗ ସଖୀ । ପଲଙ୍କ ଅଙ୍କେ ନେଇ ରଖି । ଏଯେ ନୃପତିସୁତା ହରଷରେ ଦୁଃଖିତା ଅମ୍ଭେ ଯେ ନ ପାଉବା ଦେଖି ଗୋ ।୬।

ତନ୍ଦ୍ରା ଅନ୍ତରଗତେ ଜାଣି ଚିଯାମ ଅନ୍ତେ ଦେଖିଲେ ଏମନ୍ତ ସ୍ୱପନ । ନୀଳେନ୍ଦୀ ବର କାନ୍ତି କୋଟି କନ୍ଦର୍ପ ମୂର୍ତ୍ତି ଅକଳଙ୍କ ଚନ୍ଦ୍ର ଲପନ ଯେ । ମନ୍ଦହାସ । ପ୍ରକାଶି ସନ୍ଧ୍ୟରେ ବସି । କହନ୍ତ ବଚନ ଅଶ୍ୱାସି । ଶ୍ରୀଅଙ୍ଗେ ଦେନ୍ତେ କର ନିଦ୍ରା ଭଙ୍ଗ ସତ୍ୱର ହୋଇ ଉଠିଲେ ମହାଳସୀ ଯେ । ।୭।

ଉଚ୍ଚେ କରେ ରୋଦନ ଅହା ମୋ ପ୍ରାଣ ଧନ କପାଇ ଗଲ ମୋତେ ଛାଡ଼ି । ସ୍ନେହ ଛନ୍ଦେ ଅମୃତ ଚଖାଇ ପୁଣି ଏବେ କ ଦୋଷେ ଗଲ ତୁମ୍ଭେ ଏଡ଼ି ହେ । ଶ୍ୟାମବନ୍ଧୁ । ତୁମ୍ଭରେ ନୃହଇ ମୁ ଦୋଷୀ । କେବଳ ସଙ୍ଗମାତ୍ରଲାଷୀ । ଯେଉଁଦିନ ତୁମ୍ଭର ପଦ ଦର୍ଶନ କଲ ଯେ ଦିନୁ ହୋଇ ଅଛୁ ଦାସୀହେ ।୮।

ଦେଖି ଏମନ୍ତ ରୀତି ମନରେ ଚିନ୍ତନ୍ତ ବସି ରଙ୍ଗଦେବୀ ସୁଦେବୀ । ପୁଣିହିଁ ଇନ୍ଦୁଲେଖା ତୁଙ୍ଗଭଦ୍ରା ଯେ ଏକାନ୍ତରେ କହିଣ ଏହା ସ୍ତବ ଯେ । ଏ ବଚନ । ବୋଲନ୍ତ ସଖୀ ଦଶା ଦେଖ । ଛାଡ଼ିଲାଣି ସମସ୍ତ ସୁଖ । ଚିତ୍ର ଦର୍ଶନେ ଏତେ ସବୁ

ସାକ୍ଷାତ ରୂପ ଦର୍ଶନେ କି ହେବ ନ ଲେଖ ଗୋ ।୯।

ଆଉ କି କୁଳବତୀ ବ୍ରତ ନ ଲର୍ଘି ରୂପବତୀ ରହିବ ଅସ୍ଥିରେ । ସଖୀ ଏ ଭାବ ଏଥିଅନ୍ତରେ ବୃନ୍ଦାଦେବୀ ଆସି ଚିନ୍ତିଲେ ପ୍ରଶ୍ନରେ ସେ । ଠାକୁରାଣୀ । ବୃନ୍ଦାକୁ ବସାଇ ପାଶର । କହନ୍ତି ଏମନ୍ତ ଉତ୍ତର । ଆଜ ରାତ୍ରି ସ୍ୱପନ ଦେଖିଲି ଶ୍ୟାମଘନ ଅତି ସୁନ୍ଦର ମନୋହର ଗୋ । ।୧୦।

ବୃନ୍ଦା କହନ୍ତି ପୁନଃ ସେହି ନନ୍ଦ ନନ୍ଦନ ଯାହା ମହିମା ଅଗୋଚର । ବାଳୁତ କାଳୁ କ୍ଷୀର ସଙ୍ଗେ ପୂତନା ପ୍ରାଣ ଶୋଷି ପେଷିଲେ ଯମ ପୁର ଗୋ । ଠାକୁରାଣୀ । ପୁଣି ଶକଟାସୁର ମାର । ତୃଣାବ୍ରତର ପ୍ରାଣ ହାର । ଏକ ଦିନେ ଶବରୀ କୋଳ ବଢିବା ଅର୍ଥେ ଆସି ମିଳିଲା ଗୋପ ପୁର ସେ । ।୧୧।

ଘରେ ଧାନ ଅଞ୍ଜୋଳ ଦେଇ ଶ୍ରୀକୃଷ୍ଣ ଚଳଯାଇ ଶବରୀ ପାଶେ ମିଳ । ରତ୍ନ ଧାନ ଅଞ୍ଜୋଳ ଦେନ୍ତେ ଶ୍ରୀକରେ ତୋଳ ନ ପୁରବାରୁ ମନେ ଭାଳ ସେ । ହଷାଦରେ । ପୁଣ ସେ ଗୃଙ୍ଗଭାକୁ ଗୃହେଁ । ପୁଣ ଶ୍ରୀକରକୁ ଅନାଏ । ଜାଣି ଶବରୀ ମନ କୃଷ୍ଣ କୃପା ଲୋଚନେ ଗୃହିଁନ୍ତେ ହେଲା ରତ୍ନମୟେ ସେ । ।୧୨।

ପୁଣି ଯହୁଁ ସୁନ୍ଦର ତ୍ରିପୁର ମଧ୍ୟେ ସାର କୋଟି କନ୍ଦର୍ପ ମୋହେ ସାର । ପୀତବସନ ଅଙ୍ଗେ ମୁରଲୀ ବାଏ ରଙ୍ଗେ ଚୂଳ ବାନ୍ଧିଣ ବକ୍ର କର ସେ । ଏ ଛଳକ । ଗୃହିଁ ଗୋକୁଳର ଯୁବତୀ । ଧଇର୍ଯ୍ୟ ଧର ନ ପାରନ୍ତି । କୁଳ ଶୀଳ ବେଭାର ସମସ୍ତ କର ଦୂର ତାପଙ୍ଗେ ବିହରନ୍ତି ଚନ୍ତି ଗୋ ।୧୩।

ଗୋପେ ହୋଇଛୁ ଖ୍ୟାତି ଚନ୍ଦ୍ରାବଳୀ ପୀରତି ବଢନ୍ତି ନନ୍ଦ

ସୁତ ସଙ୍ଗେ । ଅତି ହରଷେ ଲୀଳା ଭରତ ପ୍ରେମ ଶୀଳା ନନ୍ଦ-
ନ୍ତ ରାଜ୍ଜ ବିଜ ରଙ୍ଗେ ସେ । ଉତ୍ସବତେ । କହନ୍ତି ପୁଣି ଠକୁ-
ରାଣୀ । ତୁ ମୋର ପ୍ରାଣର ମିତଣୀ । କାହିଁ ମୋତେ ଚ୍ୟୁତ
କହୁଛୁ ତୋତେ ସତ୍ୟ ଶ୍ରୀକୃଷ୍ଣ ଭେଟାଇବୁ ଅଣି ଗୋ । ୧୪ ।

କହନ୍ତି ବୃନ୍ଦାବନ୍ତ ଶୁଣ ଦେବୀ ଶ୍ରୀମନ୍ତ ନଗର ମାନସରେ
ରନ୍ତା । ଏଥକୁ କାଦମ୍ବିଣୀ ବଦ୍ନମନ୍ତ ଅନ୍ତ୍ରନ୍ତ ସକ୍ଷି ବଧାନରେ
କରତା ସେ । ଅତି ତୋଷେ । ବୃନ୍ଦାବନ୍ତର ଧଇ କର ।
ନେଇଣ ଲଗାଇଲେ ଶିର । ନ ଦେଖିଲେ ଶ୍ରୀହରି ପ୍ରାଣ ନ
ପାରେ ଧରି କହୁଛୁ କଷ୍ଟେ ସତ୍ୟ ଗୀର ଗୋ । । ୧୫ ।

ଏକାଳେ ସଖୀ ମେଳ କହନ୍ତି ଏହା ଶୁଣ ଗୋ ପୌର୍ଣ୍ଣମାସୀ
ବାଣୀ ସତ୍ୟ । ପଦ ଦର୍ଶନ କାଳେ କହିଥିଲେ ମନ୍ତ୍ରୀଲେ ଏଠି
ତୁମ୍ଭର କଙ୍କ କାନ୍ତଗୋ । ପୁଣି ତହିଁ । ବିଶାଖା କହନ୍ତି
ଉତ୍ତର । ଏବେ ମୋହର ପେଳ ଗୀଇ । ଗୋପେଶ୍ୱରଙ୍କ
ଠାରେ ମୁନିମାନେ କହିଲେ ପୂର୍ଚ୍ଛିଣ ରାଇ ଦାମୋଦର ଗୋ
। ୧୬ ।

ଚନ୍ଦ୍ରା କହନ୍ତି ତହିଁ ଶୁଣ ସକଳ ସହ୍ମୀ ମୁଁ ଯେ କହଇ ପୂର୍ବ
କଥା । ସମସ୍ତ ନୃପସୁତ ମାନେ ମିଳଣ ଏଥ ରାଧା ବିବାହେ
କର ଚନ୍ତା ସେ । ଗୋପେଶ୍ୱର । ସ୍ତୁାନେ ସକଳ ରୁଣ୍ଡ
ହୋଇ । ପୁଣିହିଁ ଏବଚନ କହେ । ଯାହାର ଧ୍ୱଷ୍ଟ ଅପି ବୃଷର
ଶିରେ ହେବ ସେ କନ୍ୟା ବଶ୍ମ ହେବ ଯେହି ସେ । ୧୭ ।

ଏତେ ବଚ୍ଚଇ ଯେ ଯା ମତେ କୁସୁମ ଧରି ମହେଶ ଶିରେ
ଚଢ଼ାଇଲେ । ମସ୍ତକେ ଦେଇ କର ସର୍ବ ନୃପ କୁମର ଅନ୍ତର
ହୋଇ ଉଦ୍ଭବହେଲେ ସେ । ଏସମୟେ । ରଙ୍ଗତ ଚନ୍ଦ୍ର ନନ୍ଦୀ
ଯାର । ଅତିଶସ୍ତ ଶୀତଳ କର । ସମସ୍ତ ନୃପ କୁଳ ଗୀତେ

ହୋଇ ଅଚ୍ୟୁତ ବୋଲନ୍ତି ଭକ୍ତଙ୍କର ସଙ୍ଗେହେ । । ୧୮ ।

ଏକାନ୍ତ ଚେଷ୍ଟାକଲା ଅସେ ଭୋଳେ ଅନ୍ତରହୋଇ ସମସ୍ତେ ଦୃଷ୍ଟି ଘ୍ଲିଲ । ବୃକ୍ଷର ଶିରେ ଚନ୍ଦ୍ର ଅଙ୍କିଲେ ମୃଗମଦେ ଲିଖିତ ଏମନ୍ତ ଅକ୍ଷର ଯେ । ରାଧା କୃଷ୍ଣ । ନାମ ଯେ ହୋଇଛି ଲେଖାଇ । ସମସ୍ତେ ହୋଇ ସଚକିତ । ଗୋପବଧୂଙ୍କ ଆଜ୍ଞା ସେ କରବ ଅନ୍ତର୍ଜ୍ଞା ବୋଲି ଚଳିଲେ କୃପଯୁତ ଯେ । ୧୯ ।

ଶ୍ଳୋକଃ ।

ଶ୍ରୀକୃଷ୍ଣୋଽଧୀନ୍ତ ମଧୁରୋ ଗୋକୁଳେ ନନ୍ଦ ନନ୍ଦନ ।
ପୀତାମ୍ବରୋଽତି ଚତୁରୋ ଶ୍ରୀରାଧା ପ୍ରାଣବଲ୍ଲଭଃ ।୯।

ଗୀତଂ ।

ଚିନ୍ତା କରିବା ବାଣୀ ଶୁଣି ସବୁ ତରୁଣୀ ବୋଇଲେ ଏ କଥା ପ୍ରମାଣ । ଶଙ୍କର ହସ୍ତେ ରତ୍ନ ଥିଲେ ନୃପତିଙ୍କର ନୂତନ ଓ ଶିର ଭୂଷଣ ଯେ । ବନାନ୍ତରେ । ମକ୍ଷିକା ମଧୁ ସଞ୍ଚିଥାଇ । ଦେବେ ଓ ସେ ଭୋଗ୍ୟ ନୁହଇ । ସେହି ମତିରେ ଅଭିମନ୍ୟୁ ପୁରେ ଶ୍ରୀମତୀ ଅଛନ୍ତି କୃଷ୍ଣ ଭୋଗ୍ୟ ପାଇଁ ଗୋ । । ୨୦ ।

ସଖୀ ସକଳ ଚିନ୍ତା ଅମ୍ଭେ ଥାଉଁ ଶ୍ରୀମତୀ ଦୁଃଖ ଲଭିବା ଅନୁଚିତ । ତାଙ୍କ ପ୍ରଚେଶି ଦୁଃଖ ଲୀଗରେ ଚନ୍ଦ୍ରମୁଖୀ ବୋଲି-ଣ ପୁଛିଲେ ଏମନ୍ତ ଯେ । ଶୁଣି ରାଧା । ପାଇ ମଦନଶରେ ତାପ । ଚିତ୍ତରେ ଚିନ୍ତାଯେ ଅମାପ । ସଦ ଚିନ୍ତ ସ୍ୱପନ ଚିହ୍ନି ବୃନ୍ଦାବନ ଛବି ମୋହନ ଶ୍ୟାମ ରୂପ ଯେ । । ୨୧ ।

କୂଳ ଅଗ୍ରରେ ମୁହିଁ ରହି ନପାରେ ସଖୀ ଭ୍ରମରେ କହୁଛି ମୁଁ ସତ୍ୟ । ମୋର ମନ ବେଦନା କଲି ମୁହିଁ ଶୋଚନା ବକ୍ଷେ ଅମୃତେ ସନମତ ଗୋ । ପ୍ରିୟ ସଖୀ । ବୋଲନ୍ତି ନକର

ଚସ୍ୱର । ଯେ ତୁମ୍ଭ ଦୁଃଖେଷ୍ଟ ଅମ୍ଭର । ଦୂଷିଛ ରାଇ ଚନ୍ଦ୍ରଧନ
ବଚନ ଦେଲେ ବୃନ୍ଦ କୃଷ୍ଣଙ୍କ ସମାଗ୍ରର ଯେ । ।୧୨।

ଧାଇ ନାରୀ ଉଦ୍ୟାନ ନବ ସଖୀ ଯଉନ ଶ୍ରୀମତୀଙ୍କି ଯେଉନଣ
ସଙ୍ଗେ । ପ୍ରବେଶି ବୃନ୍ଦାବନେ ଅତି ଆନନ୍ଦମନେ ସୂର୍ଯ୍ୟ ପୂଜା
ସ୍ଥାନରେ ରଙ୍ଗେ ଯେ । ହର୍ଷମତେ । ପୂଜିଲେ ତୋଷେ
ଦିବାକରେ । ମାଗନ୍ତି ଶ୍ରୀକୃଷ୍ଣଙ୍କୁ ବର । ସତ୍ୱରେ ଚନ୍ଦ୍ରାମଣି
ପ୍ରବେଶ ହେଲା ଅଧେ ଶ୍ରୀମଣ୍ଡ ପ୍ରାଗରେନ୍ତ୍ର ହର ଯେ ।୧୩।

ଶ୍ରୀହରେ ଘେନି ମଣି ତୋଷେ ହଦନ୍ତି ଧାଗୀ ଯାଅ ବେଗେ
ଶ୍ରୀକୃଷ୍ଣ ପାଶ । ଯେବ୍ଧ ନନ୍ଦ ନନ୍ଦନ ମୋର ଜୀବ ଜୀବନ
ଦେଇ ମୋ ସନ୍ତାପ ବିନାଶ ଗୋ । ଏହା ଶୁଣି । ଶ୍ରୀହରୁ
ଚନ୍ଦ୍ରାମଣି ଯାଇ । ଶ୍ରୀଶ୍ୟାମକୁଣ୍ଡରେ ମିଳଇ । ସୂର୍ଯ୍ୟ ପୂଜାରୁ
ଧାଇ ସକଳ ସହଚରୀ ପୁରେ ପ୍ରବେଶ ହେଲେ ଯାଇ ଯେ ।୧୪।

ତଥା ବାଳକ ସଙ୍ଗେ ଘେନି ଶ୍ରୀକୃଷ୍ଣ ରଙ୍ଗେ ବୃନ୍ଦାବନେ
ପ୍ରବେଶ ହୋଇ । ପୁଣି ବଟୁ ସୁବଳ ସଙ୍ଗେ ଶ୍ରୀକୃଷ୍ଣ ମେଳ
ହୋଇ କେତେଦେହେଁ ଦୂରେ ଯାଇ ଯେ । ଅତି ତୋଷେ ।
ଉଠିଲେ ଗୋବର୍ଦ୍ଧନ ପରେ । ଦେଖିଲେ ଅତ୍ୟନ୍ତ ରମ୍ୟରେ ।
କୁଞ୍ଜ ମଣ୍ଡପ ପୁରୁ ପ୍ରାଙ୍ଗଣ ମନୋହର ହୋଇଛି ଅନେକ
ପ୍ରକାରେ ଯେ । ।୧୫।

ଗିରି ଶିଖରେ ଥାଇ ପୁଣି ଦେଖିଲେ ଅନାଇଁ ରାଧାକୁଣ୍ଡ ଅତି
ଶୋଭନ । ମନ ଆନନ୍ଦେ ଉଛୁଁ ଖେଳନ୍ତି ପାରେ ଉତ୍କ ଦେଖିଣ
ପାଞ୍ଚୁଆ ଯେପନ ଯେ । ଗହନରେ । ରାଧାକୁଣ୍ଡକୁ ନ
ଦେଖିଲେ । ପୁଣି ଥୋକାଏ ଦୂର ଗଲେ । ପଥେ ଅତ୍ରନ୍ତି
ରହି ଅତି ସୁନ୍ଦର ହୋଇ ଭୃଙ୍ଗି ମଳିକା ଦେଖିଲେ ଯେ ୧୬

ବଟୁ ତାଙ୍କୁ ପୁଚ୍ଛନ୍ତି ତୁମ୍ଭେ କାହା ହୋଇଛି କପାଇଁ ବନରେ

ବିହରି । କହନ୍ତି ଯେ ଚାରତା ଆମ୍ଭେ ପ୍ରଧାନ ସଖୀ ବୃନ୍ଦା ଦେବୀଙ୍କ ପରଗୃରୀ ଯେ । ଆମ୍ଭ ନାମ । ଅଟଇ ଭୃଙ୍ଗ-ମଲ୍ଲିକା । ଥାଉ ଏ ବନସ୍ତରେ ଏକା । ଭୋଳ ପଞ୍ଚ ଇନ୍ଦ୍ରନ ଦୁଇ ପୋଷୁ ଜୀବନ ଏ ଆମ୍ଭ କୁଳର ଜୀବକା ଯେ ।୨୭

ଶ୍ୟାମଘନ ମୂରତି ଗୃହିଁ ମୋହିତ ଅତି ହୋଇଣ ଯେଣି ବେନି ପାଣି । ବୋଲନ୍ତି ଏବଚନ ଆମ୍ଭ ଜୀବନ ଧନ୍ୟ ଦର୍ଶନ କଲୁ ବେଣୁପାଣି ଯେ । ଏତେ କହି । କୁସୁମମାଳା ସ୍ୱାଦୁ ଫଳ । ଦିଅନ୍ତେ ଧଇଲେ ସୁବଳ । ତହୁଁ ଗଲେ ବହନ କଣ୍ଠୀଭ ଲୋକନ କର ବୋଇଲେ ଅଦିମୂଳ ଯେ । ୨୮ ।

ପୂର୍ବରେ ପଥହୁଜି ଏ ବାଟରୁ ବାହୁଡ଼ି ଗଲାଣି ଏହା ଅକଟରେ । ଏବେ ଚକଟ ମୁଖ କର ଉଚାଇ ହୋଇ ଦେଖ ବସିଅଛୁ ବାଟରେ ଯେ । ଏତେ ଶୁଣି । ସଭୁରେ ଯେ ମଧୁମ-ଙ୍ଗଳେ । ଦେଲେ କମଳା ସ୍ୱାଦୁ ଫଳେ । ଦେବୀଙ୍କ ଅଜ୍ଞା ଅଛୁବେ ଲି କଣ୍ଠୀଜାଣି ପଥ କଢ଼ାଇ ଅଗେ ଚଳେଯେ ୨୯

ଏରୂପେ ବୃନ୍ଦାବନ ହୋଇଛୁ ଶୋଭିତନ ଦେଖି ଅନନ୍ଦ ଶ୍ୟାମଘନ । ନାନା ପକ୍ଷୀ କିସ୍ତନ ମଧୁପ ଘନ ଘନ ଧ୍ୱନି କରନ୍ତି ପୁନଃ ପୁନଃ ଯେ । ତରୁ ଲତା । ଗଣ ଫଳପୁଷ୍ପେ ଶୋଭନ । ମନ୍ଦ ମନ୍ଦ ବହେ ପବନ । ଅତି ଅନନ୍ଦେ ଲୀଳା କରନ୍ତି ହୋଇ ମେଳା ଖେଉଁ ଠାବରେ ମୃଗ ଗଣ ଯେ ।୩୦

କେଉଁଠାରେ ନକୁଳ ଶ୍ୱେତ ଧୂମ ମଞ୍ଜୁଳ ଲତା ଏ ଦୃଷ୍ଟି ବରଷନ୍ତି । ପୂର୍ଣ୍ଣ କଲେ ଶ୍ରବଣ ଉତ୍ସୁକେ ନାରୀଗଣ ମଙ୍ଗଳ ହୁଳହୁଳି ଦେନ୍ତି ଯେ । ଶୁକ ପାଢ଼ । ଭାଷନ୍ତି ଛନ୍ଦ ଗାନ୍ଧର୍ବେ । ଜୟ ଶ୍ରୀମତି ଶ୍ରୀରାଧିକେ । ଶୁଣି କୃଷ୍ଣ ଉତ୍ସୁକ ଅଙ୍ଗ ହୋଏ ପୁଲକ ମିଳିଲେ ଯାଇ କନ୍ୟା ପାଶେ ଯେ । ।୩୧।

ଏଣୁକାଳେ ବୃନ୍ଦା ଦେବୀ ମାନସେ ଏହା ଘେନ ଭ୍ରୂଭଙ୍ଗୀ ମିଳି- ବା ଦେଖିବେ । ଭଙ୍ଗିଗୋଟି ଏଠେ ଯେବେ ଅପିବ ନବଘନଶ୍ୟାମ ଦର୍ଶନ ମୋତେ ଦେବେ ସେ । ଏସମୟେ । ନାରୀ ଏ ପୁଷ୍ପ ତୋଳୁଥିଲେ । ଶ୍ରୀକୃଷ୍ଣ ସ୍ୱରୂପ ଦେଖିଲେ । ହୋଇ ଅତି ଲଜ୍ଜିତ ନୁଚିବା ପାଇଁ ଚତୁଲତା ଅନ୍ତର ହୋଇ ଗଲେ ସେ । ୩୨ ।

ଦେଖି ଶ୍ୟାମସୁନ୍ଦର କହନ୍ତି ଏ ଉତ୍ତର ଶୁଣ ମୋହର ପ୍ରାଣଦଣ୍ଡା । ଏ ଯେ ନବ ସୁନ୍ଦରୀ କି ଦୋଷ ମନେ ଧରି ନ ଦେଲେ ଅଉ ମୋତେ ଦେଖା ସେ । ଗଦଗଦେ । ବୋଲନ୍ତି କହ ବୁଝି ମୋତେ । କାହିଁ ଗଲେ ରମଣୀ ଯୂଥ । ଦେଖ ଅଚି ମଞ୍ଜୁଳ ଉର୍ଦ୍ଧ୍ୱେ ଯାଉଛି ଡାଳ ପୁଷ୍ପଟି ତୋଳୁ ଥିଲେ ଏଠେ ସେ । ୩୩ ।

ଧୁଣି ଧରେ ଏମନ୍ତ ଦେଖି ନାହିଁକି ମିତ ପାଲଟି ଯାହା ଅନାଇଲା । ତୁଳୁଗା ଶରାଶନେ କଟାକ୍ଷ ଶରପନ୍ତି ମୋ ଅଙ୍ଗେ ପ୍ରହାର ଗମେଲା ସେ । ପୁଣି ଦେଖ । ଏହି କ୍ଷଣଟି ଯାଇଛନ୍ତି । ଲତା ତନ୍ତୁ ଛୁଡି ଅଛନ୍ତି । ପଦ ତଳରେ ଅଛି କୁସୁମ ତୋଳୁ ତୋଳୁ କରରୁ ଅଙ୍ଗୁରୀ ପଡ଼ିଛି ହେ । ୩୪ ।

ଏହା କହି ବଗିର ଯାଇ କେତେଦୂର ଦେଖିଲେକ ରମଣୀ ଯାଉ । ଅଗ୍ରେ ଉଭା ହୋଇ ବୋଲନ୍ତି ପ୍ରାଣ ସଖି କିପାଇଁ ହୋଇଲ ଅନ୍ତର ଗୋ । ପ୍ରିୟ ସଖି । ନ ଦେଖି ତୁମ୍ଭଙ୍କୁ ମୁଁ ଦୁଃଖୀ । କାହିଁକି ଅଇଲ ଉପେକ୍ଷି । ତୁମ୍ଭ ଅନ୍ତର ଜାଣି ପ୍ରିୟ ସାୟକ ଆଣି ପ୍ରହାର କଲା ଲେଖି ଯୋଖି ଗୋ । ୩୫ ।

କୃଷ୍ଣ ଧରନ୍ତେ କର ବୃନ୍ଦା ଦେବୀ ଉତ୍ତର କହନ୍ତି ନ କର

ଏସନ । ତୁମ୍ଭ ସଙ୍ଗ ଯୋଗ୍ୟକୁ ଠାକୁରାଣୀ ଅଛନ୍ତି ଅମ୍ଭେ ଯେ କୋହୁଁ ସ୍ୱଜନ ହେ । ଶ୍ୟାମଘନ । ଦାସୀ ସଙ୍ଗ ନ କର ଇଚ୍ଛା । ମୁଁ ନୁହେ ତୁମ୍ଭ ସମକକ୍ଷ୍ୟା । ତୁମ୍ଭେ ରାଜ କୁମର ସେହୁ ରାଜ କୁମାରୀ ସଙ୍ଗେ ପୂରାଅ ମନୋବାଞ୍ଛା ହେ ।୩୬।

କୃଷ୍ଣ ଧୀରେ କହନ୍ତି ଶୁଣ ଅରେ ସୁଦନ୍ତି ତୁମ୍ଭେତ ଅପୂର୍ବ ସୁନ୍ଦରୀ । ତୁମ୍ଭ ଉପରେ ଠାକୁରାଣୀ ଅଟନ୍ତି ଯେହୁ କହ ତାଙ୍କ ଶୋଭା ବିସ୍ତାର ଗୋ । ବୃନ୍ଦା ଦେବୀ । ଶୁଣି ଗଦ୍ଗଦ ଚିତ୍ତ ହୋଇ । ଶୋଭା କହିବା ଅରମ୍ଭଇ । ଶ୍ରୀମତୀ ନାମ ଉଚ୍ଚାରନ୍ତେ ସକଳ ସଖୀ କର ଯୋଡିଲେ ଶିରେ ନେଇଁ ସେ ।୩୭

ଯାହା ହ୍ରସମା ସମା ନୁହନ୍ତି ରମା ଉମା ସେ ଶୋଭା ମୁଁ ବର୍ଣ୍ଣିବ କିସ । ଅକଳଙ୍କ ଶ୍ରୀମୁଖ ସମାନ ନୋହି ଚନ୍ଦ୍ର ଚରଣେ ଆସି ହେଲା ଦାସ ସେ । ଶ୍ରୀଅଙ୍ଗର । କାନ୍ତି ଲେଶକୁ ସମ ନୋହି । ସୁବର୍ଣ୍ଣ ହେଉଅଛୁ ଦହି । ନୀଳେନ୍ଦୀବର କୋକନଦ ନେତ୍ର କରକୁ ସମାନ ନୋହେ ଜଳେ ରହି ସେ ।୩୮।

କଟୀ ଗତି କେଶକୁ ସମ ନୋହି କେଶରୀ କରି ଚମରୀ ବନଗିରୀ । କଣ୍ଠ ସମାନ କମ୍ବୁ ନୋହି କର ସେ ଶମ୍ଭୁ ଦ୍ୱାରରେ ଯାଇ ଅନୁସରେ । ତିନ ପୁର । ମଧରେ ସେ ଯେ ଅଳଙ୍କାର । ବର୍ଣ୍ଣିବାକୁ କ ବା ମୋହର । ତୁମ୍ଭଙ୍କୁ ସେହୁ ତାଙ୍କୁ ତୁମ୍ଭେ ଦୁହେଁ ଦୁହିଙ୍କି ଘଟଣା କଲା ବେଦବର ସେ । ।୩୯।

ଶୁଣିବାରୁ ଅଜ୍ଞାନ ଏମନ୍ତେ ଶ୍ୟାମଘନ ବୃନ୍ଦା କରକୁ ଧର କହି । ଭେଟାଅ ନେଇ ମୋତେ ସେ ପ୍ରାଣେଶ୍ୱରୀ ପାଶେ ନୋହିଲେ ପ୍ରାଣ ନ ରହଇ ସେ । ବୃନ୍ଦା ଶୁଣି । କହନ୍ତି ଏମନ୍ତ ବଚନ ଅତୁର ନୁହନ୍ତେ ମୋହନ । କାଲି ଏହି ସ୍ଥଳରେ ସୂର୍ଯ୍ୟ ପୂଜା କାଳରେ ଭେଟିବ କିଶୋରୀରତନ ହେ ।

ବୃନ୍ଦା ବୋଇଲେ ବଟୁ ଶୁଣ ବଚନ ପଟୁ ଛୁଇଁ ଗୃହିଁ ଝରଣି ଶୁଣି । କେ ଦ୍ରବ ହୋଏ କହ ସେଢ଼ ମୋର ସନ୍ଦେହ ବୋଲି ଯେ ହୋଇଲାକ ଭୁକ ସେ । ବଟୁ କହେ । ଭୂମି ଛୁଇ କରକାଦ୍ରବ । ଅଗ୍ନି ଝରସେ ଘୃତ ଦ୍ରବ । ଚନ୍ଦ୍ର ଦର୍ଶନେ ଚନ୍ଦ୍ରକାନ୍ତ ଦ୍ରବଇ ବଂଶୀ ଧ୍ୱନି ଶୁଣି ପାଷାଣ ଦ୍ରବ ଗୋ ।୪୧।

ପୁଣ ସେଠାରୁ ଚଳ ଶ୍ୟାମକୁଣ୍ଡରେମିଳ ଦେଖିଲେ ଅତ୍ୟନ୍ତ ମଞ୍ଜୁଳ । ରାଧାକୁଣ୍ଡକୁ ଦେଖି ପୁଚ୍ଛିଲେ ପ୍ରଣାଳୀରେ ଗତାଗତ ହେଉଛି ଜଳ ସେ । ବଟୁ ଦେଖି । ବୋଇଲେ ବଚନ ଏମନ୍ତ । ଏଠାରେ ମିଳନ୍ତ ସାକ୍ଷାତ । ଭୂମ୍ଭ କହାର ଜାଣି ପଦ୍ମ ଅଳଗି ଯେନ ବନାଇଲାପରି ଶୋଭଇ ସେ । ୪୨ ।

ପୁଣି ଦେଖିଲେ ମଣି ପୁଷ୍ପ ମଣ୍ଡା ଉପରେ ଦିଶଇ ଅତ୍ୟନ୍ତ ସୁନ୍ଦର । ସଖୀରେ ଯାଇ ଧର କେଉଁ ଗଳାରେ ଲଗ୍ନ ହାରସେ ସେ ଶ୍ୟାମସୁନ୍ଦର ସେ । ବଟୁ ବୋଲେ । ମିଳିଲା ଜଉଭୁକ ମଣି । ଭଗବାନ୍ ଖେଳେ ଦେବ ପୁଣି । ବଟୁ ହାସ୍ୟ ବଚନ ଶୁଣି ପଦ୍ମଲୋଚନ ମନେ ହସନ୍ତିପୁଣି ପୁଣିସେ । ।୪୩।

ହେଳିକି ଅସ୍ତକାଳ ଯେବେ ବସା ଗୋପାଳ ପୁରେ ହୋଇଲେ ପରବେଶ । ଦେଖି ଯଶୋଦା ମାତ ମନେ ଅତି ଦୁଃଖିତ ହୋଇଣ କହନ୍ତି ଏମନ୍ତ ସେ । ଦୁଃଖଂଧନ । ବନରେ ନିରନ୍ତରେ ବୁଲୁ । ଘର ବୋଲିବା ନ ଜାଣିଲୁ । ମୃଦୁଳ କଳେବର ଦିଶୁଅଛୁ ଦୁର୍ବଳ ଏତେ କଷ୍ଟକୁ ଯୋଗ୍ୟ ହେଲୁ ରେ । ।୪୪।

ଶ୍ୟାମସୁନ୍ଦର ମୁଖ ଦର୍ଶନ କରି ସୁଖ ଲଭୁ ସେ ଥାଇ ଅନୁକ୍ଷଣେ । ଯେଣେ ଗୃହିଁଲେ ମୋତେ ସବୁ ଶୂନ୍ୟ ଦିଶଇ ନିରତେ ଥାଉ ମୋ ଚକ୍ଷଣେ ସେ । ଏତେ ବୋଲି ।

ଶ୍ରୀମୁଖରେ ଚୁମ୍ବନ ଦେଇ । କାଖ କରି ଧୁଅଙ୍କୁ ନେଇ । ଅତି ତୋଷେ ମାର୍ଜ୍ଜଣା ସାରି ଅନ୍ନ ଭୁଞ୍ଜାଇ ପଲଙ୍କେ ଶଯ୍ୟାରେ ସୁଆଇ ଯେ । ।୪୫।

କହ୍ରା କେତେକେ ନଅରେ ଶ୍ରୀମତୀ ରୂପ ଘୋଷେ ତହୁଁ ସୁବଳ ସଙ୍ଗେ ଘେନି । ଦୂତୀ ମନ୍ଦିରେ ଯାଇ ଶୀଘ୍ର ପ୍ରବେଶ ହୋଇ ବୋଇଲେ କେହି ପ୍ରାଣଧନୀ ଗୋ । ଦୂତୀ ଶୁଣି । କହଇ ମଧୁରରେ ବାଣୀ । ଅରତ ନନ୍ଦ ବେଣୁପାଣି । କାଲି ମୋତେ ଡକାଇ ତୁମୂଠାକୁ ପଠାଇ ଥିଲେ ମୁଁ ନ ଦେଖିଲି ପୁଣି ହେ ।
।୪୬।

କାଲି ପ୍ରଭାତୁ ଯାଇ ତୁମ୍ଭ ସଙ୍କେତ କହି ରାଧାଙ୍କୁ ଦୂର୍ପି ପୂଛା ସୁଦ୍ଧେ । ପ୍ରବେଶ କରାଇବ ତୁମ୍ଭଙ୍କୁ କହୁଛି ମୁଁ ଅଯେ ମଙ୍ଗଳ ଯେବେ କାଳେ ହେ । ଶାମସୁନ୍ଦ । ଶୁଣି ହରଷ ହୋଇ ମନ । ପୁରକୁ କଲେ ଯେ ଗମନ । ତହୁଁ ସୁବଳ ସଙ୍ଗେ ଶ୍ରୀମତୀଙ୍କ ପ୍ରସଙ୍ଗେ ପଲଙ୍କେ ହଲେକ ଶୟନ ଯେ । ।୪୭।

ଏମନ୍ତେ ନଶି ଶେଷ ଉଦେ ହେଲେ ଦିନେଶ ପଲଙ୍କୁ ଉଠି ପୀତବାସ । ନିତ୍ୟ ବିଧି ବଢାଇ ଯାଇ କଲେ ମଣୋହି ବଳ ଯିବାକୁ ହେଲେ ବେଶ ଯେ । ଏମନ୍ତେ । ନାନ୍ଦିମୁଖୀ ପ୍ରବେଶ ତହିଁ । ବଳରାମଙ୍କୁ ଏହା କହି । ନନ୍ଦ ବୃଦ୍ଧ ଅଶକ୍ତ ସମସ୍ତ ଗୃହ କୃତ୍ୟ ଆପଣ କରି ପୁରେ ରହି ଯେ । ୪୮ ।

ବଳରାମ ରହନ୍ତେ କୃଷ୍ଣ ଉତ୍ସୁକ ମତେ ବତ୍ସା ବାଳକ ଘେନି ସଙ୍ଗେ । ଯାଇ ଯମୁନାତଟେ ବଂଶୀବଟ ନିକଟେ ମୁରଲୀ ବଜାଇଲେ ରଙ୍ଗେ ଯେ । ଏମନ୍ତେ । ଶ୍ରୀମତୀ ନିତ୍ୟ ବିଧି ସାରି । ଘେନି ସକଳ ସହଚରୀ । ପୌର୍ଣ୍ଣିମୀ ଅନୁରାଧା ଶୁଭ ଯୋଗ ପ୍ରତିଷ୍ଠା ବନକରଣକୁ ବସ୍ତୁଇ ଯେ । ।୪୯।

ମିଥୁନ ଲଗ୍ନ ଉଦ୍ଧାର ବସନ୍ତ କାଳ ବଶ୍ୱର କହେ ଅନୁକୂଳ । ଏହି ସମୟେ ଦୂତୀ ପ୍ରବେଶ ହୋଇ କହେ ହୋଇବେ କୃଷ୍ଣ ନିଜ ମେଳ ଯେ । ଶୁଣି ତେବେ । ପ୍ରବେଶ ପୂର୍ବ ପୂଜା ସୁକଳେ । ସମସ୍ତ ସଖୀ କୁତୂହଳେ । ଏଣେ ଶ୍ରୀକୃଷ୍ଣ ଅତି ହୋଇ ଉତ୍ସୁକ ମତି କଦମ୍ବ ଉପରେ ଉଠିଲେ ଯେ । ୫୦ ।

ଦେଖି ବୋଲନ୍ତି ସଖା ଛାଡ଼ି ନ ଥିଲା ଦେଖା ସମୁଦ୍ର ଅସ୍ପଷ୍ଟ ଘୋଟି । ଗମନ ତରଙ୍ଗରେ ଛନ୍ଦ ଫେନ ରଙ୍ଗରେ ହୁଳହୁଳ ଗର୍ଜନ ଉଠି ଯେ । ବଟୁ ବୋଲେ । ଏ କୋହେ ଅନ୍ୟ ନାରୀ ପର । ସମ୍ମୁଖେ ଯେବେ ରହି ପାର । ସୁଖେ ଲୀଳାକୁ ରକ୍ଷି କୋହିଲେ ଏଥୁ ଘୃଷ୍ଟି ପଳାଇଯିବା ନିଜ ପୁର ହେ । । ୫୧ ।

ଏକାଳେ ଦୂତୀ ଯାଇ ଶ୍ରୀକୃଷ୍ଣଙ୍କୁ କହଇ ରାଧା ପ୍ରବେଶ ହେଲେ ଆସି । ଶୁଣି ବୃଷ୍ଣି ବଚନ କହନ୍ତି ଯେ ମୋହନ ମିଳାଅ ବେଗେ ମହାଲସୀ ଗୋ । ଶୁଣି ଦୂତୀ । ପ୍ରବେଶ ଶ୍ରୀମତୀଙ୍କ ପାଶେ । କହଇ ବଚନ ହସ୍ୟାସେ । ଯେ ଯେ ନବ ମୋହନ ଅଛନ୍ତି ବୃନ୍ଦାବନ ତୁମ୍ଭର ଦର୍ଶନ ଲାଳସେ ଗୋ ।୫୨।

ଶୁଣି ଦୂତୀ ବଚନ ଶ୍ରୀମତୀ ତୋଷମନ ନାକ କହନ୍ତି ଭୂଲସୀକୁ । ମାଳ ଚନ୍ଦନ ପାନ ଦେନ ଅତି ବନ୍ଦନ ଦିଅ ତୁ ନବ ମୋହନଙ୍କୁ ଗୋ । ଦେନ ବେଗେ । ଶ୍ରୀକୃଷ୍ଣ ପାଶେ ଗଲା ଚଳ । ଦେଖି ସନ୍ତୋଷ ବନମାଳୀ । ଉରେ ଲମ୍ବାଇ ମାଳ ଶୀଘ୍ରେ ଭୁଞ୍ଜି ତାମ୍ବୁଳ ଶ୍ରୀଅଙ୍ଗେ ଚନ୍ଦନକୁ ବୋଳ ସେ ।
। ୫୩ ।

କେତକୀ ଦଳ ଧର ନଖ ଲେଖନ କର ଲେଖନ୍ତି ମଞ୍ଜୁଳ ବାଣୀକ । ମଙ୍ଗ କୋହିଲେ ତୋର ଅରେ ରସିକାବର ଜୀବନ

ନ ରହେ ଏଣିକି ରେ । ପ୍ରାଣ ସଖି ! । ହେଲିମୁଁ ଘୋର ଝଣା ଦାଯ । ନ କର ମୋଠାରେ ନିରାଶ । ଅଧରାମୃତ ଦେଇ ଜୀବ ରଖରେ ପଡ଼ି ପୁରାଅ ମୋର ପ୍ରତି ଅଙ୍ଗରେ ।୫୪।

ଲିଖି ଏମନ୍ତ ଗୀତ ଦେଲେ ତୁଳସୀ କର ଯେନ ଯେ ଶୀଘ୍ରେ ଚଳିଗଲା । ମିଳି ଶ୍ରୀମନ୍ତ ପାଶେ ମନେ ଅତି ଉଲ୍ଲାସେ ଲେଖ ଶ୍ରୀକରେ ନେଇ ଦେଲା ଯେ । ଉରେ ଶିରେ । ଲଗାଇ ହୋଇଲେ ଅନନ୍ଦ । ପଢ଼ିଲେ ରାଗ ପୂର୍ଣ୍ଣ ପଦ । ମାନସେ ଯେନ ଧନ୍ୟ ପଢ଼ନ୍ତି ପୁଣ ପୁଣି ଲଭି ଅତିଶୟ ପ୍ରମୋଦ ଯେ । ।୫୫।

ତୁଙ୍ଗବିଦ୍ୟାକୁ ରାଇ ଅଣି ପାଶେ ବସାଇ କହନ୍ତି ମଧୁର ବଚନ । କରୁଣାନିଧି ପାଶେ ଲେଖ ଲେଖ ସୁରସେ ଅପି ଦିଅନ୍ତୁ ଦରଶନ ଗୋ । ଶୁଣି ସଖୀ । ହରଷେ ଲେଖିଲେ ଲେଖକୁ । ପ୍ରଥମେ ବନ୍ଦି ଶ୍ରୀପାଦକୁ । ନବଘନ ମୂରତି ତୁମ୍ଭେ ମୋହର ଗତି ବୋଲି ମୁଁ ଯେନିଛୁ ମନକୁ ।୫୬।

ଅହେ ତମାଳ ତନୁ ପାଯୋର ନୃହ ମନୁ ସ୍ୱପ୍ନ ଦର୍ଶନ ଦେନୁ ମୋର । ଏବେ ଯେମନ୍ତ ସୁନ୍ଦର ରୂପ ଦର୍ଶନ ଦେଇ ଚିର ସନ୍ତାପ ମୋର ହର ହେ । ଶ୍ୟାମଚନ୍ଦ୍ର । ତୁମ୍ଭେ ଗୋକୁଳ ସୁଧାକର । ଏ ମୋର ନୟନ ଚକୋର । ହାସ ସୁଧା ବରଷି ମନ୍ଦ ମଧୁର ଭାଷି ମଦନ ତାପୁଁ ପାନ୍ତ କର ହେ ।୫୭।

ଲେଖିଲା ଏ ରାଗରେ ଉଚ୍ଚା ହୋଇ ପାଶରେ ପଢ଼ିଲା ରସ ଗର୍ଭ ବାଣୀ । ଶୁଣି ମାନସେ ଯେନ ଅତି ଅନନ୍ଦେ ଧନ୍ୟ ପ୍ରଶଂସା କଲେ ପୁଣ ପୁଣି ଯେ । ହରଷରେ । ଚନ୍ଦନ ମୁଦ ଭର୍ତ୍ତି ଦେଲେ । ବୃନ୍ଦା ହସ୍ତରେ ସମର୍ପିଲେ । ହରଷେ ଗଲେ ଚଳ କଦମ୍ବ ତଳେ ମିଳ ଶ୍ରୀବନମାଳୀ କରେ ଦେଲେ ଯେ ।

କରେ ଧନୁ ଅଧରେ ମୃଦୁ ହସି ମୋହନେ ଚଳିଲେ ଚାରୁ ଗୋଚାରଣ । ମନେ ଅତି ଉତ୍ସୁକ ହୋଇ ଅଶ୍ରୁ ପୁଲକ ଗଦ୍ଗଦେ କହିଲେ ଏମନ୍ତ ଯେ । ବେଗେ ଯାଅ । ପ୍ରାଣେଶ୍ୱରୀଙ୍କି ଘେନ ଆସ । ଯେବେ ମୋହରେ ଥିବ ଆଶ । କଳମ୍ବକଳେ ପଡ଼ି ମରୁଅଛି ମୁହିଁ ମଦନ ଛଟପଟ ବାଣ ରେ । ୫୯ ।

ଶ୍ରୀକୃଷ୍ଣଙ୍କ ଉତ୍ତର ଶୁଣି ବୃନ୍ଦା ସତ୍ୱର ଯାଇ ମିଳିଲା ରାଧା ପାଶ । କହିଛନ୍ତି ଶ୍ରୀହରି ବେଗେ ଶ୍ରୀମତୀ ଯିବ ମୋ ପାଶେ ହୋଇବ ପ୍ରବେଶ ଗୋ । ଚାଲ ଯିବା । ବ୍ରଜ ମୋହନଙ୍କୁ ଦେଖିବା । ସକଳ ଦୁଃଖ ଉପେକ୍ଷିବା । କୃଷ୍ଣ ସଙ୍ଗରେ ମିଳି କୁଞ୍ଜରେ ରଙ୍ଗେ କେଳି କରି ସୁଖରେ ରହିବା ଗୋ ।୬୦।

ଶୁଣି ଶ୍ରୀମତୀ ତୋଷେ ଧୃଷ୍ଟଚାଳିତା ଅଶେଷ ବୃନ୍ଦାସଙ୍ଗତେ ବନେ ଚଳି । ମୁଁ ଯେ ନାହ ପ୍ରତି ଯେ ତ ରସିକ ଅତି ବ ଅଚଳିତ ମନେ ହସି ସେ । ଏସମୟେ । ଯାଉ ଶାମକୁଣ୍ଡ ଦେଖିଲେ । ଶ୍ରୀକୃଷ୍ଣ ରୂପ ସମ ବୋଲେ । ଶ୍ରୀଙ୍କରେ ଜଳ ଧରି ମୁଣ୍ଡ ଉପରେ ସିଞ୍ଚି ତହୁଁ କେତେବେଳେ ଦୂର ଚଳେ ସେ ।୬୧।

ଦେଖିଲେ ଶ୍ରୀକୃଷ୍ଣଙ୍କୁ ବର୍ତ୍ତଦଳେ ମନକୁ କଟା ନବଘନ ଗୁଁଦ ଏ । ବହୁଁଏତ ପ୍ରକାଶିତ ବକ ପନ୍ତି ରାଜିତ ଇନ୍ଦ୍ର କୋଦଣ୍ଡ ଶୋଭାମୟେ ସେ । ବୃନ୍ଦା ଶୁଣି । କହନ୍ତି ଏମନ୍ତ ଉତ୍ତର । ତଡ଼ିତ କୋଦେ ପୀତାମ୍ବର । ଇନ୍ଦ୍ରଧନୁ ନୁହଇ ମୁକୁଟ ଯାକ ଯେହି ବକ ପନ୍ତି ନୁହଇ ହାର ରେ ।୬୨।

ଶୁଣି ବୋଲନ୍ତି ମିତ ପର୍ବତ ଏ ସାକ୍ଷାତ ବର୍ପା ଛବିଂଧ ମୋତେ କେଉଁ । ଦେଖ ତମାଳତରୁ ଶିଖି ଶିଖେ ଉଦୟ ଶ୍ୱେତ ପୁଷ୍ପ ପ୍ରକାଶ ଯନ୍ତୁ ସେ । ବୃନ୍ଦା ଶୁଣି । ବୋଲନ୍ତି ନୁହଇ ଏମନ୍ତ । ତମାଳ କୋଦେ ଅଙ୍ଗ କାନ୍ତି । ଶିଖି ନୁହଇ

ଶୀରେ ଚନ୍ଦ୍ରିକାଚୂଳ ଶୋଭ୍ର ପୁଷ୍ପ ନୋହେ ହାସ ଶୋଭିତ ରେ ।୬୩।

ପୁଣି ବୋଲନ୍ତି ଦେଖି ଉପାଇଁ ପ୍ରାଣପତି କାଳିନ୍ଦିରେ ପ୍ରବେଶ କରୁ । ଦେଖ ନୀଳେନ୍ଦୀବର କୋକନଦ ସୁନ୍ଦର ପଦ୍ମ ବିକାଶ ଅଛି ଶୁଣୁ ଯେ । ବୃନ୍ଦା ଶୁଣି । କହନ୍ତି ଯେଉଁ ମୋ ବଚନ । ନୀଳେନ୍ଦୀ ନୁହଇ ନୟନ । କୋକନଦ ନୁହଇ କର ପଲ୍ଲବ ଶୋଭ୍ର ପଦ୍ମ ନୋହେ ମୁଖ ଶୋଭନ ରେ । ।୬୪।

ବୃନ୍ଦା କହନ୍ତି ହସି ଉପାରେ ମନ୍ଦାକିନୀ ତୁ ଯେ ହୋଇଲୁ ଭ୍ରମ ମନ । ଘନ ବା ଗରବତ କାଳନ୍ଦୀ ଯାଇ ବୋଲୁ ଏ ସାକ୍ଷାତେ ନନ୍ଦ ନନ୍ଦନରେ । ପ୍ରିୟସଖି ! । ଏମନ୍ତେ କେତେ ଦୂର ଗଲେ । ଶ୍ରୀକୃଷ୍ଣ ପାଶରେ ମିଳିଲେ । ଶ୍ଲୁମ୍ନରେ ଉଷ୍ମ ହୋଇ ଶ୍ରୀମତୀ ଲଜ୍ଜାବନ୍ତି ବଦନ ଲୁଚାଇ ରହିଲେ ଯେ ।୬୫।

ଶ୍ରୀକୃଷ୍ଣ ନଖ ପନ୍ତି ଗଣେ ଶ୍ରୀମତୀ ଛେଇଁତି ଦେଖିଲେ ହୋଇଛୁ ପ୍ରକାଶ । ଝଙ୍କେଲେ ମାନଯେ ନାରୀଗଣ ବିଶେଷ ଦେଖି ଅଛନ୍ତି କୃଷ୍ଣ ଦାସ ସେ । ଭିତରେ । ମନରେ ଏ କଥାକୁ ପାଞ୍ଚି । ପୁଣି ଅଳପ ପଛ ଘୁଞ୍ଚି । ଶ୍ରୀକୃଷ୍ଣ ଦେଖି ଛୀବ ନେଲା ମୋ ପ୍ରାଣଧଣୀ ବୋଲି ଆଲିଙ୍ଗନ କରନ୍ତି ଯେ ।୬୬।

ଏମନ୍ତ ଦେଖି ବୃନ୍ଦା କହନ୍ତି ଅହେ ବୃନ୍ଦାବନଚନ୍ଦ୍ର ମୋ ବାଣୀ କର । ଗାନ୍ଧର୍ବ ବିଧି ଅନ୍ତେ ଏ ନବ ନାଗରୀକ ଯେଉଁ ସ୍ପର୍ଶେ କୁଞ୍ଜେ ବିହାର ହେ । ଏତେବୋଲି । ପୁଷ୍ପ ମାଳା ଅଣି ସତ୍ତୁରେ ଦେଲା ଶ୍ରୀମତୀଙ୍କ ଗ୍ରୀବରେ । ଶ୍ରୀକୃଷ୍ଣ ଗଳେ ମାଳା ଦେଲେ ନବୀନ ବାଳା କୁଞ୍ଜେ ପ୍ରବେଶ ଏ ଉତ୍ସବରେ ଯେ । ।୬୭।

ତହୁଁ ଅନେକ ଲୀଳା କଲେକ ପ୍ରେମଶୀଳା ସଙ୍ଗେ ମୋହନ ନାନାରଙ୍ଗେ । ଯେତ ରଚିବା ସାର ଏସେ ନବନାଗର ବୃତ୍ତି ଅତି ସରସ ରଙ୍ଗେ ଯେ । ଲୀଳା ଅନ୍ତେ । ପୁଣି କୁଞ୍ଜରୁ ବଛେ କଲେ । ଜଳକ୍ରୀଡାକୁ ଆରମ୍ଭିଲେ । ଏକାଳେ ସଂସଖୀ ହୋଇ ଚରମସଖୀ ସଙ୍ଗରେ ଅଭିଷ ମିଳଲେ ଯେ ।୬୮।

ଶ୍ୟାମକୁଣ୍ଡରେ ରଙ୍ଗେ ସକଳ ସଖୀଙ୍କ ଶ୍ରୀକୃଷ୍ଣହୋଇଲେ ପ୍ରବେଶ । ଲୀଳା କରନ୍ତ ସୁଖେ କେହୁ ଶ୍ରୀକୃଷ୍ଣ ମୁଖେ ଜଳ ସିଞ୍ଚଇ ହୋଇ ତୋଷ ଯେ । ସଖୀଗଣ । ସମସ୍ତେ ଏକମେଳ ହୋଇ । ଛଳ ଯତନ କରେ ବନ୍ଧି । ଅତି ଉତ୍ସୁକ ବାମା ହୋଇ ମଦନ ଦୃସା ମାରନ୍ତ ଶ୍ୟାମକୁ ତୁହାଇ ଯେ ।୬୯।

ତହୁଁ କେଉଁ ଅବଳା ମଦନେ ହୋଇ ଭୋଳା ବଦନେ ଦିଅଇ ଚୁମ୍ବନ । କେହ୍ନେ କାମ ଅବଶେ ମନ ଅତି ଉଲ୍ଲାସେ ଯାଇ କରଇ ଆଲିଙ୍ଗନ ଯେ । ଏଥନ୍ତେ । ଅତିହିଁ ପ୍ରବଳ ଚାତୁରୀ । ଲାଗି ଶ୍ରୀକୃଷ୍ଣ ଅପସରି । କଦମ୍ବ ମୂଳେ ଉଭା ବଂଶୀ ବାଦନେ ଯେଣୁ ଦେଖି ସୁବଲ କୃଷ୍ଣାଦରୀ ଯେ ।୭୦।

ସନ୍ତ୍ର କରୁ ପକାଇ ଜଳ ବାହାର ହୋଇ ମିଳଲେ ଶ୍ରୀକୃଷ୍ଣ ପାଶରେ । ମାନସେ ହୋଇ ତୋଷ ପିନ୍ଧି ସୁ ଚିନ୍ତ୍ର ବାସ ଯାଇ ମାଧବୀ ମଣ୍ଡପରେ ଯେ । ଅତି ତୋଷ । ପଶା ଖେଳକୁ ଆରମ୍ଭିଲେ । ବଂଶୀ ହାର ହେଉ ଚଣ୍ଡିଲେ । ଖେଳ ଶ୍ରୀକୃଷ୍ଣ ରାଧା ବନ୍ଧି ତହିଁ ସରଥା ଏଥନ୍ତେ ଶ୍ରୀମତୀ ଜିଣିଲେ ଯେ । ।୭୧।

ବଂଶୀ କରୁ ଛଡାଇ ବୃନ୍ଦା ଯତ୍ନେ ରଖାଇ ବୋଇଲେ ଏଥର କହର । କୃଷ୍ଣ କହନ୍ତ ହସି ଶୁଣ ପ୍ରାଣ ପ୍ରେୟସୀ ଅଙ୍ଗେ ମୋ ଯେତେ ଅଳଙ୍କାର ଯେ । ଶୁଣି ସଖୀ । ହରଷେ

ପୁଣି ପାଡ଼ି ଦାନ । ଜିଣିଲେ ଶ୍ରୀମନ୍ତ ବଦନ । ଦେଖି ସଖୀ-
ଏ ଅତି ହୋଇ ଉତ୍ସୁକ ମତି କାହ୍ନୁ ଅଙ୍ଗ ଆଭରଣରେ ୬୨

ପୁଣି ଉତ୍ସୁକମତି ହୋଇ ବେ ନାଶା ମୋତି ନେବା ଲକ୍ଷି ଚଞ୍ଚଳେ କର । ତାଙ୍କୁ ଶ୍ରୀମନ୍ତ ଗୃହି ବୋଲନ୍ତି ଅଚେତନା କେଉଁ ବଳିଲା ମତି ତୋର ଗୋ । ପ୍ରିୟସଖୀ । ଶ୍ରୀଅଙ୍ଗ ଅଶେଷାଙ୍ଗ ଦିଶିତ । ଦିଅ ଏ ଅଳଙ୍କାର ସବୁ । ଶୁଣି ହସନ୍ତି ସଖୀ ତୁମ୍ଭେ ଏଥିକୁ ସାକ୍ଷୀ ଅମୃତ ହୋଇ ଅଙ୍ଗେ ଥିବ ଗୋ
। ୬୩ ।

ବୃନ୍ଦାଦେବୀ ଏ ଅନେ କୃଷ୍ଣ ସ୍ନେହଜନ ଅର୍ଥେ ନାନା ସ୍ୱାଦୁ ଦ୍ରବ୍ୟକୁ ଆଣି । ରଖିଲେ ତୋଷେ ଅତି ଶ୍ରୀମନ୍ତ ପରସନ୍ତି ସୁଖେ ସଖୀଙ୍କି ଚେଣାଗାଣି ସେ । କଲେ ପୂର୍ଣ୍ଣ । ତଦନ୍ତେ ତାମ୍ବୁଳ ସଖୀଙ୍କି । ସଖୀମାନଙ୍କ ଶ୍ରୀମନ୍ତ ତହୁଁ ! କୃଷ୍ଣସଖୀଙ୍କି ଅବଶେଷ ପଦାର୍ଥମାନ ବାଣ୍ଟି ଭୁଞ୍ଜନ୍ତି ତୋଷ ହୋଇ ସେ ।୬୪।

ଅତି ଆନନ୍ଦେ ତହିଁ ମାଳତୀ କୁଞ୍ଜେ ମିଳି ଚଉଟ କ୍ରୀଡ଼ା କରନ୍ତି । କୃଷ୍ଣ ମଧୁର ବାଣୀ ସ୍ନେହେ କହନ୍ତି ପୁଣି ତୁମେ ମୋର ପ୍ରାଣରୁ ଅଧିକ ଗୋ । ପ୍ରିୟସଖି ! । ମୋ ଠାରେ ନ କର ହେଳା । ତୁ ମୋ ହୃଦୟ ଚନ୍ଦ୍ରମାଳା । କେଳି ଲାଳସୀ ମଦାଳସୀ କୁଟିଳକେଶୀ ମଧୁରଭାଷୀ ପ୍ରେମ ରାଶି ରେ ।୬୫।

ଶୁଣି ଶ୍ରୀମନ୍ତ ଅତି ହୋଇ ହରଷ ମତି ସ୍ନେହରେ ଏମନ୍ତ କହନ୍ତି । ଛାଡ଼ିଲି କୁଳଶୀଳ ଲଜ୍ଜା ଆଜି ସକଳ ତୁମ୍ଭ ଚରଣେ ଦେଇ ମତି ହେ । ନନ୍ଦ ସୁତ । ଦେଖି ହରଇ ସବୁ ଦୁଃଖ । ଏଥୁ ମୋ ଅଛି କେଉଁ ସୁଖ । ମୁଁ କହୁଛି ଏତିକି ସେନ ମୋ ହୃଦଟିକ ଚରଣେ ଦାସୀ ପଦ ରଖ ହେ । । ୬୬ ।

ଦୁହେଁ ଦୁହିଙ୍କ ବାଣୀ ଶୁଣି ହରଷେ ପୁଣି କୁଞ୍ଜରୁ ହୋଇ-

ଲେ ତାହାକୁ । ଛାଡ଼ିଲା ପ୍ରବେଶିଲା ବୋଲି ଉଦରରେ କଳା
କ୍ଷୋଭୀ ପବନ ପ୍ରଚୁର ସେ । ଏହା ଶୁଣି । ବନ୍ଦୀମନ୍ତ୍ରୀଗରୂରେ
ଯାଇ । ଛାଡ଼ିଲା ଅଗେ ଉଷ୍ମ ହୋଇ । ଏହି ସମସ୍ତ ହେଉଛି
ରାଧା ଅନମାର୍ଗରେ ପୁରେ ପ୍ରବେଶ ହେଲା ଯାଇ ସେ ।୭୭।

ହେବାରୁ ସନ୍ଧ୍ୟା କାଳ ବୟା ବାଳକ ମେଳ ଘେନ ପ୍ରବେଶ
କୃଷ୍ଣ ପୁରେ । ଦେଖି ପୁତ୍ରଙ୍କୁ ଅତି ଆନନ୍ଦେ ଯଶୋବତୀ ଚୁମ୍ବନ
ଦେଇ ଶ୍ରୀମୁଖରେ ସେ । ହରଷରେ । ସ୍ନାନ ଭୋଜନ କରା-
ଇଲେ । ପଲଙ୍କେ ନେଇ ସୁଆଇଲେ । ସୁଖେ କଲେ ଶୟନ
ନନ୍ଦ ପଦ୍ମ ନୟନ କ୍ରମରେ ତହୁଁ ଅସ୍ତ ହେଲେ ସେ ।୭୮।

ପ୍ରଭାତରୁ ବହନ ଉଠି ସେ ଶ୍ୟାମଘନ ଯତ୍ନରେ କରିବା ବର୍ଷ
ଯାଇ । ପୁଣି ମନୋହର ଅନନ୍ତ ବଳରାମ ସଙ୍ଗରେ ବୟା
ବାଳକ ମେଳ କରି ସେ । ବଛେ କଲେ । ସଙ୍ଗରେ ଶ୍ରୀବୃନ୍ଦା-
ବନକୁ । ଯାଇ ବେଢ଼ିଲେ ମନକୁ । ବୟା ବାଳଙ୍କ ଗୋହ
ଦେଖିଲେ ବଳରାମ ପୁଚ୍ଛିଲେ ସଧୀରେ କୃଷ୍ଣଙ୍କୁ ସେ ।୭୯।

ବଳରାମଙ୍କ ଗିର ଶୁଣି ସେ ଦାମୋଦର ସଧୀରେ କହିଲେ
ଏମନ୍ତ । ବ୍ରହ୍ମା ବୟା ହରିଲା ମୋତେ ସେ ଜଣାଗଲା ମୋ
ଦେହରୁ କରନ୍ତୁ ତ୍ରାତ ସେ । ବଳରାମ । ଶୁଣି ଅତି ସନ୍ତୋଷ
ହେଲେ । ସୁଖେ ବନରେ ବହୁଥିଲେ । ଏମନ୍ତ ସମୟରେ
ବ୍ରହ୍ମା ଆକାଶେ ରହି ଶ୍ରୀକୃଷ୍ଣ ଲୀଳାକୁ ଦେଖିଲେ ସେ ।୮୦।

ତାହାରେ ଶ୍ରେଷ୍ଠ ମୂର୍ତ୍ତି ବଳରେ କଥନ୍ତି ବାଳକେ ଦେବ
ରୂପ ଧରି । ସେବନ୍ତି ଚଉପାଶେ ଅତି ମନ ହରଷେ କୀର୍ତ୍ତି
କରନ୍ତି ବେଣୁ ଧାରୀ ସେ । ଗର୍ବ ହତ । ହୋଇ ହୋଇଲା
ମୋହଗତ । ପୁଣି ସେ ହୋଇଲା ସଚେତ । ବାଳଙ୍କ ଧରି
ବାଳେ ବୟାଙ୍କୁ ଘେନି ଚରାଉଛନ୍ତି ଦେଖିଲା ଏକାନ୍ତେ ସେ ।୮୧।

ପାଶେ ପ୍ରବେଶ ହୋଇ ସ୍ତୁତିକି ପ୍ରକାଶନ୍ତି ନିରନ୍ତରେ ଦେଇ ବେନି କର । ଅନାଥ ଜନ ବନ୍ଧୁ ତୁମ୍ଭେ କରୁଣାନିଧି ତୁମ୍ଭ ମହିମା ଅଗୋଚର ହେ । କୃପାନିଧି । ନ ଧର ଚିତ୍ତରେ ମୋ ଦୋଷ । ପଦଦ୍ୱନ୍ଦ୍ୱ ପୀତବାସ । ଏମନ୍ତ ସ୍ତୁତି ଭଣି ବତ୍ସା ବାଳକ ଅଣି ସ୍ୱମୂର୍ତ୍ତିରେ କଲାକି ପ୍ରବେଶ ଯେ । ।୮୨।

କୃଷ୍ଣ ପୁଣି ଉତ୍ତର କହନ୍ତି ହେଦବର ତୁମ୍ଭେ କହୁହିଁ ନ ବଗୃର । ଅମ୍ଭ ଲୀଳା ବର୍ଦ୍ଧନେ କଲ ବତ୍ସା ହରଣ ଏବେହେ ଯାଅ ନିଜପୁର ଯେ । ବେଦବର । ନିଜ ପୁରକୁ ଚଳେ ଚଳ । ଅନ୍ତର୍ହେଲେ କରଣ-ମାଳ । ରାମକୃଷ୍ଣ ଏକାଳେ ବତ୍ସା ବାଳକ ମେଳେ ନନ୍ଦ ପୁରରେ ଯାଇ ମିଳନ୍ତେ । ।୮୩।

ଯେ ବୃନ୍ଦାବନ ଭୂମି ଅନେକବାର ଭ୍ରମି ଯମୁନାକୂଳେ କର ସ୍ନାନ । କୁଞ୍ଜ କୁଞ୍ଜ ପଣ୍ଡିତ ସାଧୁଙ୍କୁ ଦଣ୍ଡବତ କରି ହୋଇଲା ସଦଜ୍ଞାନ ଯେ । ବନେଶ୍ୱର । ପଣ୍ଡିତ ଗୋସ୍ୱାମୀ ଅଣ୍ଡିତ । ତାହାଙ୍କ କୃପାରୁ ରଚିତ । କୃଷ୍ଣଲୀଳା ଚତୁର୍ଥ ପ୍ରକାଶ ଜଗନ୍ନାଥ ନାରାୟଣ ଦେବ କଥିତ ଯେ । ।୮୪।

---

## ପଞ୍ଚମ ପ୍ରକାଶ ।

—•○•—

### ରାଗ ଶ୍ରୀ ।

ଜୟକୃଷ୍ଣ କୃପାସିନ୍ଧୁ ଅଗତି ଜନଙ୍କ ବନ୍ଧୁ । ଦୁଃଖୀଜନଙ୍କ ଯୋଦର କୃପା କଟାକ୍ଷ । ବ୍ରହ୍ମାଦି ଶେଷ ଶଙ୍କର ମହିମା ନଜାଣେ ଯାର ମୁ ଅଟା କେତେମାତର ମୋ ବୁଦ୍ଧି ତୁଚ୍ଛ । ଅହେ ପ୍ରଭୁ ଅଖିଳନାଥ । ମୁହିଁ ଯେ ଅନାଥ ଜନ ତୁମ୍ଭେ ମୋ ନାଥ । ।୧।

ମାନସ ସ୍ଥିର ସରଣି ଶ୍ରୀକୃଷ୍ଣ ତହିଁ ତରଣି । ଉଦେ ହୋଇ ଅଘ ଅନ୍ଧକାର ବିନାଶ । ଏ ଭବସିନ୍ଧୁ ମଧ୍ୟର ଘ୍ରାସିଲି ଏଥୁ ଉଦ୍ଧର ମୋହରେ କରୁଣା କର ମୁ ତୁମ୍ଭ ଦାସ । ଜର ପ୍ରଭୁ ମୋତେ ତାରଣ ତୁମ୍ଭ ପାଦ ପଦ୍ମରେ ପଶିଲି ଶରଣ । ।୨।

ଏମନ୍ତେ ନଳ କୁବେର ମୁନିଙ୍କି ଯୋଡ଼ିଣ କର । ପୁଚ୍ଛନ୍ତି ବ୍ରହ୍ମାଣ୍ଡ ସାର ବ୍ରଜବିହାର । ଶୁଣିଲି ରାଧାମିଳନ ତଦନ୍ତେ ଯେ ଲୀଳାମାନ କଲେ ଶ୍ରୀନନ୍ଦ ନନ୍ଦନ କହ ସତ୍ୱର । ଶୁଣି ମୁନି ଆନନ୍ଦେ ଭାଷି । କହିଥିଲେ ପୂର୍ବେ ମୋତେ ଯେ ପୌର୍ଣ୍ଣମାସୀ । ।୩।

ପୁଣି ନିତ୍ୟନ୍ତେ ପ୍ରଭାତ ଉଠି ଯେ ଯଶୋଦାସୁତ । ସାତ ଶୀଘ୍ରେ ନିତ୍ୟକୃତ୍ୟ ଭୋଜନ ଅନ୍ତେ । ପୁରୁ ହୋଇଲେ ବାହାର ବଳରାମଙ୍କ ସଙ୍ଗର ବତ୍ସା ବାଳକ ନିକର ବୃନ୍ଦାବନାନ୍ତେ । ପ୍ରବେଶିଣ ଉଚ୍ଚ ମତେ । ନାନାପ୍ରକାରେ ବିହାର କଲେ ଯେ ଯେତେ । ।୪।

କେହୁ ବାଙ୍କେ ତେଇ ଯାଏ କେ ପୁଣି ଚରା ଉଡ଼ାଏ । କେ ହାତ ମାର ପଳାଏ କେହୁ ଗୋଡ଼ାଏ । କେ ଯାଇଁ ଧରଇ ହାତ କେ ବୋଲେ ଅହେ ସଘାତ କେହୁ ମଲ୍ଲଯୁଦ୍ଧରେତ ସମାନ କହେ । କେହୁ ଶୀଘ୍ରେ ବୁଲାଇ ବାଡ଼ି । କେପୁଣି କାହାକୁ ଧରନିଏ ଉଚ୍ଚତେ +

ମିଛ ମନେ ହୋଇ ରୋଷ ରୋହିଣୀସୁତେ ପୀତବାସ ତାଙ୍କର ସ୍ବଭାବ ଥିବା ଅକ୍ଷେୟ । ଶୁଣି ରୋଷ ବଚନମାନ ଗୋପାଳଙ୍କ ଯେବ ଚକ୍ଷେ ପ୍ରବେଶିଲେ ଗୋଳବନେ ଅତି ହରଷେ । ଦେଖି ଯୋଏ ଅନନ୍ଦମନ । ଯେଯାହା ମତରେ ସେ ଚାଲିଲେ ବହନ ॥ ୬ ॥

ଯହୁଁ ଶବ୍ଦ ଶୁଣିଲା ଧେନୁକା ପ୍ରବେଶ ହେଲା ଗର୍ଦ୍ଦଭ ରୂପେ ତାଙ୍କୁ ମାରିଲା ଲାତ । ବଳରାମ ହୋଇ କ୍ରୋଧ ଯୁକ୍ତ ତାର ବେନି ପାଦ ଧରିଲାର ପିଟିଲେ ବୃକ୍ଷେ ମଲା ଦଇତ । ସ୍ବର୍ଗେ ଦେବେ ପୁଷ୍ପ ବରଷି । ଗୋପାଳ ପୋଏ ରାମଙ୍କୁ ବହୁ ପ୍ରଶଂସି । ॥ ୭ ॥

ତାଳ ଖାଇ ହେଲେ ତୋଷ ସନ୍ଧ୍ୟାରେ ଘରେ ପ୍ରବେଶ ଗୋପାଳେ କହିଲେ ଘରେ ଧେନୁକା ନାଶ । ଯଶୋଦା ଶୁଣି ହକଳ ବୁହାଇ ନୟନୁ ଜଳ ଅତିଶୀଘ୍ରେ କଲ କୋଳ କହେ ଏ ଭାଷ । ତୁ ମୋହର ଏକା ନନ୍ଦନ । ତୋତେ ନଦେଖିଲେ ମୋ ନ ରହେ ଜୀବନ ॥୮॥

ଶ୍ରୀମୁଖେ ଚୁମ୍ବନ ଦେଇ କାଖ କରି ଘରେ ନେଇଁ ସ୍ନାନ ଭୋଜନ ଅନ୍ତେ ପଲଙ୍କେ ସୁଆଇ । ସେବକେ ଜଗିଲେ ଆଣି ମିଶାଇ ସ୍ବପନ ପାଣି ପାଦ ପଦ୍ମରେ ଯତନେ ସନ୍ତୋଷ କେଇ । ନିଦ୍ରାଗତ ଯଶୋଦା ସୁତ । ପ୍ରଭାତ ଅନ୍ତେ ସେ ଉଠିଲେକ ତ୍ବରିତ ॥ ୯ ॥

ନିତ୍ୟକର୍ମ ତଥି ସାରି ବେଗେ ସେ ମନୋହିଁ କରି ବସ୍ତ୍ର ବାଳ ସଙ୍ଗେ ହରି ବନେ ବିହରି । ରାଧା ବିରହେ ଅକୁଳ ନୟନେ ପୂରାଇ ଜଳ ସ୍ବକଳ ମଧୁମଙ୍ଗଳ ସଙ୍ଗେ ବିଚାରି । ନ ଦେଖିଲେ ପ୍ରାଣ ହାନିବି । ଏ ଦେହେ ମୁଁ ଯସ୍ପୃହନ ପ୍ରାଣ ତେଜିବି । ॥ ୧୦ ॥

ଚକୋର ଚନ୍ଦ୍ରମାବିନୁ ଯେପରି ତନୁ ଗୃହକ ମୁଁ ଧନରଥ ବହୁନେ ଚକ୍ଷେ । ଆହା ମୋ ପରାଣଧନ ଆରେ ମୋ ଜୀବଜୀବନ ବୋଲି ଶ୍ରୀକୃଷ୍ଣ ରୋଦନ କଲେକ ତହିଁ । ଶୋକ ଦେଖି ମଧୁମଙ୍ଗଳ । ବଚନ ଧରି ନୟନୁ ପୋଛିଲେ ଜଳ । ॥ ୧୧ ॥

ଶ୍ରୀମତୀ କୃଷ୍ଣ ପ୍ରେମେ ଅଳପ ଯୋଗିଣୀ ମନେ ଚିନ୍ତାରେ ଦିନୁ ଦିନୁ ଅଟନ୍ତି କୃଶ । ନଯନ୍ ବୃନ୍ଦାବନ ନୀତ ଯୋଗିଣୀ ଅଟି ଅଳପ ନଗରେ ଶ୍ୟାମସୁନ୍ଦର ଧ୍ୟାନ ମାନସ । ବୋଲନ୍ତି ଧୂର୍ତ୍ତଗୋ ସଙ୍ଗୀ କୃଷ୍ଣ ପ୍ରେମେ ନ ସରେ ଦିନ ରଜନୀ । ।୧୨।

ସଖୀ ରାଧାଙ୍କ ପ୍ରବୋଧ ହେବ ନ ପୂର୍ଣ୍ଣଚନ୍ଦ୍ରା ବନ୍ଧୁ ପ୍ରବେଶ ହୋଇଲେ ଯାଇ ବୃନ୍ଦାବନରେ । କୁସୁମ ତୋଳିଣ ତହିଁ ଚିନ୍ତେ ସେ ସକଳ ସିଦ୍ଧି କଥାର କରନ୍ତି ଅତି ତୋଷ ମନରେ । ପୌର୍ଣ୍ଣମାସୀ ପ୍ରବେଶ ହେଲେ । ରାଧାସଙ୍ଗେ ପଦ୍ମସଖୀ ପ୍ରଣାମ କଲେ । ।୧୩।

ଶ୍ରୀମତୀ ସ୍ୱରୂପ ରହିଁ ଭକ୍ତି ଅରାଗେ କହି ଦେଲେ କାମବୀଜ କାମ ଗାୟତ୍ରୀ ମନ୍ତ୍ର । ନିଜ ମନରେ ଜପନ୍ତି ଏମନ୍ତ ଘୋଷ ଅଷ୍ଟଦଶ ମିଳିବେ ଆସି ତୋ ନିକଟ କାହ୍ନୁ ଧୂର୍ତ୍ତ ଅତି ଅନନ୍ଦ ରାଧା । ଛାଡ଼ିଲେ ମନରୁ ଯେତେ ବିରହ ବାଧା । ।୧୪।

ମନ୍ତ୍ର ଉପାସନା ବଳେ ଶ୍ରୀକୃଷ୍ଣ ତହିଁ ମିଳିଲେ ସଖୀସଙ୍ଗ ଦେଖି ସେ ଥାଆନ୍ତି ଛଦ୍ମବେଶ । କୃଷ୍ଣ ସଙ୍ଗେ ରଙ୍ଗେ ଲୀଳା କରନ୍ତେ ପ୍ରେମ ଲୀଳା ରସ ଭରି ତନୁକୁ କଲେ ସେ ନାଶ । ତହୁଁ ପୁଣି ଭାବାବେଶ ଆସି । ଶ୍ରୀକୃଷ୍ଣ ପକ୍ଷୁ ଅନ୍ତର ହେଲେ ସୁକେଶୀ । ।୧୫।

ପୂର୍ଣ୍ଣଚନ୍ଦ୍ରା ସ୍ଥଳେ ମିଳି ଦେଉ ସବେ ହୁଳହୁଳି ଗୁଞ୍ଜିଣ ଭଣି ମାଳୀ ତୋଷ ମନରେ । ପୁରେ ହେଉଥିଲେ ପ୍ରବେଶ ଏ ଅନ୍ୟେ ଅସ୍ତ ଦିନେଶ ଛାୟା ବାଳ ଘେନି କୃଷ୍ଣ ମିଳିଲେ ପୁରେ । କୃଷ୍ଣ ବଳରାମ ଦରଷ । ରାଣୀ ନନ୍ଦ ସାଧୁରେ କହିଲେ ଏ ରସ । ।୧୬।

ବୋଇଲେ ଶ୍ରୀପିତା ଶୁଣ ରାବମାନଙ୍କର ଗୁଣ ନ ଛାଡ଼ିଲେ ସେହୁ ନ ଚଳିଲେ ଆମ୍ଭଙ୍କୁ । ଅଣ୍ଡା ଦେଖି ହେଉ ରାତ ରଖିବୁ ଗୋରୁ ସମସ୍ତ ଶୁଣି ନନ୍ଦ ସହିତେ କହନ୍ତି ପୁଅଙ୍କୁ । ବାବୁ ତୁମ୍ଭ ଯେମନ୍ତ ମନ । ତୁମ୍ଭ କର୍ମେ ଅଛୁ ଭାବୁ କେ କରୁ ଅଛ । ।୧୭।

କୃଷ୍ଣ ବଳରାମ ପୁରେ ମଶୋଦି କଲେ ସତ୍ବରେ ପତ୍ନୀ ଚଳନ୍ତ ପଟେ ନିଦ୍ରା ସ୍ଵଖରେ । ଧୂଳି ପ୍ରାନ୍ତ୍ରୁ ଉଠିଲେ ସମସ୍ତ ଗୋବ୍ରୁ ଗୋପାଳେ ରାମକୃଷ୍ଣ ସଙ୍ଗରେ କୁତୂହଳରେ । ଯେ ଯାହାର ଯୂଥକୁ ଘେନି । ଗମନ କରନ୍ତି ଶୋଭା ଦିଶେ ଅବନୀ । । ୮ ।

କାହିଁ ନୀଳ ମେଘ ପ୍ରାୟେ କାହିଁ ଦିଶେ ଧୂମ୍ରମୟେ କାହିଁ କ୍ଷୀର ସମୁଦ୍ର ପରାଏ ଦିଶନ୍ତି । କେଉଁ ଅଡ଼େ ଗଙ୍ଗମୟେ ପ୍ରାତଃ ସୂର୍ଯ୍ୟ ଦିଗ ପ୍ରାୟେ ଗୃହରୁ ପଥ ନ ଦିଶେ ଗହଳ ଅଟି । ଦେଖି କୃଷ୍ଣ ଆନନ୍ଦ ମନ । ପୌର୍ଣ୍ଣମାସୀ ଅମିଶ ମଣ୍ଡଳେ ବଦନ । । ୯ ।

ଦେଖି ବଦନ୍ତି ଏମନ୍ତ ସୁରଭିଗ ଅପ୍ରମିତ ଏକସ୍ଥାନ ରହିବାକୁ ନାହିଁ ଯୁକତ । ଏକ ଏକ ଯୂଥକର ସଖା ମାନଙ୍କୁ ହେତୁ ବନ ମାନ ବାଣ୍ଟି ଦିଅ ଯେ ଯାହାମତ । ଦେବୀଙ୍କ ବଚନ ଏମନ୍ତ । ଶୁଣି କୃଷ୍ଣ ହେଲେ ଅତି ହରଷ ଚିତ୍ତ । । ୧୦ ।

ବନଦେବୀଙ୍କ ବିଚାର ସଖାଙ୍କର ନାମଧର ଯୂଥ ଯୂଥ କରି ଦେଲେ ସୁରଭୀଙ୍କୁ । ନାନାରୂପେ ବାଦ୍ୟମାନ ପତାକା ଅନେକ ବର୍ଣ୍ଣ ପୃଥ୍ୱୀକିଁ ଚହ୍ନ କହିଲେ ଏହୁ ସକଳ । ନ କରିବ ବିଶ୍ରାମଘାଟେ । ଅନ୍ତା ସିଂଗା ବେଳରେ ଗୋହିଁ କିଶୁ । । ୧୧ ।

ଶ୍ରୀକୃଷ୍ଣ ହରଷ ହୋଇ ଅଷ୍ଟ ସଖା ନାମେ ରାଇ ବୋଇଲେଟିହ ସୁବଳ ଅର୍ଜ୍ଜୁନ ଗନ୍ଧର୍ବ । ବସନ୍ତୋଜ୍ଜ୍ୱଳ କୋକିଳ ଭଡ୍ଡିଣି ମଧୁମଙ୍ଗଳ ବେନି ଉପଶୀଖା ଯାଅନ୍ତି ବଳଦେବ । କହି ବନ ନାମ ବଦନ । ଭଦ୍ରଶ୍ରୀଲୋହ ଖଣ୍ଡୀର ଯେ ତାଳବନ । । ୧୨ ।

ଖଦୀର ବକୁଳ ଭେଦ କହିଲେ ପୁଣି କୋମଦ କାମ୍ୟ ମଧୁବନେ ତୁମ୍ଭେ ବଦନ ସିବ । ଯାହା ନାମରେ ଏବଂଶୀ ଡାକିବ ସେହୁ ସତ୍ବରେ ନନ୍ଦେ ଏ ବୃନ୍ଦାବନରେ ଆସି ମିଳିବ । ପୁଣି କୃଷ୍ଣ କହି ଏପରି । ଅମ୍ଭ ଘରେ ରହିଲା ଏ ବୃନ୍ଦାବନ । । ୧୩ ।

ସମସ୍ତ ସଖୀଙ୍କୁ ନେଇ ଶ୍ରୀକୃଷ୍ଣ ଏକାନ୍ତେ ବସି ଶ୍ରୀମତୀଙ୍କ ଅଙ୍ଗ ସଙ୍ଗ ଲାଳସା କଲେ । ଅନେକଦିନୁ ଦର୍ଶନ ନ ହେଲୁରେ ପ୍ରାଣଧନ ତୋ ବିନୁ କେମନ୍ତେ ରହି ଜୀବନ ଧରି । ରହିବ ମୁଁ ନଦିଶେ ବୁଦ୍ଧି । ମୋତେ ଚିନ୍ତା କଲେ ଅଛି କରୁଣାନିଧି । ।୧୪।

ଏମନ୍ତ ଚିନ୍ତନ୍ତେ ମନ ଦୂତୀ ମିଳିଲେ ଯେ ସ୍ୱାନ୍ତ ଦେଖି ବୋଲନ୍ତି ମୋହନ ସାଥ ବଚନ । ଏ ମୋର ବଚନ କହି ବେଠାଇବୁ ପ୍ରାଣ ସଙ୍ଗ ଦର୍ଶନ କରି ସୁଖ ଲଭିବେ କହନ । ତୁଟିବ ମୋ ବିରହତାପ । ଦେଖି ମନ୍ମୋହିନୀ ଚିତ୍ତ ସୁନ୍ଦର ରୂପ । ।୧୫।

ଦୂତୀ ତହୁଁ ଗଲା ଯହିଁ ଶ୍ରୀମତୀ ସନ୍ନିଧେ ମିଳି କହିଲା ତୁମ୍ଭ ବିହୁନେ କୃଷ୍ଣ ଅବୁଝ । ତୁମ୍ଭେ ତାହାଙ୍କ ବିହୁନେ ବିରହ ହେଉଛ ମନେ ଚତୁର ହୋଇଣ ଚଳ ହୋଇବ ମେଳ । ଶୁଣି ପୁତ୍ରୁ ବାହାର ହୋଇ । ତୁଳସୀ ହସ୍ତରେ ମାଳ ଚନ୍ଦନ ଦେଇ । ।୧୬।

ପଠାଇଲେ ଅତି ତୋଷେ ଗଲା ସେ ଶ୍ରୀକୃଷ୍ଣ ପାଶେ ମାଳଚନ୍ଦନ-କୁ ଶୀଘ୍ରେ କରରେ ଦେଇ । କହିଲେ ଏମନ୍ତ ଗୀତ କୁଞ୍ଜରେ ବଜ୍ରେଶ୍ୱରୀର ଏଥି ସମୟେ ପ୍ରବେଶ ହୋଇବେ ରାଇ । ଏତେ କହି ତୁଳସୀ ଚଳି । ଘରୁରେ ଯାଇ ଶ୍ରୀମତୀ ସମ୍ମୁଖରେ ମିଳି । ।୧୭।

ସଖୀଙ୍କି ଘେନି ସଙ୍ଗତେ ଶ୍ରୀବୃନ୍ଦାବନେ ଏକାନ୍ତେ ମିଳିଲେ ଶ୍ରୀକୃଷ୍ଣ ଚନ୍ଦ୍ର ପାଶରେ ତୋଷେ । ରାଧା ମାନସ ଚକୋରୀ ସନ୍ତୋଷେ ଦର୍ଶନ କରି ଶ୍ରୀମତୀଙ୍କି ଦେଖି କୃଷ୍ଣ ଅତି ହରଷେ । ପ୍ରବେଶିଲେ କୁଞ୍ଜରେ ଯାଇ । ରାଧା କୃଷ୍ଣ ପ୍ରେମ ସୁଖେ କେ ପାରେ କହି ।୧୮।

ଶ୍ରୀମତୀ ହେଲେ ଅବେଶ ମଧ୍ୟାହ୍ନେ ଥାଅ ହିନ୍ଦୋଳ କୃଷ୍ଣ ସଙ୍ଗ ସୁଖ ଅନ୍ତେ ପୂଜିବ ତୋତେ । ଏତେ କହି ଠାକୁରାଣୀ ରଘୁଭଙ୍କୁ ବେଣୁ ପାଣି ସଙ୍ଗେ ବିହରିଲେ ଅତି ହରଷଚିତ୍ତେ । ଯେମନ୍ତ ନୃପେ ନେହ ବଚନ । କହି କେ ପାରିବ ସେ କାଳର ରଚନ । ।୧୯।

ଶ୍ରୀକୃଷ୍ଣ ବୋଲନ୍ତି ବାଣୀ ଶୁଣରେ ରସିକାମଣି ତୁ ବିନା ମୋ କଣ୍ଠ ଚଢ଼ଉନ ହାର । ତୁ ମୋ'ର ପ୍ରାଣୁ ଅଧିକେ ହେ ପ୍ରାଣେଶ୍ୱରୀ ରାଧିକେ ତୋ ମୁଖ ଦର୍ଶନେ ଜୀବ ହୁଅଇ ସ୍ଥିର । ଅଟେ ବାଳା ନବ କିଶୋର । ତୋ ସଙ୍ଗ ବିହ୍ୱଳେ ଧୈର୍ଯ୍ୟ ଧର ନ ପାର । ।୩୦।

ଶ୍ରୀମତୀ ସ୍ନେହେ ଉତ୍ତର ବୋଲନ୍ତି ନାଗରବର ତୁମ୍ଭ କ୍ଷଣକ ଅନ୍ତର ଯୁଗ କୋଟିଏ । ତୁମ୍ଭ ଶ୍ରୀମୁଖ ଦର୍ଶନ ବିନୁ ନ ରହେ ଜୀବନ ଭୂବନ ହୁଅଇ ମୋତେ ଅରଣ୍ୟପ୍ରାୟେ । ମୋରେ ଯେବେ ସଦୟ ମନ । ଜଣାଉଛି ନିତ୍ୟେ ଦେଉଥିବ ଦର୍ଶନ । ।୩୧।

ଏମନ୍ତ ବଚନ ଶେଷେ ନାନା କେଳି କଲେ ରସେ ଅତିହିଁ ନିଦ୍ରା ଅଳସେ ମାନସେ ଶୋଭିଲେ । ଶ୍ୟାମ ଘନେ କି ବିଜୁଳି ସୁବର୍ଣ୍ଣେ ମର୍କତ ଝଳ ଦିଶଇ ତହିଁରୁ ବଳି ଶୋଭା ଯେ କାଳେ । ତମାଳେ କି କନକଲତା । ଶ୍ରୀକୃଷ୍ଣ ଶ୍ରୀମତୀ ସଙ୍ଗେ ଅତି ଶୋଭିତା । ।୩୨।

ଏହି ସମୟେ ଜଟିଳା ବୃନ୍ଦାବନରେ ମିଳିଲା ଶାରିକା ଉଚ୍ଚେ ଭାଷିଲା କର ଶ୍ରବଣ । ଶ୍ରୀକୃଷ୍ଣ ରାଧା ଅନ୍ତର ଲଭିତା ଯାଇ ଘରର ଜଟିଳା ଆଗରେ ଉଭା ହୋଇଲେ ପୁଣ । ବିଶାଖା କହିଲେ ଏମନ୍ତ । ଆଜିତ ସୂର୍ଯ୍ୟ ପଞ୍ଚମୀ ପୂଜା ବିହିତ । ।୩୩।

ବଷ୍ଟ ଶର୍ମା ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରୁ ତାଙ୍କୁ ହାନ୍ତୁଜାଇ ନେଲେ ବାଟୁ ଆସି ପଥରୁ । ଏପେନ ଉତ୍ତର ହେଲା ଶୁଣି ବୋଇଲେ ଜଟିଳା ମୁଁ ଯାଇ ବ୍ରାହ୍ମଣ ଘେନି ଆସିବି ପୁରୁ । ଏତେ କହି ଜଟିଳା ଚଳି । ବ୍ରାହ୍ମଣ ସ୍ୱରୂପ ହୋଇ ଶ୍ରୀ ବନମାଳୀ । ।୩୪।

ପଥରେ ଅଛନ୍ତି ବସି ଦେଖି ବୁଢ଼ି ଅତି ତୋଷି ବୋଇଲେ ବିଜଏ କର ସୂର୍ଯ୍ୟ ପୂଜାକୁ । ସେ ବୋଇଲେ ବ୍ରହ୍ମଚାରୀ ନ ଛୁଇଁବୁ ଅମ୍ଭେ ନାରୀ ପୁଣି ବୁଢ଼ି ଶୁଣିଣ ବୋଇଲା ତାହାଙ୍କୁ । ନିମନ୍ତ୍ରଣେ ନ ଗଲେ ଦ୍ୱିଜ । ଧର୍ମ ନାଶ ହୁଅଇଟି ଏକଥା ହେଇ । ।୩୫।

ଏକାଳେ ମଧୁମଙ୍ଗଳ ଆସିଣ ହସ୍ତେ ମେଳ ବ୍ରହ୍ମା ଅଗସ୍ତ୍ୟବେଶ ବେଦଜ୍ଞ ନେଇଁ । ପାଦାର୍ଘ୍ୟ ଦେଇ ଯତନେ ବସାଇ ଦିବ୍ୟ ଆସନେ ପୂଜା ଆରମ୍ଭ କରନ୍ତି ହରଷେ ଚହିଁ । ବିଧିମତେ ପୂଜା ବଢ଼ାଇ । ନାରୀକେଳ ନେଇ ରାଧା ହସ୍ତରେ ଦେଇ । ।୩୬।

ଜଟିଳା ବୋଲେ ଗୋସାଇଁ ମୋ ବଧୂ କରକୁ ଚାହିଁ କହ ସନ୍ତାନ ହେବାର ଯତନେ ମୋତେ । ଶୁଣି ଶ୍ରୀମତୀଙ୍କ କର ଧରିଣ ଶ୍ୟାମ-ସୁନ୍ଦର କୋମଳ ବଚନେ ଯେ କହିଲେ ଏମନ୍ତେ । ପଦ୍ମପୁଷ୍ପ ସବୁ ଲକ୍ଷଣ । ଏହା ସନ୍ତାନ କହିବ ଏକଥା ଜାଣ । ।୩୭।

ଜଟିଳା ଶୁଣି ଏ ବାଣୀ ଆକୁଳ ହୋଇଣ ପୁଣି ବୋଇଲା କିରୂପେ ବଂଶ ହେବ ବର୍ଦ୍ଧନ । ଏକଥାକୁ ପୁଣି ବଟୁ କହଇ ବଚନ ପଞ୍ଚ ବୃକ୍ଷ କାଳେ ଜନର ହୋଇଲା ସନ୍ତାନ । ମାଗି ଆଣ ଯେ ଚନ୍ଦ୍ରାମଣି । ହେଲେ ତୁମ୍ଭଙ୍କୁ ସନ୍ତାନ ହୋଇବେ ପୁଣି । ।୩୮।

ବୃଦ୍ଧି ଏମନ୍ତ ବଚନଶୁଣି ହୋଇଲା ମଉନ ପୁଣି ବୋଲେ ତୁମ୍ଭେ ଜଗତ ଅଗସ୍ତ୍ୟ ହୋଇ । ପୂଜା ଯେ କରାଉଥିବ ଏଥେ ହେଳା ନ କରିବ ବୋଲି ବଧୂକୁ ଘେନ ଯେ ପୁରକୁ ଯାଇ । ଯେ ଦିନୁ ସନ୍ଦେହ ଫିଟିଲା । ଶୁଣି ରାଧାକୃଷ୍ଣ ମନ ହରଷ ହେଲା । ।୩୯।

ନାନ୍ଦୀମୁଖୀ ବନ୍ଦୁମତୀ ଆଗେ ଶ୍ରୀକୃଷ୍ଣ କହନ୍ତି ତୃପତ ନହଇ ମତି ଦିବା ମିଳନେ । ରାତ୍ରରେ ମିଳାଅ ଆଣି ଯେ ମୋର ପ୍ରାଣ ମିତଣୀ ଯାଇ ଯେ ଶ୍ରୀମତୀଙ୍କି କହିଲେ ଯତନେ । ଶୁଣି ରାଧା ଉତ୍ସାହଥିଲି । ଏ କାଳରେ ଅସ୍ତହେଲେ ଯେ ଦିନପତି । ।୪୦।

ବତ୍ସା ବାଳକ ସଙ୍ଗତେ କୃଷ୍ଣ ପୁରକୁ ଆସନ୍ତି ଅଟ୍ଟାଳପରୁ ଶ୍ରୀମତୀ ଦୃଷ୍ଟି କରନ୍ତି । ପଥେ ନନ୍ଦ ଉପନନ୍ଦ ଦେଖିଣ ଅତି ଆନନ୍ଦ ଶ୍ରୀକୃଷ୍ଣ ତାହାଙ୍କୁ ଶିରେ କର ଯୋଡନ୍ତି । ଦେଖି ରାଧା ସଙ୍ଗିନୀଗଣ । ବୋଇଲେକୃଷ୍ଣ ସଙ୍କେତ କହିଲେ ଜାଣ । ।୪୧।

ପଦ୍ମବିନ୍ଦୁ ଚିତ୍ର ହୋଇଲେ ମିଳବ କୁଞ୍ଜରେ ଚଳେ ଛାଇଥାଅ ସଜନୀ ରୁ ଏଡି ସଙ୍କେତ । ଶ୍ରୀମତୀ ସଖୀଙ୍କ ବାଣୀ ଆନନ୍ଦ ହୋଇଲେ ଶୁଣି ଶ୍ରୀକୃଷ୍ଣ ପୁରେ ପ୍ରବେଶ ଉତ୍ସୁକ ଚିତ୍ତ । ଗ'ଡ଼େ ନନ୍ଦ ସଙ୍ଗରେ ବସି । ଏମନ୍ତ ସମୟେ ଜଣେ କହିଲା ଆସି । ।୪୨।

କଂସ ଅତି କ୍ରୋଧଭରେ ପେଷିଅଛି ପ୍ରଜନ୍ମାରେ ବେଗେ ଯାଅ ଗୋପେ ନନ୍ଦକୁମର ପାଶ । ଶୁଣି ନନ୍ଦ ମନରେ ବଢ଼ି ବିଷାଦ ଗାନ୍ଧରେ ପୁତ୍ରଙ୍କୁ କେହୁ ନୃତ୍ୟ ବାହାର । କହିଅଛେ ଦେଲେ ଅଦେଶ । ଘୋଷଣ ଚଢ଼ାଇ ଦେ ଯେ ବୁଲଇ ଦେଶ ।୪୩।

ପୁର ନିଃଶବଦ ଛାଣି ବାହାର ସେ ବେଣୁପାଣି ଯମୁନା ତଟେ ଶ୍ରୀକୃଷ୍ଣେ ଯାଇ ମିଳଲେ । ଏଅନ୍ତେ ରାଧା ଚତୁର ହୋଇ କୃଷ୍ଣ ଅଭିସାର ନୀଳ ବସ୍ତ୍ର ଅଙ୍ଗେ ମୃଗ ମଦ ଲେପିଲେ । ସଙ୍ଗେ ସଖୀ ଗଣଙ୍କୁ ଘେନି । ଘରଙ୍କ ପୁରରୁ ବାହାର ହୋଇଲେ ଧନୀ ।୪୪।

ଶ୍ରୀକୃଷ୍ଣ ପାଶେ ପ୍ରବେଶ ମନରେ ବଢ଼ି ଉଲ୍ଲାସ ଦେଖି ଶ୍ରୀମତୀଙ୍କି କୃଷ୍ଣ ପାଖେଟି ଆସି । ଆନନ୍ଦେ କଦମ୍ବ କୋଳ କୁଞ୍ଜରେ ହୋଇଲେ ମେଳ ଅନେକ ପ୍ରକାରେ ପ୍ରେମ ବଚନ ଭାଷି । କଲେ ସେ ଯେ ବହୁଧ ଲୀଳା ଏ ଅତି ଚତୁର ସେ ଯେ କେଳି କୁଶଳା । ।୪୫।

ଏଅନ୍ତରେ ପକ୍ଷୀଗଣ ବସି କରନ୍ତି ଗୁଞ୍ଜନ କେ ଉଡ଼ି ତାହାକୁ କହେ ଭଗବାନମାଳ । ଭ୍ରମର ପଦ୍ମକୁ ଛାଡ଼ିଗଲାଣି ଫୁଲରେ ପଡ଼ି ରହି କେଉଁ ହଂସ ଯାଏ କହଇଗୋ ଭ୍ରମ । ପୁଣି ଏକ ସଜନୀ କହି । ଦାଡ଼ିମ୍ବ ଛାଡ଼ି ଏ ଶୁକ ପଙ୍ଗ ମେଲେଇ ହି । ।୪୬।

ପୁଣି କହନ୍ତି ଏମନ୍ତ ମୃଗତୃଷ୍ଣା ଗଲାବେଳ ବସ୍ତ୍ରହରେ ସେ କ ତୃଷ୍ଣା ବହ ଯାଏବ । ସୁବର୍ଣ୍ଣ ଏମ'ପିତ୍ତଳ କର ଯତନେ ମଞ୍ଜୁଳ ବପଥି ପଡ଼ିଲେ ଯେ କ ବଳ ଘଟେବ । ଏହି ରୂପେ ଶ୍ଳେଷ ଉତ୍ତର । ବୋଲିଲେ ବବେକ ନିମ୍ନା ଛାଗରେ ସାର । ।୪୭।

ସଖୀଙ୍କ ଭକ୍ତିଭ ବାଣୀ ଶୁଣି ତୋଷେ ବେଣୁପାଣି ମନେ ହସି ଧର
ଶ୍ରୀମସ୍ତକ ଶ୍ରୀକର । କୁଞ୍ଜରୁ ବାହାର ହେଲେ ସକଳ ସଖୀ ମିଳିଲେ
ଏକ ଆରମ୍ଭରେ କଲେ ନୃତ୍ୟ ପ୍ରଚାର । ରାଧା କୃଷ୍ଣ ଦେଖି ହରଷ ।
ତଦନ୍ତେ ଶ୍ରୀକୃଷ୍ଣ ନୃତ୍ୟ କଲେ ଆବେଶ । ।୪୮।

ରାଧା କୃଷ୍ଣ ମଧ୍ୟେ ରହି ସକଳ ସଙ୍ଗିନୀ ରହି ମଣ୍ଡଳ ଆକୃତି
ହୋଇ ଅଦ୍ଭୁତ ରସ । କେ ବଜାଏ ତାଳ କରେ କେ ଗାଏ ଗୀତ
ସ୍ୱସ୍ୱରେ କେ ବୀଣା ବଜାଏ କେ ଖଞ୍ଜଣି ପ୍ରକାଶ । ବୃନ୍ଦା ଦେଖି
ଶୋଭା ବିଶେଷ । ଆନନ୍ଦ ହୃଦୟେ ଯେ ହୋଇଲେ ହରଷ ।୪୯।

ଅବିର ଚୂଳାଲ ଧରି ସଖୀଗଣ ସଙ୍ଗେ ହସ ଖେଳନ୍ତି ଅଭିନବ ରସେ
ନାନା ପ୍ରକାରେ । କେ କାହାର କର ଧରି କେ କାହା ମୁଖରେ
ମାର କେ ବୋଲଇ ଗଲ୍ପ ହାର ନ ପାର ମୋତେ । ହୋଇ ମେଳ
ସବ ସଙ୍ଗିନୀ । କୃଷ୍ଣ ଶ୍ରୀଅଙ୍ଗେ ମାରନ୍ତି ଅବିର ପେଳି ।୫୦।

ଖେଳ ହୋଇଲାକ ଶେଷ ଏ ଅନ୍ୟେ କୁଞ୍ଜେ ପ୍ରବେଶ ଅଷ୍ଟ ସଖୀ
ଅଷ୍ଟ ଦିଗେ କୁଞ୍ଜେ ରହିଲେ । ଲଳିତା ସଖୀ ଉତ୍ତରେ ବିଶାଖା ଯେ
ଈଶାନରେ ପୂର୍ବେ ଚିତ୍ରା ଇନ୍ଦୁଲେଖା ରହେ ଅନଳେ । ଦକ୍ଷିଣେ
ଚମ୍ପକ ଲତିକା । ନଇରୁତେ ରଙ୍ଗଦେବୀ ଶୋଭା ଅଧିକା ।୫୧।

ତୁଙ୍ଗବିଦ୍ୟା ପଶ୍ଚିମରେ ସୁଦେବୀ ବାୟୁ କୋଣରେ ଅଷ୍ଟଦିଗେ
ଅଷ୍ଟସଖୀ ଶ୍ରୀକୁଞ୍ଜେ ବେଢ଼ି । ରାଧାକୃଷ୍ଣ ଅତି ତୋଷ ଲୀଳା ହୋଇଲା
ବିଶେଷ ଲଳିତା ପାଶେ ପ୍ରବେଶ ଉତ୍ସାହ ବଢ଼ି । ଲଳିତା ବଚନ
ଏମନ୍ତ । ହେନକ ମଦନ ମୁଁ ନୁହଇ ସମ୍ମତ । ।୫୨।

ବିଶାଖା ପାଶେ ପ୍ରବେଶ ହେଲେ ଯାଇ ପୀତବାସ ଦେଖି ସେ
ବୋଇଲା ହେ ମଦନମୋହନ । ଯେ ଭ୍ରମର ମନୋହାରୀ ମୁଁ
ତାହାଙ୍କ ପଦଯୁଗ ମୋହରେ ଶରଣ ଅନୁଗତ ସେନ । ଶୁଣି
ତହୁଁ ଚଳ ହରଷେ । ମିଳିଲେ ଯାଇ ଚମ୍ପକଲତାର ପାଶେ ।୫୩।

ଚମ୍ପକଲତା ଦେଖିଲେ ଚମ୍ପକ ମାଳାକୁ ଦେଲେ ବୋଇଲେ ନାଗର ତୁମ୍ଭେ ରସ ପ୍ରବାହ । ମୁହିଁ ଯେ କଞ୍ଚିତ ଲତା ମୋରେ ନୂହ ତୁମ୍ଭେ ଲତା ମଣ୍ଡା ଦ୍ରୁମେ ପ୍ରଷ୍ଠା ଦେଖାଅ ଗନ୍ଧବହ । ତୁମ୍ଭେ ଯେ ମଦନମୋହନ । ଦର୍ଶନେତ ଦିଅହେ ସାକ୍ଷାତ ମଦନ । ୫୪ ।

ତହୁଁ କୃଷ୍ଣ ଗଲେ ଚିତ୍ରଦେବୀ ପାଶରେ ମିଳି ଦେଖି ସେହୁ ଛଳ ପୁଷ୍ପ ଦେଇ ଅଞ୍ଜଳି । ବୋଲଇ ଅହେ ସୁନ୍ଦର ମୃଦୁ ମଧୁର ମଞ୍ଜୁଳ ସାକ୍ଷାତ କୋଟି ମଦନ ଶ୍ରୀଅଙ୍ଗ ଝଳ । ତୁମ୍ଭ ମୁଖ ପଦ୍ମ ସାକ୍ଷାତ । ତହୁଁ ମକରନ୍ଦ ପାନେ ଅଛି ମୋ ନେତ୍ର । ୫୫ ।

ତୁମ୍ଭେ ଲାବଣ୍ୟ ସରସୀ ଏ ମୋହର ମାନହଂସୀ ଦର୍ଶନୁ ହେଲାନି ତୋଷି କର ବଢ଼ନ୍ତେ । ଶୁଣି ତୋଷେ କୃଷ୍ଣ ଚଳି ରଙ୍ଗଦେବୀ ପାଶେ ମିଳି ଗୁଞ୍ଜମାଳା ଦେଇ କୃଷ୍ଣେ ପ୍ରଣମି ହୃଏ । ସେଠାରୁ କଲେକ ଗମନ । ତୁଙ୍ଗା ସେବା କଲେ ଦେଇ ଗନ୍ଧ ଚନ୍ଦନ । ୫୬ ।

ତୁଙ୍ଗା କହନ୍ତି ଏମନ୍ତ ତୁମ୍ଭ ଚରିତ ଅଦ୍ଭୁତ ମଦନ ପଞ୍ଚଶରକୁ ବର୍ଦ୍ଧନ କର । ଅତୀବ ଉରୁରେ ଛୀବ ଦିଏ ତୁମ୍ଭ ବଂଶୀ ରବ କୃତାର୍ଥ ହେଲିକି ଏବେ ବଢ଼ନ୍ତେ କର । ଶୁଣି କୃଷ୍ଣ ଅତି ହରଷ । ତୁଙ୍ଗବିଦ୍ୟା ପାଶେ ଯାଇ ହେଲେ ପ୍ରବେଶ । ୫୭ ।

ଦେଇ ସେ ପଦ୍ମ କୁମୁଦ ହୋଇ ଅତ୍ୟନ୍ତରେ ମୋଦ ଆଳାପକଲେକ ତହିଁ ମେଘ ମଲ୍ଲାର । ସାକ୍ଷାତଯେ ନବଘନ ମୂରତି କର ଦର୍ଶନ ମନ୍ଦହାସ ପ୍ରକାଶିତ କ ସୁଧାକର । ବୋଇଲେ ଏମନ୍ତ ବଚନ । ବେନି ଛନ ସେବାରେ ମୁଁ ଦାସୀ କଦାନ । ୫୮ ।

ପୁଣି ଅତି ତୋଷ ହୋଇ ଇନ୍ଦୁଲେଖା ପାଶେ ଯାଇ ଦେଖି କୃଷ୍ଣେ ଷଢ଼ି ଅର୍ଘ୍ୟ ପୂଜା ସେ କଲେ । ଚନ୍ଦ୍ରକାନ୍ତମଣି ମାଳା ଦେଇ ଯେ ମଣ୍ଡିଲେ ଗଳା ଦର୍ପଣ ଧରି ଯେ ଅଗେ ଉଭା ହୋଇଲେ । ଶ୍ରୀ ରାଧିକା କୁଙ୍କୁମେ ଅଙ୍ଗ । ଶୋଭିଦିଶେ ପରାଗରେ କି କୃଷ୍ଣ ଭୃଙ୍ଗ ।

ବାମ କପାଟରେ ହେମ କଳିକା ସହ ଉତ୍ତମ ଅଛେ ମଦନ
ମୋହନ ଚକ୍ରଯୁଗଳ । ପୁଣି କୃଷ୍ଣ ଅତି ତୋଷେ ବସିଏ ଯକ୍ଷା
ପାଶେ ଦେଖି ପୁଷ୍ପ ଚନ୍ଦନରେ ମଣ୍ଡେ ଶରୀର । ତହୁଁ ଜ୍ୟେଷ୍ଠା ପାଶେ
ପ୍ରବେଶ । ତାରାବଳୀ ହାର ଦେଇ ପରମ ତୋଷ । । ୭୦ ।

ପୁଣି ସର୍ବ ସଖୀ ମିଳି ମସ୍ତକେ କୁସୁମହାର ତହୁଁ ମଦନମୋହନ
ନାମକୁ ଦେଲେ । ଯହିଁ ଶ୍ରୀମଣ୍ଡଳ କଲ କୃଷ୍ଣ ଅତି ତୋଷବର ।
ଯମୁନା ତଟେ କୁଞ୍ଜରେ ଯାଇ ମିଳିଲେ । କଲେ ତହିଁ ବିବିଧ
ଲୀଳା । ରତିରସେ ମାତି ଦୁହେଁ ହୋଇଲେ ଭୋଳା । ୭୧ ।
ହେମ ମଣ୍ଡପେ ଚନ୍ଦ୍ରଶ୍ୟେବତ ଅତି ଶୋଭମାନ୍ୟେ ଯେ ଯା ହେଡ଼ା ମତେ
ସଖୀ ପର୍ଯ୍ୟଙ୍କରେ । ଏଥନ୍ତେ ମଧ୍ୟ ଷୋଡ଼ଶ ସମସ୍ତେ ଉନ୍ମାଦ ମନ
କୁଞ୍ଜେ ରାଧା କୃଷ୍ଣ ମେଳ ଅତି ସତ୍ୱରେ । ଚଉଷଠୀ ବନ୍ଧେ ସୁରତି ।
କର ଦୁହିଙ୍କର ମନ ହେଲେ ତୃପତି । ।। ୭୨ ।

ସର୍ବ ସଖୀ ମଧ୍ୟଗାନେ ଉନ୍ମତ୍ତ ହୋଇନ୍ତେ ଅଷ୍ଟଜନେ ଯେ ଯା କୁଞ୍ଜେ
ବୃନ୍ଦାଦେବୀ ପ୍ରବେଶ କଲେ । ମଧ୍ୟରେ ଶୋଭା ଶ୍ରୀକୁଞ୍ଜ ସୁବାସିତ
ପୁଷ୍ପ ଶେଯ ଉପରେ ରାଧା ମାଧବ ଶୟନ କଲେ । ତହିଁ କେତେ
ଲୀଳା ଅନ୍ତରେ । ବାହାରେ ବସିଏ ରାଧାକୃଷ୍ଣ ସତ୍ୱରେ । ୭୩ ।

ପୁଣି ସର୍ବ ସଖୀ ମେଳ ଚନ୍ଦ୍ରୋଦୟ ଦୀପ ଜାଳ ଯମୁନା ଜେଉଁ
ପୁଲିନେ ହେଲେ ପ୍ରବେଶ । ଦେଖି ମନୋରମ ବନ ହୋଇଲେ
ଆନନ୍ଦମନ ଶୁକ ଶାରୀ ପିକ ଆଦି କରନ୍ତି ଘୋଷ । ହଂସ ଚକ୍ରବାକ
ସାରସ । ବାଡ଼ବ ଆଦି ଏ ଜଳଚରେ ପ୍ରକାଶ । ।୭୪ ।

ଏମାନେ ପୁର ରାଜାର ଅଛନ୍ତି ଯେ ପରସ୍ପର ତୀର ସଞ୍ଚିତ
ଶାଖୀକ ପୁଷ୍ପ ବକୁଳ । ଅରବିନ୍ଦ କଲ୍ଲୋପ୍ତ୍ରକ ଅଶୋକ ଚୂତ ମୁକୁଳ
କଅଁଳୀ କେତକୀ ଚମ୍ପା ଯେ ନାଗେଶ୍ୱର । ପୁଲିନ ଏ ଅତିସୁଗନ୍ଧ ।
ଅତି ଯତ୍ନେ କନ୍ଦର୍ପ କରିଛନ୍ତି ବାଜ । ।୭୫ ।

ଅତିହିଁ ସୁନ୍ଦର ରତ୍ନ ପୁଷ୍ପରାଜି ମଣ୍ଡପର କୁସୁମତଳ୍ପରେ ବସିଛ ଶ୍ୟାମ ଶ୍ରୀମନ୍ତ । ମନରେ ଅତି ହରଷ ହୋଇଣ ମଦନ ବେଶ ଶ୍ରୀରାଧାଙ୍କୁ ଯତନେ ସୁବେଶ କରନ୍ତି । ବେଣୀ ଅଙ୍କେ ଭୂଷଣାମଣି । କୋଳେ ଧରି ମୁଖ ଚୁମ୍ବ ଦିଅନ୍ତି ପୁଣି । ।୬୬।

ନାନା ସ୍ୱାଦୁ ଫଳ ଆଣି ବୃନ୍ଦାଦେବୀ ବେଣୁପାଣି ସ୍ଥମ୍ଭରେ ପ୍ରବେଶ କଲେ ଅତି ଯତନେ । ଦେଖି ସନ୍ତୋଷ ଶ୍ରୀହରି ସଭ୍ୟରେ ମଣୋହିଁ ସାରି ତାମ୍ବୁଳ ଭୁଞ୍ଜନ୍ତି ଅତି ଆନନ୍ଦମନେ । ସଖୀଗଣ ସେବି ଶ୍ରୀମନ୍ତ । ଅବଶେଷ ବାଣ୍ଟିଣ ମଣୋହିଁ କରନ୍ତି । ୬୭ ।

ମିଳି ସବୁ ସହଚରୀ ଯେ ଯାହା ସେବା ଅରତି ଦେଖିଲେ ଚନ୍ଦ୍ର ଦୀପ ଉଜ୍ଜ୍ୱଳ ଜଳରେ । ଲଳିତା ଶ୍ରେଷ୍ଠ ଭାଷନ୍ତି ଶ୍ରୀକୃଷ୍ଣ ଶୋଭିବୁ ଚନ୍ଦ୍ର ଯମୁନା ହୃଦସ୍ଥ ଜଳେ କାମାନଙ୍କରେ । ଚନ୍ଦ୍ରା କହେ ସଙ୍ଗିନୀ ଦେଖ । କାମଚଳେ ରହିକରେ ଖଞ୍ଜନ ଯମକ । ।୬୮।

ସୁଦେବୀ କହନ୍ତି ପୁଣି ଏ କାଦମ୍ବୀ ସପତଣି ଅଭିମାନରେ ଏମାନ ଅଗ୍ନି ଜଳନ୍ତୁ । ରାଧାକୃଷ୍ଣଙ୍କ ଦର୍ଶନ କରିଣ ସାନନ୍ଦ ମନ ହୁଳହୁଳି ଦିଅନ୍ତି ଏ ନାନା ପକ୍ଷୀ । ବୃନ୍ଦା କହିଲେ ଏ ବଚନ । ଶ୍ରୀମତୀ ମଧୁର ଗୀତ କଲେ ଭଜନ । ।୬୯।

ଦେଖ ହେଉଛି କପଟ ନାୟକ ବଧ ଯୁବତି ପାଶେ ଥିଲା ଅନୁଭାଗ ଦୂରେ ନଥାଇ । କୃଷ୍ଣ ପୁଣି ମହେଦବି ବୋଲନ୍ତି ଦେଖ ପ୍ରେୟସୀ ପଦ୍ମିନୀ କୋଳରେ ଭୃଙ୍ଗ ରସିକ ହୋଇ । ସୂର୍ଯ୍ୟ ପଶି ଥାଉ ଏବେହି । ଏହା ଦେଖି କୁମୁଦିନୀ ହସୁ ଅଛନ୍ତି । ।୭୦।

ମଧୁରେ କୃଷ୍ଣ କହନ୍ତି ସୂର୍ଯ୍ୟ ପଦ୍ମିନୀର ପତି ଭୃଙ୍ଗ ହୋଇଅଛି ତାହା ସୁଖ ଦାୟକ । ଦେଖି ଏମନ୍ତ ହରଷ କୁମୁଦିନୀ ଲଭି ଶୋଭ ବର୍ଥେ ଅନିଦ୍ରା ହୋଏ ରଜନୀଯାକ । ଏହିମତେ ନାନା ରହସ୍ୟ । ହୋଇଲା ରଜନୀ ନବଘଡ଼ି ଯେ ଶେଷ । ।୭୧।

ଛନ୍ଦ ଶୁଣି କଲେ ଶୟନ ହେଲା ନିଶା ଅବସାନ ଜାଣି ବୃନ୍ଦାଦେବୀ ହୋଇ ଅତି ଉରସ୍ତ । ଶୁକ ଶାରିକାଙ୍କୁ ରାଇ ମନ୍ଦିରେ ଏମନ୍ତ କହି ରାଧାକୃଷ୍ଣ ନିଦ୍ରା ଭଙ୍ଗ କର ତ୍ୱରିତ । ଶୁଣି ଶୁକ ଏମନ୍ତ ସ୍ତୁତି । ଶୀଘ୍ରେ ନିଦ୍ରା ତେଜ ପ୍ରଭୁ କରୁଣା ରାଶି । । ୭୨ ।

ଶାରି ପୁଣ ଧୀରେ ଡାକେ ଉଠ ଉଠ ଶ୍ରୀରାଧିକେ ଶ୍ୟାମ ମାନସ ମୋହିନୀ ବ୍ରଜଈଶ୍ୱରୀ । ନିଶା ହୋଇଲାକ ଶେଷ ଉଦୟ ହୋଏ ଦିନେଶ ହେଲେ ପଙ୍କଜ ବିକାଶ ଦିବା ପ୍ରଗତ । ଶୁଣି ରାଧାକୃଷ୍ଣ ଚେତ । ପଲଙ୍କେ ବସି ନିଦ୍ରାରେ ଅଳସ ଚିତ୍ତ । । ୭୩ ।

କକ୍ଖଟୀ ଉଚ୍ଚେ ଡାକିଲା ଛୁଟିଲା ପ୍ରବେଶ ହେଲା ଚେତି ପକ୍ଷୀଗଣ ରାଧାକୃଷ୍ଣ ଅନ୍ତର । ପୁରେ ହୋଇଲେ ପ୍ରବେଶ ପଲଙ୍କରେ ନିଦ୍ରା ବଶ ଉଦୟ ହେଲେ ଦିନେଶ ପୂର୍ବ ଦିଗର । ପୌର୍ଣ୍ଣମାସୀ ନନ୍ଦ ମନ୍ଦିରେ । ପ୍ରବେଶି ଯଶୋଦାଙ୍କୁ କୁଶଳ ପଚାରେ । । ୭୪ ।

ଯଶୋଦା ପୁଣି କହଇ ଅଛିହିଁ କନୟ ହୋଇ କୁମର ମୋର ହୋଇଲା ଦୁର୍ବଳ ଅତି । ପୁତ୍ରେ କ୍ଷଣେ ନରହଇ କରଭେ ବନେ ଭ୍ରମଇ ପଚାରୁଛ ଦେବୀ ମୋର ଅଜ୍ଞ କି ଗତି । ହୋଇଲେ ଶୟନ ମନ୍ଦିରେ । ବସିଲେକ ଯାଇ ବେନି ପଲଙ୍କ ପରେ । । ୭୫ ।

ଶ୍ରୀଅଙ୍ଗେ କର ଅର୍ପି କହନ୍ତ ଦେବୀ ଆଶ୍ୱାସି ବୃଷଭାନୁକୁମାରୀକି ଡକାଇ ଅଣ । ତାହାର କରେ ଭୋଜନ ଶ୍ରୀକୃଷ୍ଣ କଲେ ଭୋଜନ ବଳ ବୀର୍ଯ୍ୟ ପରାକ୍ରମ ହେବ ବର୍ଦ୍ଧନ । ଯଶୋଦା ଶୁଣି ଏ ବଚନ । ବୋଲନ୍ତି କୁନ୍ଦଲତାଙ୍କୁ ଯାଅ ବହନ । । ୭୬ ।

ବୃଷଭାନୁ କୁମାରୀକି ଅଣିବୁ ଘରୁ ଡାକ ଛୁଟିଲା ଅଗ୍ରେ ଜଟିଳା କହ ଏହି ବଚନ । ଶ୍ରୀକୃଷ୍ଣ ଉଷ୍ଣା ଶାନ୍ତିକି ନିଜ ଗ୍ରାମଦେବତାଙ୍କୁ ସହିଥିଲି ପୂଜା ଗୋପାଳଙ୍କୁ ଘେନିକ । କୁନ୍ଦଲତା ଅତି ଗଦ୍ଭରେ । ଯାଇଣ ମିଳିଲେ ଅଭିମନ୍ୟୁ ପୁର ରେ । । ୭୭ ।

ରାଧିକା ଏକାଳେ ଚିତ୍ତେ ବିଚାରୁଥିଲେ ଏମନ୍ତେ ମୁଁ ଯାଇ ଯଶୋଦା ପୁରେ କୃଷ୍ଣ ନିମନ୍ତେ । କରନ୍ତି ଯତ୍ନେ ରନ୍ଧନ ସେ ମୋହର ଶ୍ୟାମଧନ ମୋହଠାରେ କୃପାରେ ମଶୋହିଁ କରନ୍ତେ । ଏହିକାଳେ ସେ କୁନ୍ଦଲତା । ଜଟିଳା ଅଗ୍ରତରେ କହଇ ବାରତା । ୭୮ ।

ଯଶୋଦା କହିଅଛନ୍ତି ପେଷିବ ତୁମ୍ଭେ ଶ୍ରୀମତୀ ବୁଳ ଘେଜି ନିମନ୍ତେ କରିବେ ରନ୍ଧନ । ଜଟିଳା କରଯ ଚିତ୍ତେ କହିଲା ପୁଣ ଏମନ୍ତେ ବଧୂ ମୋ କରଇ ନିତି ପୂର୍ଣ୍ଣ ଅର୍ଜନ । ନନ୍ଦ ସୁତଙ୍କୁ ମୁଁ ଡରଇ । ଦେଖିବାରେ କୁଳବତୀ ଧୈର୍ଯ୍ୟ ହରଇ । । ୭୯ ।

କୁନ୍ଦଲତା କର୍ଣ୍ଣେ ହସ୍ତ ଦେଇ କହଇ ଏମନ୍ତ କେତେ ଲଜ୍ଜାବନ୍ତ ସେ ଗୋ ଯଶୋଦା ସୁତ । ଅମ୍ଭେ ଅଟୁ ବଧୂଜନ ନ କହେ ଦିନେ ବଚନ ଏତେ ଜ ଅପବାଦ କଥା ତୁମ୍ଭେ କହତ । ମୁହିଁ ରାଧା ସଙ୍ଗତେ ଥିବ । ତୁମ୍ଭ ପୁତ୍ରର ପୁଣ ଅସି ଛଳିଣ ଯିବ । । ୮୦ ।

ବୁଢ଼ି ସନ୍ନମତ ହେଇ ବୋଇଲା ଗୋ ତୁମ୍ଭେ ଯାଇ ତାହ ଶ୍ରୀମତୀଙ୍କ ନିଅ ନନ୍ଦ ଭବନ । କୁନ୍ଦଲତା ଶୀଘ୍ରେ ଯାଇ ରାଧାଙ୍କୁ ଏମନ୍ତ କହି ଶୁଣି ରାଧା ତୋଷ ଚିତ୍ତେ କହି ଏସନ । କାହା କୁଳବତୀ ଏମନ୍ତ । ପର ଘରେ କରଇ ଗୋ ରନ୍ଧନ କୃତ୍ୟ । ୮୧ ।

ଜଟିଳା ପୁଣି ଏସନ ବୋଇଲା ମୋ ଜାଣୀ ଯେତ ସଭୁରେ ରନ୍ଧନ କର ଆସିବ ପୁଣି । ରାଧିକା ସମ୍ମତ ହୋଇ କୁନ୍ଦଲତା ସଙ୍ଗେ ଯାଇ ପ୍ରବେଶ ନନ୍ଦ ମନ୍ଦିରେ ଯଶୋଦା ରାଣୀ । ଦେଖି ମନେ ଏମନ୍ତ ଚିନ୍ତି । ଏରୂପେ କନ୍ୟା ମୋ ପୁତ୍ରେ ବଶ୍ର କରନ୍ତି । ୮୨ ।

ରୋହିଣୀ ସଙ୍ଗତେ ମିଶି ରନ୍ଧନ ଶାଳରେ ପଶି ଶ୍ରୀମତୀ ହୋଇଲେ ଅତି ସାନନ୍ଦ ମନ । ଲକ୍ଷ୍ମୀ ସାକରେ ରନ୍ଧନ କଲେକ ନାରୀ ରତନ କର ଛତିଶ ରସ ମାତ୍ରେ ଅମୃତ ସମାନ । ଅନେକ ପ୍ରକାରେ ବ୍ୟଞ୍ଜନ । କେତେ ପ୍ରକାରେ ଯତନ୍ତ ପିଷ୍ଟକମାନ । । ୮୩ ।

ରନ୍ଧନ ହେବାର ଜାଣି ପୁତ୍ରକୁ ଡକାଇ ଅଣି ସ୍ନାହାନ କରାଇ ଯଶୋବତୀ ହରଷେ । ଭୋଜନ ବସି କରନ୍ତି ରୋହିଣୀ ଯେ ପରଷନ୍ତି ଶ୍ରୀମତୀ ବଢ଼ାଇଦେନ୍ତି ମାନସତୋଷେ । ଶ୍ରୀକୃଷ୍ଣ ମଣୋହି କରନ୍ତି ଚମ୍ବାଇଣ ଯଶୋବତୀ କରେ ଦିଅନ୍ତି । ।୮୪।

ରାଧିକା ରାନ୍ଧିଛୁ ଅନ୍ନ ହରଷରେ ବାବୁ ଭୁଞ୍ଜ ଏକାଳେ ଗବାକ୍ଷ ମାର୍ଗେଦେଖି ଶ୍ରୀମତୀ । ଶ୍ରୀକୃଷ୍ଣ ଅନୁରାଗରେ ଗୃହିଁଲେ ହରଷଭରେ କେ କହିବ ସେକାଳର ସୁଖସମ୍ପତ୍ତି । ହରଷେ ବଢ଼ିଲା ମଣୋହି । ତାମ୍ବୂଳ ଭୁଞ୍ଜିଲେ ସଭେ ପଦକୁ ଯାଇ । ।୮୫।

ସଖୀଗଣଙ୍କ ସଙ୍ଗତେ ଶ୍ରୀମତୀ ହରଷ ଚିତ୍ତେ କୃଷ୍ଣ ଅବଶେଷ ବାଛୁ ବାଛୁ ଭୁଞ୍ଜନ୍ତି । ଯଶୋଦା ରୋହିଣୀ ତୋଷ ମଣୋହି ବଧାନ ଶେଷ ଶ୍ରୀକୃଷ୍ଣ ବୃନ୍ଦାବନକୁ ବଜେ କରନ୍ତି । ଉତ୍କଣ୍ଠୋଇ ଗୃହାନ୍ତି ରାଧା । ପୁରଦ୍ୱାରେ ପୁତ୍ରକୁ ପେଷିଲେ ଯଶୋଦା ।୮୬।

ବୃନ୍ଦାବନେ କଳ୍ପଦ୍ରୁମ ରତ୍ନପୀଢ଼ ମନୋରମ ଅତିଆନନ୍ଦରେ ରାଧା କୃଷ୍ଣ ବିଜୟେ । ସଖୀଗଣ ହରଷରେ ସେବନ୍ତି ଚଉପାଶରେ ଜଗନ୍ନାଥ ନାରାୟଣ ଦେବଏ ଧାୟେ । ସୁଜନେ ମୋ ନଧର ଦୋଷ । କୃଷ୍ଣଚନ୍ଦ୍ରବିହାର ପଞ୍ଚମ ପ୍ରକାଶ । ।୮୭।

——०O०——

## ଷଷ୍ଠ ପ୍ରକାଶ ।

## ରାଗ ଚନ୍ଦ୍ରାକେଦାର ।

ନମୋ ନମୋ ଶ୍ରୀ ଗଉର ମୂର୍ତ୍ତି । ଶୁଦ୍ଧ ଜମ୍ବୁନଦ ଅଙ୍ଗ ଜ୍ୟୋତି । ଶ୍ରୀମୁଖ ସାକ୍ଷାତ ପୂର୍ଣ୍ଣ ସୁଧାକର । ଭକ୍ତ ଚକୋରଙ୍କ ତୋଷି ମତି ହେ । ଗୌରାଙ୍ଗ । ।୧।

ହୋଇ ଉତ୍ପତ୍ତି ନବଦ୍ୱୀପରେ । ବହୁଲ ବ୍ରଜ ମଣ୍ଡଳରେ । ଜଗତ ନେତ୍ର ତାରକା ଉଲ୍ଲାସକ । ବନାଶିଲ ପାପ ଅନ୍ଧକାରେ ହେ । ଗୌରାଙ୍ଗ । ।୨।

ତହୁଁ ଶ୍ରୀପୁରୁଷୋତ୍ତମେ ବଜେ । ଘେନ ସଙ୍ଗତେ ଭକ୍ତ ସମାଜେ । ଦକ୍ଷିଣ ଦିଗେ ସମୁଦ୍ରେ ବହୁଲ । ଘ୍ରବ ଧନ ରତନ ବର୍ଣ୍ଣିଲେ ହେ । ଗୌରାଙ୍ଗ । ।୩।

ରାଧାକୃଷ୍ଣ ନାମ ଗତ ପୋତ । ତହିଁ ହୋଇ ପ୍ରଶସ୍ତ ସାଧୂତ । ଶ୍ରୀକୂର୍ମ ଦ୍ୱୀପେ କେତେ ଦିନ ବଣାମି । ତହୁଁ ପ୍ରବେଶିଲ ରାମନାଥ ହେ । ଗୌରାଙ୍ଗ । ।୪।

ପଥେ ରାୟ ରାମାନନ୍ଦ ଗୃହିଁ । ଭକ୍ତ ରତ୍ନ ଚଢି ସ୍ୱବ ବହି । ପ୍ରେମଧନ ଦେଇ ଯତନେ ଅଣିଲ । ତୁମ୍ଭ ମହିମା କହି ନୁହଇ ହେ । ଗୌରାଙ୍ଗ । ।୫।

କଉ ଅତି ଅନନ୍ଦେ ଭ୍ରମଣି । ଗୃହିଁ କର୍ଣ୍ଣାମୃତ ଚନ୍ଦ୍ରାମଣି । କେତେ ଭକ୍ତଙ୍କୁ ପ୍ରେମଧନ ଦେଇଣ । ଅତି ଯତନେ ଅଣିଲ ଶଣି ହେ । ଗୌରାଙ୍ଗ । ।୬।

ବର୍ଣ୍ଣିବାକୁ ତୁମ୍ଭେ ଗୁଣନାଥ । ମୂ ତ ବର୍ଣ୍ଣିବ କହିବ ବୁଦ୍ଧି ।
ରୂପ ସନାତନ ଗୋସ୍ୱାମୀଙ୍କ ବାଞ୍ଛା । ପୂର୍ଣ୍ଣ କର କଲ୍ପ ଶବ
ସିଦ୍ଧି ହେ । ଗୌରାଙ୍ଗ । । ୭ ।

ଭଟ୍ଟ ଶ୍ରୀରଘୁନାଥ ଗୋସ୍ୱାମୀ । ଗୋପାଳଭଟ୍ଟ ଜୀବ ଗୋ-
ସ୍ୱାମୀ । ଦାସ ଗୋସ୍ୱାମୀଙ୍କ ଶ୍ରୀଚରଣ ଯୁଗେ । ମୁଁ ଯେ
କହୁଛି କରି ପ୍ରଣାମୀ ହେ । ଗୋସ୍ୱାମୀ । । ୮ ।

ପୁଣି ଅନନ୍ତ ସନ୍ତ ମହନ୍ତ । ଚରଣରେ ମୋର ଦଣ୍ଡବତ ।
ବସ୍ତୁ ବର୍ଣ୍ଣିବାକୁ ଜ୍ଞାନ ଅଳପ । ସ୍ୱତନ୍ତରେ କହିବ କହିତ
ହେ । ଗୋସ୍ୱାମୀ । । ୯

ନାରଦ ଅଗେ ନଳ କୁବେର । ସତ୍ୟବନ୍ତ ଯୋଡି ବେନି
କର । ଏଅନ୍ତେ ଶ୍ରୀହରି ଙ୍କ ଲୀଳା ବହିଲେ । ମୋତେ କହି
ଜଗତ ନିସ୍ତାର ହେ । ପ୍ରେମନ । । ୧୦ ।

ପ୍ରେମଜନ ଅନ୍ତେ ହରଷ ମନେ । କୃଷ୍ଣ ମିଳଲେ ଶ୍ରୀବୃନ୍ଦା-
ବନେ । କୁନ୍ଦଲତା ଯେନ ରାଧା ପୁରେ ଯାଇ । ସଖୀଗଣ
ସଙ୍ଗେ ତୋଷ ମନେ ସେ । ଶ୍ରୀମତୀ । । ୧୧ ।

ପୁଣି ନୂର୍ଣ୍ଣ ପୂଚ୍ଛାବଶ ଯେଣି । ବୃନ୍ଦାବନରେ ମିଳଲେ ଧନୀ ।
ଶ୍ରୀକୃଷ୍ଣ ସଙ୍ଗେ ରଙ୍ଗେ ଖେଳ ଆରମ୍ଭ । ଚୂର୍ଣ୍ଣ ଦେଖି ପୃଚ୍ଛେଲ
ସଜନୀ ସେ । ଏକାଳେ । । ୧୨ ।

ଚମ୍ପା ରଙ୍ଗ ଗୁଞ୍ଜ ତୁମ୍ଭେ ବନ୍ଧ । ଏଥୁ ଲୋପ ହେଉ ଅଛ
କନ୍ଧ । ବୋଲନ୍ତି ଶ୍ରୀକୃଷ୍ଣ ଶୁଣ କହ ଅମ୍ଭେ ଯେନ ଥାଉ
ଗୋପାଳ ସମ୍ବନ୍ଧ ଗୋ । ଭ୍ରମେଣ । । ୧୩ ।

ପୁଣି ଏକ ସଜନୀ ବୋଲଇ । ଶୁଣିଲକ ଏ ଚତୁର ସଖୀ ।
ଚନ୍ଦ୍ରାବଳୀ ପାଶେ ଅନୁରାଗ ପୂର୍ଣ୍ଣ । ଅମ୍ଭେ ସନ୍ଦେହ କାଳମାକୁ
ବନ୍ଧି ଗୋ । ସଜନୀ । । ୧୪ ।

କୃଷ୍ଣ ପୁଣି ପୁଛନ୍ତି ଏମନ୍ତ । ଅଛୁ କାହିଁ କହ ଗୃହ୍ୟ ପ୍ରେତ ।
ଶ୍ରୀମତୀ ବୋଲନ୍ତି ଅମ୍ଭେ ଅଣିଦେବୁ । ଅଛୁ ଏହି ବନସ୍ତରେ
ଘଢ ହେ । ମୋହନ । ।୧୫।

ଏତେ କହିଣ ଅତି ସତ୍ୱରେ । ଯାଇ ମିଳ କାଳିନ୍ଦ୍ରୀ
ତୀରେ । ବଷ କ୍ୱଳାରେ ତହୁଁ ପୁଣି ବାହୁଡି । ଅବିମି ଲଲେ
କୃଷ୍ଣ ପାଦରେ ସେ । ଶ୍ରୀମତୀ । ।୧୬।

ପୁଣି କୁଞ୍ଜରେ ପ୍ରବେଶ ହେଲେ । ନାନାମତେ ଲୀଳା
କରଥିଲେ । ତହୁଁ ପୁଣି ରାଧା ସୂର୍ଯ୍ୟ ପୂଜା ସାରି । ଯାଇ
ପୁରେଣ ପ୍ରବେଶ ହେଲେ ସେ । ଶ୍ରୀମତୀ । ।୧୭।

କର କୃଷ୍ଣ ନମନ୍ତେ ରନ୍ଧନ । ହେମ ପାତ୍ରରେ ଦେଇ
ଯତନ । ଚନ୍ଦନ ମୂଦ ମୂହି ଚମ୍ପକଲତା । ଖରେ ପେଷିଲେ
ନନ୍ଦ ଭୁବନ ସେ । ଶ୍ରୀମତୀ । ।୧୮।

ବନମାଳ ବସ୍ତା ବାଳ ମେଳେ । ପୁରେ ପ୍ରବେଶିଲେ ସନ୍ଧ୍ୟା
କାଳେ । ଦ୍ୱାର ଅଟ୍ଟାଳ ଅରୋହିଣ ଶ୍ରୀମତୀ । କୃଷ୍ଣ ଚମନ
ଦର୍ଶନ କଲେ ସେ । ଶ୍ରୀମତୀ । ।୧୯।

ସଖୀଙ୍କରେ କହନ୍ତି ଏସନ । ସନ୍ଧ୍ୟା ହେବାରୁ ଉଭା
ମଦନ । ମୂର୍ଚ୍ଛିମନ୍ତ ହୋଇ ଅସୁଅଛୁ ରଙ୍ଗେ । ଘେନାବଇ
ଭରଣ୍ଡ ଜୀବନ ଗୋ । ସଜନୀ । ।୨୦।

ଏମନ୍ତରେ ପୁରେ ପ୍ରବେଶିଲେ । ଦେଖି ଜନନୀ ହରଷ
ହେଲେ । ଅନ୍ନ ନିଉଛାଇ ମୁଖେ ଚୁମ୍ବ ଦେଲେ । କୋଳକର
ପୁତ୍ରର ଘେନ ଗଲେ ସେ । ଯଶୋଦା । ।୨୧।

ରାଧା ପେଷିବା ଦିବ୍ୟ ପୀଠନ । କୃଷ୍ଣ ମଣୋହିଁ କଲେ
ଯତନ । ଅବଶେଷ ଗୁପ୍ତେ ନେଇଁ ଯେ ଧନିଷ୍ଟା । ଶ୍ରୀମତୀଙ୍କି
ସମର୍ପି ବହନ ସେ । ସମସ୍ତେ । ।୨୨।

ରାଧା ହରଷେ ମନୋହିଁ ମାନ । କୃଷ୍ଣ ଅଙ୍ଗ ଦୂତୀ ପେନ କର । ମିଳ ଏକାଳେ ଶ୍ରୀମତୀଙ୍କି କହିଲା । ଅଛ ସୁଖ ଚ୍ଛୋସ୍ନା ଅଭସାର ଗୋ । ଶ୍ରୀମତୀ । ।୨୩।

ଶୁଣି ଶ୍ରୀମତୀ ହୋଇ ହରଷ । ପିନ୍ଧି ଅତି ଶ୍ୱେତ ଚିକ୍କଣ ବାସ । କର୍ପୂର ଚନ୍ଦନ ଶ୍ରୀଅଙ୍ଗରେ ବୋଳି । କେଶେ ମଣ୍ଡି ମଲ୍ଲି ସୁମନସ ଯେ । ଶ୍ରୀମତୀ । ।୨୪।

ପିନ୍ଧି ସବୁ ହୀରା ଅଳଙ୍କାର । ଉରେ ଲମ୍ବାଇ ମୁକୁତା ହାର । ସର୍ବ ସଖୀଙ୍କି ସଙ୍ଗତରେ ଘେନଣ । ପୁଲୁ ବେଗେ ହୋଇଲେ ବାହାର ଯେ । ସୁନ୍ଦରୀ । ।୨୫।

ଯାଇ କୁଞ୍ଜରେ ପ୍ରବେଶ ହେଲେ । କୃଷ୍ଣଚନ୍ଦ୍ରଙ୍କୁ ଦର୍ଶନ କଲେ । ଅତି ହରଷରେ ରସରେ ଉତ୍ସୁକେ । ପୁଷ୍ପ ପଲଙ୍କେ ବଢ଼ସ୍ତେ କଲେ ଯେ । ଏମନ୍ତେ । ।୨୬।

ବରତଲେ ନାନା ବନ୍ଧେ ଲୀଳା । ରତି ଉତ୍ସୁକେ ହୋଇ ଯେ ଭୋଳା । ଅତି ଶାନ୍ତରେ ଶୟନ କଲେ ଦୁହେଁ । ଭୂଜେ ଭୂଜ ମୁଖେ ମୁଖ ମେଳା ଯେ । ସୁନ୍ଦରୀ । ।୨୭।

ଏମନ୍ତରେ ହୋଇଲା ନିଶାନ୍ତ । ବୃନ୍ଦାଦେବୀ ହୋଇଲେ ତରସ୍ତ । ଶୁକ ଶାରିତାଙ୍କୁ ଅଦେଶ ଦିଅନ୍ତେ । ମୟୂରେ ଯେ ସ୍ତବନ୍ତି ତରତ ଯେ । ଏକାଳେ । ।୨୮।

ଶୁକ ମୟୂରେ ସ୍ତବେ ଏମନ୍ତ । ଉଠ ଶ୍ୟାମସୁନ୍ଦର ରାଧା କାନ୍ତ । ନବ ପୀତାମ୍ବର ପଙ୍କଜନୟନ । ପୂର୍ବ ଦିଗ ହେଲା ପ୍ରକାଶିତ ହେ । ମୋହନ । ।୨୯।

ପୁଣି ବୋଲେ ଉଠ ଦୀନବନ୍ଧୁ । ରାଧାମୋହନ କରୁଣା-ସିନ୍ଧୁ । ପଙ୍କଜ ପ୍ରକାଶ ଉଦୟ ଦିନେଶ । ଅପି ଅସ୍ତହୋଇଲେକ ଇନ୍ଦୁ ହେ । ମୋହନ । ।୩୦।

ପୁଣି ମଧୁରେ ଭୂଷଣ ଧାରୀ । ଉଠ ଶ୍ରୀରାଧିକା ବ୍ରଜେଶ୍ୱରୀ । ନବଘନ ଶ୍ୟାମ ମାନସ ମୋହିନୀ । ଗାନ୍ଧର୍ବିକେ କୃଷ୍ଣ ମନୋହାରୀ ଗୋ । ଶ୍ରୀମନ୍ତ । ।୩୧।

କର୍ଣ୍ଣେ ଶୁଣି ଶାରି ଶୁକ ବାଣୀ । ଉଠିଲେ ସେ ରସିକ ରମଣୀ । ଦେଖିଲେ ଶ୍ରୀମନ୍ତ କୁଞ୍ଜ ମଳସ୍ତୁରେ ଅଙ୍କୁରିତ ହୋଇଅଛୁ ପୁଣି ସେ । ହରଷେ । ।୩୨।

ଉଠି ଯତନେ ଧଇଲେ କରେ । ଚଳିଲେ ସେ ଅତ୍ୟନ୍ତ ମୋଦରେ । ତାଙ୍କ ଆଗେ ପୁଣି ସଖୀଗଣ ସଙ୍ଗେ । ରଙ୍ଗେ ପ୍ରବେଶ ହୋଇଲେ ପୁରେ ସେ । ଶ୍ରୀମନ୍ତ । ।୩୩।

କୃଷ୍ଣ ଧୂର୍ତ୍ତଙ୍କୁ ବଞ୍ଚନ୍ତେ କଲେ । ଶ୍ରୀମନ୍ତ ସେ କୁଞ୍ଜେ ନେଇଁ ଥିଲେ । ସଖୀ ସଙ୍ଗରେ ପାତାଳ ଗଙ୍ଗା ତଟେ । ପୁଷ୍ପବନରେ ଯାଇ ମିଳିଲେ ସେ । ଶ୍ରୀମନ୍ତ । ।୩୪।

କରେ ନେ କର୍ପୂର ଅଳି ବାଳ । କେହୁ ସଖୀ ଅଣେ ଗଙ୍ଗାଜଳ । ଶ୍ରୀମନ୍ତ ତହିଁ ଯତନେ ଲଗାଇଲେ । କେହୁ ଦିଏ ବସ୍ତ୍ର ରୁମାଲ ସେ । ଏମନ୍ତ । ।୩୫।

ଛାୟା ମଣ୍ଡପ ନେଇଁ ଯେ ତୋଳ । ସଖୀଗଣ ଦେଲେ ହୁଳହୁଳ । ଏମନ୍ତେ ଅତି ଉତ୍ସୁକେ ମାଳୁଣୀଙ୍କ । କହି ଶ୍ରୀମନ୍ତ ପୁରରେ ମିଳ ସେ । ଏମନ୍ତେ । ।୩୬।

କେତେ ଦିନରେ ଚୂଞ୍ଚ ଫଳନ୍ତେ । ଯତ୍ନେ ଗୁନ୍ଥି କଳା ପାଠ ମୂର୍ତ୍ତେ । ଗଳେ ଲମ୍ବାଇ ଶ୍ରୀମନ୍ତ ଅତି ତୋଷେ । ସଖୀ ଗଣଙ୍କୁ ଦେନ ସଙ୍ଗରେ ସେ । ଶ୍ରୀମନ୍ତ । ।୩୭।

ସୂର୍ଯ୍ୟ ପୂଜା ସ୍ଥଳ ହେଲେ ଯାଇ । ଅଧି ଶ୍ରୀକୃଷ୍ଣ ମିଳିଲେ ତହିଁ । ରାଧା ସଙ୍ଗେ ରଙ୍ଗେ ଦେଖି ଯେ ପୁଚ୍ଛନ୍ତେ । ଶ୍ୱେତ ଚୂଞ୍ଚ ପରାଏ ଦିଶଇ ସେ । ମୋହନ । ।୩୮।

କାହ୍ନୁ ଏ ଗୁଞ୍ଜ ପାଇଲ ତୁମ୍ଭେ । ବିବନେ ବୁଲୁଥ ନ ଦେଖୁ ଅମ୍ଭେ । ତାର କୁଟିଳ ଗତି ଅତି ମଞ୍ଜୁଳ । ଏତ ଉଜ୍ଜ୍ୱଳ ରସ ଆରମ୍ଭ ରେ । ସୁନ୍ଦରୀ । ।୩୯।

ମୋର ମନ ତୁମ୍ଭରେ ଯେମନ୍ତ । ହୋଇଅଛ ନିର୍ମଳ ତେମନ୍ତ । ଗଜମୋତି ହାର ପାଲଟି ଦେଉଛ । ଏହୁ ଗୁଞ୍ଜ ହାର ଦିଅ ମୋତେ ରେ । ସୁନ୍ଦରୀ । ।୪୦।

ଶୁଣି ରାଧା କହନ୍ତି ଉତ୍ତର । ଚନ୍ଦ୍ରାବଳୀକାନ୍ତ ଯେଉଁ ହାର । ଗୁଞ୍ଜ ହାରକୁ ପାଲଟି ଲୋଡୁଅଛ । ଏ ଯେ ନୋହେ ଉଚିତ ତୁମ୍ଭର ହେ । ମୋହନ । ।୪୧।

କୃଷ୍ଣ ବୋଲନ୍ତି ହସି ସେନେହ । ରଙ୍ଗ ଗୁଞ୍ଜରେ ମୋଖ ନୁହ । ମୋତେ ଦିଅ ଏ ଶ୍ୱେତ ଗୁଞ୍ଜ ହାରେ । ମୁଁ ଯେ ମଣ୍ଡିବ ଶ୍ୟାମଳ ଦେହରେ । ବରାଙ୍ଗୀ । ।୪୨।

କୃଷ୍ଣ ପୁଣି କହନ୍ତି ଉତ୍ତର । ଏହୁ ଚଢ଼ ମଦନ ରାଜାର । ରାଜ ଭାଗ ଏବେ ଦେଇ ଯାଅ ତୁମ୍ଭେ । ନ ଦେଲେ ନ ଛାଡ଼ିବୁ ଅଞ୍ଚଳ ଗୋ । ବରାଙ୍ଗୀ । ।୪୩।

ଶୁଣି ରାଧା ବୋଲନ୍ତି ଏମନ । ଅମ୍ଭେ ନ ଜାଣୁ କେଉଁ ରାଜନ । ପୁରୁଷ ହୋଇ ତୁମ୍ଭେ ଭ୍ରମ ଏ ବନେ । ତୁର ପ୍ରଜା ହେଲ କେଉଁ ଦିନ ହେ । ମୋହନ । ।୪୪।

ପୁଣି ଶ୍ରୀମତୀ ସେଠାରୁ ଚଳ । ପଥେ ନାଗେଶ୍ୱର ପୁଷ୍ପ ତୋଳ । ପଦ୍ମ ମୁଖ ବାସେ ଭ୍ରମର ମିଳନ୍ତି । ହସ୍ତେ ଲେଉଟନ୍ତେ କୃଷ୍ଣ ମିଳି ସେ । କାଳରେ । ।୪୫।

ଅତି ସ୍ନେହେ ଆଲିଙ୍ଗନ କର । ଭ୍ରମରଙ୍କୁ ପାଶଛୁଟିବାର । ମାନସ ଅତି ଆନନ୍ଦେ ପରିପୂର୍ଣ୍ଣ । ମିତ୍ରେ ସ୍ତୁତ ବୋଲନ୍ତି ଅଶୋଡ଼ୀ ଗୋ । ହରଷେ । ।୪୬।

ପୁଣି କର୍କଶେ ବୋଲେ ଲଳିତା । ଜାଣିଛୁ ଯେ ମୋର ପ୍ରଗଲ୍‌ଭତା । ବିଶାଖା ବୋଲନ୍ତି ଏଡ଼େ ବଳଅର । ଧୀର ଲୋଡ଼ୁଛ ରାଜ ଦୁହିତା ହେ । ମୋହନ । ।୪୮

ବୃନ୍ଦଲତା କହଇ ଏସନ । ରାଧା ଛାଡ଼ିଦିଅ ଶ୍ୟାମଘନ । ଜଟିଳା ମୋତେ ଯେମନ୍ତି ପେଶିଛନ୍ତି । ଅନୁରାଧା କର ଆଲିଙ୍ଗନ ହେ । ମୋହନ । ।୪୯।

କୃଷ୍ଣ ବୋଲନ୍ତି ଶୁଣରେ ସଖି । ଆଲିଙ୍ଗନ କରନାହିଁ ମୁହିଁ । ଭ୍ରମର ଭୟେ ମୋତେ ଯେ କୋଳ କଲେ । ତୁମ୍ଭେ କର୍କଶ ବଚ କପାଇଁ ରେ । ସୁନ୍ଦରୀ । ।୫୦।

ଚିତ୍ରା ଶୁଣି ଏମନ୍ତ କହଇ । ବନେ ବ୍ୟାଘ୍ର ଡରୁଅଛୁ ମୁହିଁ । ମାଧବୀ ତଳେ ସୁବର୍ଣ୍ଣ ବେଦିକାରେ । ରାଧା ମାଧବ ବିଜେ ଯାଇ ଯେ । ହରଷେ । ।୫୧।

ଚାହିଁ ବୃନ୍ଦାଙ୍କୁ କହେ ଲଳିତା । ଦେଖ ଶ୍ରୀରାଧା କୃଷ୍ଣ ଶୋଭିତା । ବୃନ୍ଦା ଶାରି ଶୁକେ ଆଦେଶ ଦିଅନ୍ତେ । ଦୁହେଁ ପଢ଼ିଲେକ ମଧୁରତା ଯେ । ବଚନେ । ।୫୨।

ସୂର୍ଯ୍ୟ ଇନ୍ଦୁ ସଙ୍ଗମକୁ ଚାହିଁ । କୃଷ୍ଣ ରାହୁରାହି ଯେ ଅଛଇ । ଛାଡ଼ି ଯେ ଏବେ ଗୁରୁ ବାଧା ହରନ୍ତୁ । ଏବେ ଏକାନ୍ତ କୁଞ୍ଜରେ ଯାଇ ଯେ । ଏମନ୍ତ । ।୫୩।

ଶାରି ଶୁକ ଏମନ୍ତ ପଢ଼ିଲେ । ରାଧାକୃଷ୍ଣ ଶୁଣି ତୋଷ ହେଲେ । ସଖୀଗଣ ଅତି ଆନନ୍ଦ ହୋଇଣ । ଆଣି ଦାରାକ୍ଷ ଭୋଜନ ଦେଲେ ଯେ । ସଖୀଏ । ।୫୪।

ପୁଣି ଲଳିତା ପୁଚ୍ଛନ୍ତି ବ୍ୟାପ୍ରେ । ପ୍ରଜା ପଳାଇଲେ ରାଜା ଭୟେ । ପଥେ ତସ୍କର ଲୁଟନ୍ତି ପୁଣି ଅପି । ଯେବେ ନୃପ ଅନୁଗତ ହୋଏ ହେ । ମୋହନ । ।୫୫।

ନୃପ ତାଙ୍କୁ କ ବନ୍ଦନେ ରଖି । ତତ୍ତ୍ୱେ କହିଲେ ଦଣ୍ଡ ନ
ରଖି । ଦଣ୍ଡ ଦେବାର ଏମନ୍ତ ବୁଝା ବଣା । କାହିଁ ଅଛ
ଅଟା କେହ୍ନ ଦେଖି ଗୋ । ସଜନୀ । ।୫୬।

କୃଷ୍ଣ ବୋଲନ୍ତି ସଜନୀ ଶୁଣ । ନୃପ ସ୍ୱଗ ପ୍ରଜା ନଦେଇଣ ।
ପଳାଇ ଯାଉଥିଲେ ତାଙ୍କୁ ଧରାଇ । ନୃପ ଦଣ୍ଡ ନଦିଏ କ
ଜାଣ ଗୋ । ବାମାଏ । ।୫୭।

ଯେଉଁ ପୁଷ୍କର ସରଧା ନୃପତି । ତାହା ସ୍ତ୍ରୀରାଣ ଅଛନ୍ତି
ଶ୍ରୀମତୀ । ଏ ଯେଜ ଦଣ୍ଡ ଯେ ବହିତ ଅଛଇ । ତୁମ୍ଭେ ସମସ୍ତେ
ବୋଲ ଅବନ୍ଧ୍ୟା ଗୋ । ବାମାଏ । ।୫୮।

ସଖୀ କହନ୍ତି ରାଧା କଟାକ୍ଷେ । ମୁର ଛାଡ ହୋଇଛ
ପ୍ରତ୍ୟକ୍ଷେ । ତୁମ୍ଭେ ବଜାସଣେ ତାହାର ସରଜା । ବୋଲି
କେମନ୍ତେ ବୋଲୁଛ ମୁଖେ ହେ । ମୋହନ । ।୫୯।

କୃଷ୍ଣ କହନ୍ତି ସଖୀ ସକଳ । ମୁହିଁ ଟ ଗୋ ମଦନଗୋପାଳ ।
ଏବଚନ ଶୁଣି ଅତିହି ଆନନ୍ଦେ । ପ୍ରଶଂସିଲେ ସଖୀ ହୋଇ
ମେଳ ସେ । ବାମାଏ । ।୬୦।

କୁନ୍ଦଲତା ଏମନ୍ତ କହନ୍ତି । ଉତ୍ତମ ସେ କହିଲେ ନୃପତି ।
ଉପଦେଶେ ରହି କର ନ ଦିଅଥ । ତୁମ୍ଭେ ପାଣ୍ଡବଙ୍କ ଅଉ
ବର୍ଣ୍ଣି ଗୋ । ଶ୍ରୀମତୀ । ।୬୧।

ରାଧା ଛନ୍ଦ ଏ ରସରେ କହି । ଅତି ଅଦ୍ଭୁତ ଦେଖିଲି
ସହି । ତମାଳ ତରୁ ଛାଡି ଏ କୁନ୍ଦଲତା । ଅନ୍ୟ ପାଦପେ କମ୍ପା
ସେ କେଉ ଗୋ । ସଜନୀ । ।୬୨।

ଶୁଣି କୁନ୍ଦଲତାର ଉତ୍ତର । କୃଷ୍ଣ ତହୁଁ ହୋଇଲେ
ଅନ୍ତର । ସଖୀଗଣ ସଙ୍ଗେ ମୂର୍ତ୍ତି ପୂଜା ସାରି । ରାଧା ପୁରେ
ପ୍ରବେଶ ହଉର ସେ । ହରଷେ । ।୬୩।

କୃଷ୍ଣ ସେଠାରୁ ଗଲେକ ଚଳି । ଯାଇ କାଳୀ ହ୍ରଦ ତଟେ ମିଳି । ଦେଖିଲେ ସମସ୍ତ ଗୋରୁ ଗୋପାଳଙ୍କୁ ଜଳ ପିଇ ପଡ଼ିଛନ୍ତି ଢଳି ସେ । ଅଙ୍କାରେ । ।୬୪।

ଦେଖି କୃଷ୍ଣ ବିକଳିତ ମତି । ଅତି ଉଚ୍ଚେ ରୋଦନ କରନ୍ତି । ଏ ଗୋରୁ ଗୋପାଳେ ମୋ ପ୍ରାଣୁ ଅଧିକ । ଏବେ ହୋଇଲେ ଏଭେ ଅଗତି ହେ । ସୁବଳ । ।୬୫।

ବହୁ ହୋଲନ୍ତି କୃଷ୍ଣଙ୍କୁ ଗହିଁ । ମନ୍ତ୍ର ପଢ଼ିଣ ଦିଅ ଜିଅଇଁ । କୃଷ୍ଣ ମନ୍ତ୍ର ପଢ଼ି ଜଳକୁ ସିଞ୍ଚିଲେ । ସର୍ବେ ଉଠିଲେ ଜୀବନ ପାଇସେ । ସଭୃରେ । ।୬୬।

ଦେଖି ଚକ୍ରବାକୀ କୃଷ୍ଣ ପାଶେ । ଅଧି ବଚନ୍ଦ୍ରେ କହେ ହରଷେ । ମୋର ପତି ବିଷ ଜଳେ ହତ ହେଲେ । ଦିଅ ଜୀବଦାନ କୃପାବଶେ ହେ । ଶ୍ରୀହରି । ।୬୭।

କୃଷ୍ଣ କୋମଳ ହସ ହସନ୍ତି । କେତେ ଦିନ ଥିର କର ମତି । ଅତି ଆନନ୍ଦେ ବହଇବୁ ନଗରେ । ସଙ୍ଗେ ଯେନ ତୋର ପ୍ରାଣ ପତି ଗୋ । କହିଲେ । ।୬୮।

ଯେନ ସଙ୍ଗତେ ଗୋରୁ ଗୋପାଳ । ପୁରେ ପ୍ରବେଶିଲେ ନନ୍ଦବାଳ । ରାଧାକୃଷ୍ଣ ଲୀଳା ପ୍ରବଳ ହେବାରୁ । ଚନ୍ଦ୍ରାବଳୀ ମନରେ ଆକୁଳ ସେ । ଏମନ୍ତ । ।୬୯।

ଦିନେ କୃଷ୍ଣ ସଙ୍ଗତରେ ମିଳି । ଅତି ସ୍ନେହରେ ଚନ୍ଦ୍ରାବଳୀ । ବୋଇଲେ ଶ୍ୱେତ ଗୁଞ୍ଜେ ମୋର ସରଧା । ମୋତେ ଆଣିଦିଅ ବନମାଳୀ ହେ । ମୋହନ । ।୭୦।

ଶୁଣି ଶ୍ରୀକୃଷ୍ଣ ହସନ୍ତି ତହିଁ । ଗୁଞ୍ଜ ଦ୍ୱାଦଶବନରେ ନାହିଁ । ବହୁତ ବନସ୍ତ ହର ମୂ ମାଗନ୍ତେ । ଅତି କଷ୍ଟରେ କହିଲେ ରାଇ ସେ । ଏମନ୍ତେ । ।୭୧।

ଚନ୍ଦ୍ରାବଳୀ ଏମନ୍ତ କହନ୍ତି । ଜଣାଗଲା ତୁମ୍ଭ ତାଙ୍କ
ପ୍ରୀତି । ଗୁଞ୍ଜ ମାତ୍ରକ ମାଗିଲେହେଁ ନ ଦେଲେ । ମିଛେ
କରୁଥା'ଅ କେତେ ସ୍ତୁତି ହେ । ମୋହନ । ।୭୨।

କୃଷ୍ଣ ପୁଣ ଏମନ୍ତ କହିଲେ । ଗୁଞ୍ଜ ଏହି ଘରରୁ ନ
ଦେଲେ । ମୋହର ସ୍ନେହେ ଉତ୍କଣ୍ଠ ରସ ପୂର୍ଣ୍ଣି । ହୃଦୟରୁ
ଅନ୍ତର ନ କଲେ ରେ । ସୁନ୍ଦରୀ । ।୭୩।

ପୁଣି ଶୁଣ ସଖୀ ଏହୁରୀତି । ଶ୍ରୀମତୀଙ୍କ ମୋରେ ଯେଉଁ
ପ୍ରୀତି । ଦର୍ଶନମାତ୍ରେ ନବରତ୍ନ ମାନଙ୍କ । ଜଉଷ୍ଟର ପିଙ୍ଗିଣ
ଦିଅନ୍ତି ରେ । ସୁନ୍ଦରୀ । ।୭୪।

ଚନ୍ଦ୍ରାବଳୀ ବୋଲନ୍ତି ଉତ୍ତର । ଯେହ୍ନୁ ଗୁଞ୍ଜ କେତେକ
ମାତର । ତୁମ୍ଭ ମନକୁ କହୁଛ ବଢାଇ । ତେଣେ ଯେଣ
ପ୍ରେମକୁ ରାଧାର ହେ । ମୋହନ । ।୭୫।

କୃଷ୍ଣ ବୋଇଲେ ଗୁଞ୍ଜ ରୀତିକ । ତୁମ୍ଭେ ପଚାର ବୃନ୍ଦାବ-
ତୀଙ୍କି । ବୋଇଲେ ଚନ୍ଦ୍ରାବଳୀ ବୃନ୍ଦା କହଗୋ । କୃଷ୍ଣ
ରଙ୍ଗୀରୁ ବୃନ୍ଦା ଏତିକ ଯେ । କହନ୍ତି । ।୭୬।

ପୁଣ ରାଧାକୃଷ୍ଣଙ୍କର ଲୀଳା । କୀର୍ତ୍ତି ଜଗତେ ପ୍ରକାଶ
ହେଲା । କ୍ଷୀର ଦଧି ନଧ ହୋଇଲା ଉତ୍ପତ୍ତି । କପିଳାଯ
ତଦନ୍ତେ ହୋଇଲା ଗୋ । ସଜନୀ । ।୭୭।

ପୁଣ ତାରାଗଣ ସୁଧାକର । ଗଙ୍ଗା ଜଗତେ ହେଲେ
ପ୍ରଚାର । ସମସ୍ତ ଶ୍ୱେତଉତ୍ପତ୍ତି ମୂଳ ବୀଜ । ଗୁଞ୍ଜ ଯେଣ
ତତ୍ତରେ ତୁମ୍ଭର ଗୋ । ସୁନ୍ଦରୀ । ।୭୮।

ରାଧାରସ ମାଧୁର୍ଯ୍ୟର ସ୍ଥାନ । ଏସଂସାର ମଧ୍ୟେ ଯେହ୍ନୁ ଧନ୍ୟ ।
ପୁଣି ଚନ୍ଦ୍ରାବଳୀ ଅଭିମାନେ ଶୀଘ୍ର । ନିଜ ପୁରକୁ ଚଳେ
ଗମନ ଯେ । ଚତୁରୀ । ।୭୯।

କୃଷ୍ଣ ପାଦୁକା ନିର୍ମିତ ହେବ । ସର୍ବ ଲକ୍ଷଣ ମାନ ବସ୍ତୁର ।
ପୂର୍ଣ୍ଣ କାନ୍ତନ ଚିହ୍ନ ମାନ ପକାଇ । ଗୁଞ୍ଜ ଆଣିଲେ ହରଣ
ଶ୍ରେଣୀ ଯେ । ଚଭୁଜୀ । ।୮୦।

ଗୁମ୍ଫି ଅଛି ଯତ୍ନେ ହାର ହେବ । ତୋଷେ ଚନ୍ଦ୍ରାବଳୀ
ସହଚରୀ । ହାର ଲମ୍ବାଇ ପଦ୍ମା ରାଧା ପୁରକୁ । ଆସୁ ପଥେ
ଦେଖି ବେଣୁଧାରୀ ଯେ । ଚଉରୀ । ।୮୧।

କୃଷ୍ଣ ପୁଚ୍ଛନ୍ତି ପଦ୍ମା ସଖୀଙ୍କୁ । ଗୁଞ୍ଜ ମିଳିଲା କାହୁଁ ତୁମ୍ଭଙ୍କୁ ।
ସେ କହିଲେ ରାଧା ସଖୀ ଆଣିଥିଲେ । ଦେଇ ଗଲେ
ସ୍ନେହରେ ଆମ୍ଭଙ୍କୁ ଯେ । କହଇ । ।୮୨।

ପଦ୍ମା ପୁଚ୍ଛିଲେ ଶ୍ୟାମସୁନ୍ଦର । ତୁମ୍ଭେ ବସିଛ କିପାଁ ଏଠାର ।
ଶ୍ରୀକୃଷ୍ଣ କହନ୍ତି ଚନ୍ଦ୍ରାବଳୀ ସ୍ନେହେ । ଲେଖିଦେଲେ ସମସ୍ୟା
ଉତ୍ତର ଯେ । ମୋହନ । ।୮୩।

ତେବେ ଶ୍ରୀକୃଷ୍ଣ ସମସ୍ୟା ହାଣି । ରାଧା ପୁରକୁ ଗଲେ ସେ
ଚଳି । ଏଧାଳେ ନର୍ମଦା ନାମେଣ ମାଳୁଣୀ । ଅସି ଶ୍ରୀମତି
ଛାମୁରେ ମିଳଗେ । କହଇ । ।୮୪।

ଅଙ୍ଗରାଗ ପୁଷ୍ପ ହେଜେ ମିଳ । ଚୁନ୍ତ୍ରଯାକ ସେନଗଲେ
ତୋଳ । ପଦଚିହ୍ନ ପଡିଅଛି ମୁଁ ଦେଖିଲି । ନିଷ୍ଟେ ଅଛନ୍ତି
ଶ୍ରୀବନମାଳୀ ଗୋ । ସ୍ନେହଦେବୀ । ।୮୫।

ଏକ ଅରକେ ସଖୀଙ୍କ କହି । ଗୁଞ୍ଜ ମାଗି ଶ୍ରୀକୃଷ୍ଣ ନପାଇ ।
ଶ୍ରେର ବଦ୍ୟାକୁ ଆରମ୍ଭ କଲେ ତେଣୁ । କୃଷ୍ଣ ନଷ୍ଟେ ଜାଣ
ଅନ୍ୟ ନାହିଁ ଗୋ । ସଜନୀ । ।୮୬।

ତାଣ୍ଡଶ୍ରେରା ବଦ୍ୟାଶିକ୍ଷା ଯାଇ । ଗୁଞ୍ଜ ଶ୍ରେରୀ କେତେକ
ମାଉର । ଶ୍ରୀମତୀ ବୋଲନ୍ତି ଗଳ୍ପ ଦେଖିଥିବା । କୃଷ୍ଣ ପାଦ
ପଦ୍ମ ମନୋହର ଗୋ । ବେମନ୍ତ । ।୮୭।

ଶୁଣି ସମସ୍ତେ ବାହାର ହୋଇ । ପୁଷ୍ପ ବନରେ ମିଳିଲେ ଯାଇ । ଗୁଳ୍ମଲତାଙ୍କୁ ବନ୍ଦନ ପ୍ରଶଂସିଲେ । ଲତା ମଧ୍ୟେ ଧନ୍ୟ ଜନ୍ମ ତୁହି ଯେ । ଏମନ୍ତେ । ।୮୮।

ତୋତେ ଯାଇବାର ସାର୍ଥ ହେଲା । କୃଷ୍ଣ ପଦ ଦର୍ଶନ ମିଳିଲା । ଶ୍ରୀମତୀ ଶ୍ରୀଙ୍କରେ ଭରନ୍ତେ ଅଶ୍ରୁପାତ । ପୁଣ୍ୟ ତନୁ ପଲ୍ଲବିତ ହେଲା ଯେ । ସଖୀରେ । ।୮୯।

ଦେଖା ପୁଣ ପଦଚିହ୍ନ କହି । କୃଷ୍ଣ ପଦଚିହ୍ନ ଏ ନୁହଇ । ଲକ୍ଷଣ ମାନଙ୍କ ଅଧମ ହୋଇଛନ୍ତି । ଏଥି ପଦ୍ମ ସଉରଭ ନାହିଁ ଗୋ । ସଜନୀ । ।୯୦।

ପାଦ ପଦ୍ମକୁ ନମିତ କରି । ଚନ୍ଦ୍ରାବଳୀ କହେ କୃଷ୍ଣ ପ୍ରେମୀ । ଜାଣି ପାତାଳ ଗଙ୍ଗାରେ ସ୍ନାନ କରି । ଅଭିପ୍ରବେ-ଶିଲେ ନଗ୍ନ ଧରୀ ସେ । ଚତୁରୀ । ।୯୧।

ଏସମସ୍ତେ ପଦ୍ମା ସଦ୍ୟା ଅଳି । ଅଟି ଶ୍ରୀମତୀଙ୍କ ସ୍ନେହ ମିଳି । କୁଶଳ ପଚାରନ୍ତେ ସେ ସେ କହିଲେ । କୃଷ୍ଣଚନ୍ଦ୍ରାବ-ଳୀଙ୍କର କେଳି ସେ । ହରଷେ । ।୯୨।

ବେଶ ବଦଳାଇ ଅନୁକ୍ଷଣେ । ପୁଣି ବେଶ ଉରଶ୍ଚ ଉକ୍ଷଣେ । ପୁଷ୍ପ ଚନ୍ଦନ ସମ୍ପାଦନେ ଯତନେ । ଅନ୍ତର ନାହିଁ ସଖୀ ଗଣେ ଗୋ । ଶ୍ରୀମତୀ । ।୯୩।

ପୁଣି ପଦ୍ମା ସଦ୍ୟା ତୋଷ ହୋଇ । ଶ୍ରୀମତୀଙ୍କର ସଖୀଙ୍କି ଚାହିଁ । କୁଶଳ ପଚାରନ୍ତେ ଅତି ଯତନେ । ଅନୁରାଧା କହିଲେକ ତହିଁ ସେ । ଏମନ୍ତେ । ।୯୪।

ଯହିଁ ଚିନ୍ତାମଣି ଯେ ପାଷାଣ । ତରୁ ଲତା କଳ୍ପତରୁ ସ୍ୱଚ୍ଛ । ଧେନୁ ସମସ୍ତ କାମଧେନୁ ସମାନ । ପୁଣ ଜିଏ ରାଧା ସ୍ତ୍ରୀ ମୂର୍ଖ ଗୋ । ସଜନୀ । ।୯୫।

କୃଷ୍ଣ ପାଇଁ ମୂର୍ଚ୍ଛଣରେ ରାଧା । ନାମ ଔଷଧ ମହୌଷଧ ରାଧା । ପଦ ଧରନ୍ତେ ଯାବକ ଲିଭଯାନ୍ତେ । ଲେଖି ଦେଖି ହେଉ ଆମ୍ଭେ ଶଙ୍କା ଗୋ । ସଖୀଏ । । ୯୬ ।

କୃଷ୍ଣ ଜଗୟାବନରେ ସଙ୍ଗ । ହେବାରୁ ଯେ ଦେଖନ୍ତି ବିରଙ୍ଗ । ଏହା ଶୁଣି ପଦ୍ମା ସହିତ ଯେ କହିଲେ । ପଥେ ଆସି ଦେଖିଲୁ ଶ୍ରୀରଙ୍ଗ ଗୋ । ସାମାଏ । । ୯୭ ।

ଆମ୍ଭେ ପୂର୍ବରୁ ଶ୍ରୀକୃଷ୍ଣ ଠାରେ । ଦେଇଅଛନ୍ତି ସମର୍ପି ଲିହି । ବୋଇଲେ ରାଧା ସଖୀଙ୍କି ନିକଟେ । ଚନ୍ଦ୍ରାବଳୀ ଠାରେ ଅତି ସ୍ନେହେ ଯେ । ମୋହନ । । ୯୮ ।

ବୋଇଲେ ଲଳିତା କର୍ପୂର ଗୁପତ । ଦେଖିବା ଗୋ ସମସ୍ୟା କେମନ୍ତ । ଲେଖି ବସି ରହେ ମୋ କଙ୍କଣ ରାଧା । ଲେଖା ଦେଖନ୍ତେ ପଡିଲେ ଏମନ୍ତ ସେ । ଚତୁରୀ । । ୯୯ ।

ଅର୍ଥକଲେ ପୂର୍ଣ୍ଣ ବଳୋମନରେ । ଲଭନ୍ତି ରାଧା ପ୍ରଶଂସା ହୃଦରେ । ଦେଖି ସମସ୍ତ ସଙ୍ଗିନୀ ହସି ମୂର୍ଚ୍ଛଣେ । ପଦ୍ମାସହିତଙ୍କୁ କହିଲେ ଧୀରେ ଯେ । ଚତୁରୀ । । ୧୦୦ ।

ଏତ ପ୍ରଶଂସା ଶ୍ରୀମତୀଙ୍କର । ଶୁଣି କହନ୍ତି ଚନ୍ଦ୍ରାବଳୀର । ରାଧା କଙ୍କଣ ମୋହେ ଦେଲେ ବାନ୍ଧିମୁଁ । ଲେଖି ଅଛନ୍ତି ସେ ବଂଶୀଧର ଗୋ । ସାମାଏ । । ୧୦୧ ।

ଏବଚନ ପଦ୍ମ ସହିତ ଶୁଣି । ଲଜ୍ଜା ମାନସ ହୋଇଲେ ପୁଣି । ଲଳିତାଦି ସଖୀ ଦେଖି ପଶ୍ଚାରିଲେ । ସ୍ନେହେ ଚନ୍ଦ୍ରବାହୁଁ ଅଛୁ ଆଣି ଗୋ । ସଜନୀ । । ୧୦୨ ।

ପଦ୍ମା କହିଲେ କୃଷ୍ଣ ଆମ୍ଭରେ । ଦେଇଅଛନ୍ତି ଅତି ସ୍ନେହ-ରେ । ହାର କର ଆମ୍ଭେ ଅଟିହିଁ ଯତନେ । ତେଣୁ ଲମ୍ବାଇଅଛୁ ଗଳାରେ ଗୋ । ସଜନୀ । । ୧୦୩ ।

କଥା ନବୁଝି ପଡ଼ିଲ ସନ୍ଧି । ବୋଲି ଚାଲିଲେ ଯେ ଲାଜ
ପାଇ । କହନ୍ତେ ଚନ୍ଦ୍ରାବଳୀଙ୍କି ସେ ହରଷେ । ଶୁଣି ମାଳଧରେ
ରୋଷ ବଢ଼ିଯେ । ସଜନୀ । ।୧୦୪।

ଶ୍ରୀମତୀ ଯେ ରୋଷଭର ହୋଇ । କୃଷ୍ଣ ପାଶେ ବୃନ୍ଦାଙ୍କୁ
ପଠାଇ । ବୋଇଲେ ଅଜ ଜଣି ଭେଟ ନୋହିବ । ଚନ୍ଦ୍ରାବଳୀ
ଠାରେ ତୁମ୍ଭେ ସ୍ନେହି ହେ । ମୋହନ । ।୧୦୫।

ବୃନ୍ଦାବତୀ ଗଲେ ହୋଇ ରୋଷ । କୃଷ୍ଣ ପୁଚ୍ଛନ୍ତି ରାଧା
ସନ୍ଦେଶ । ତୁମ୍ଭେ ଅଇଲ ଶ୍ରୀମତୀ କାହିଁ ଛନ୍ତି । ଶୁଣି ବୃନ୍ଦା
କହିଲେ ଏ ରଯ ଯେ । ମୋହନ । ।୧୦୬।

ଗୁଞ୍ଜ ଅଣିଲ ତୁମ୍ଭେ ଗୈରାଇ । ଚନ୍ଦ୍ରାବଳୀଙ୍କି ସ୍ନେହରେ
ଦେଇ । ଏବେ ପଚ୍ଛରୁଛ ଶ୍ରୀମତୀ ନଇଲେ । ତୁମ୍ଭ ଚରିତ୍ରକ
ଯଶାପୁ ନାହିଁ ହେ । ମୋହନ । ।୧୦୭।

କୃଷ୍ଣ ପୁଚ୍ଛନ୍ତି ହୋଇ କାତର । ନ ପଠିଲେ କ ସମସ୍ୟା
ମୋର । ବୃନ୍ଦା କହିଲେ ପଠିଣ ବୁଝିଲେଣି । ନ ଆସିବେ
ଶ୍ରୀମତୀ ଏଥର ହେ । ମୋହନ । ।୧୦୮।

କୃଷ୍ଣ ବୋଲନ୍ତି ଦୋଷ ନଦେଖି । ରୋଷକଲେ ଯେବେ
ପ୍ରାଣସଖୀ । କାଳନ୍ଦୀରେ ଝାସ ଦେଇ ପୁଣି ଅମ୍ଭେ । ଲୁଚ
ଶମ୍ଭୁ ଛୁଇଁ ହେବୁ ସୁଖୀ ଗୋ । ସଜନୀ । ।୧୦୯।

କୃଷ୍ଣ କହନ୍ତେ ଏମନ୍ତ ବାଣୀ । ଅତି ଅନନ୍ଦ କାଳନ୍ଦୀ
ଶୁଣି । ତରୁ ଲତା ତଳେ ପୁଷ୍ପ ବରଷନ୍ତି । ପକ୍ଷୀ ଭାଷନ୍ତି
ମଧୁର ବାଣୀ । ହରଷେ । ।୧୧୦।

କୃଷ୍ଣ ଦେଖି ମନେ ବିଗ୍ରରନ୍ତି । ଏତ ହୋଇଛି ଅଦ୍ଭୁତ
ରୀତି । ମୋର ଦୁଃଖ ଜାଣେ ଏ ଶୁଭ ନୂତନ । କପାଁ ତରୁ
ଲତା ପ୍ରକାଶନ୍ତି ହେ । ଏମନ୍ତେ । ।୧୧୧।

ଚନ୍ଦ୍ରାବଳୀ ସଙ୍ଗିନୀ ଏକାଳେ । କରେ ଧେନି ସୁନ୍ଦର ଉପାଳେ । ଶ୍ରୀକୃଷ୍ଣ ଛାମୁରେ ସମର୍ପିଲା ନେଇଁ । ବିସ୍ମୟେ ଘେନି ଏମନ୍ତ କହିଲେ ଯେ । ମୋହନ । । ୯୧୨ ।

କାଲି ବୁଝିବା ବୋଲି ଶ୍ରୀହରି । ସଖା ସଙ୍ଗେ ସେଠାରୁ ବାହାରି । ମଧୁମଙ୍ଗଳ ସୁବଳଙ୍କୁ ପୁଚ୍ଛନ୍ତି । କିପାଁ ଉମାନ ସେବେ ସୁନ୍ଦରୀ ଯେ । ସଖାଏ । । ୧୧୩ ।

ଶୁଣି ମଧୁମଙ୍ଗଳ କହନ୍ତି । ପେଷିଛନ୍ତି ମନେ ଏହା ଚିନ୍ତି । ଶ୍ରୀମତୀଙ୍କଠାରେ ବାହାର ମାଧୁର୍ଯ୍ୟ । ଅନ୍ୟଠାରେ କର୍କଶ ବହନ୍ତି ଯେ । ଏମନ୍ତ । । ୧୧୪ ।

ପୁଣି ସୁବଳ ଉତ୍ତର କହନ୍ତି । ଶୁଣ କାମିନୀ ମାନଙ୍କ ରୀତି । କାନ୍ତ ବସନ୍ତି ଦେଖିଲେ ମାନବଙ୍କେ । ବସ୍ତୁ ଭୂଷଣେ ସନ୍ତୋଷ ମତି ଯେ । ମୋହନ । । ୧୧୫ ।

ଏମନ୍ତରେ ଅସ୍ତ ଦିନ-ଈଶ । ଦେଖି ଶ୍ରୀକୃଷ୍ଣ ଘରେ ପ୍ରବେଶ । ରାଧା ଅଟ୍ଟାଳ ଅରୋହିଣ ଗୃହିଁଲେ । ସ୍ୱଚ୍ଛେ ଜଦେଖି ମନ ହରଷ ଯେ । ଶ୍ରୀମତୀ । । ୧୧୬

ଏସମୟେ ନାନ୍ଦିମୁଖୀ ଆସି । ଶ୍ରୀମତୀଙ୍କ ଛାମୁରେ ପ୍ରବେଶି । ବୋଇଲେ ଏଶ୍ୟାମ ମୋହନ ଅଞ୍ଜନ । ପେଷିଅଛନ୍ତି ଯେ ପୌର୍ଣ୍ଣମାସୀ ଗୋ । ଶ୍ରୀମତୀ । । ୧୧୭ ।

ଅତି ଦୂରେ ଥିଲା ଦ୍ରବ୍ୟ ଅସି । ସମୀପରେ ଥିଲା ପ୍ରାୟେ ଦିଶି । ଜଗତ ନେତ୍ର ସମ୍ମୋହନ କାରଣ । ଶୁଣି ଶ୍ରୀମତୀ ପରମ ତୋଷି ଯେ । ଏମନ୍ତେ । । ୧୧୮ ।

ବଶାଖା ଯେ ଅତି ହରଷରେ । ଘେନି ଅନାମିକା ଅଙ୍ଗୁଳରେ । ଶ୍ରୀମତୀ ନେତ୍ରେ ରଞ୍ଜନ୍ତେ ଯେ ଗୃହିଁଲେ । ଶ୍ୟାମମୂର୍ତ୍ତି ଗୋପାଳ ମେଳରେ ଯେ । ସୁନ୍ଦରୀ । ୧୧୯ ।

ତେବେ ମାଷାଡ଼ ନବମଦନ । ଦେଖି ହରଇ ମନ ନୟନ । ପଞ୍ଚଶାସ୍ତ୍ର ବାଧନ୍ତେ ଅଙ୍ଗ ଅସି । କମ୍ପୁ କମ୍ପୁ ହୋଇଲେ ଅଜ୍ଞାନ ସେ । ଶ୍ରୀମତୀ । ।୧୨୦।

କୃଷ୍ଣ ମନ୍ଦିରେ ହେଲେ ପ୍ରବେଶ । ଦେଖି ଜନନୀ ଅତି ହରଷ । ଏକାଳେ ପ୍ରବେଶ ହୋଇଲାକ ଅସି । ନନ୍ଦ ସମ୍ମୁଖରେ କଂସ ଆଦେଶ ସେ । ଏମନ୍ତେ । ।୧୨୧।

ନନ୍ଦ ଅଗ୍ରତେ କହିଲା ଚର । ଦେବ କମଳ ସହସ୍ରେ ଘର । ଏକଥାରେ ହେଲା କଲେ ତୁମ୍ଭେ ନଷ୍ଟେ । ନାଶ ଯିବଟ ମୋବୋଲ କରହେ । ରାଜନ । ।୧୨୨।

ଶୁଣି ଚର ଉକ୍ତି ଏବଚନ । ନନ୍ଦ ଅଛିହିଁ କାତରମନ । ବଶୁରଇ ମୁଖେ କବୁଛି କରବ । ପୁଣି ବୋଲଇ ଚର ଏସନ ସେ । ଡଗର । ।୧୨୩।

ତୁମ୍ଭ ପୁତ୍ରେ କେତେ କେତେ ବୀର- । ମାତ୍ର ଗୋପରେ ହୋଲାନ୍ତି ଶୂର । ସହସ୍ରେ ଘର ପଦ୍ମ ଦେବାକୁ ତୁମ୍ଭେ । ଢର୍ପା କଣ୍ଠୁ ଅଛ ମନର ହେ । ରାଜନ । ।୧୨୪।

ଏମନ୍ତରେ ସମସ୍ତେ କାତର । କେ ବୋଲଇ ଘର ଛେଦା କର । ବସୁ ନନ୍ଦ ବୋଲେ ସମସ୍ତେ ଅସୁର । ଏଥି କେହିତ ନାହାନ୍ତି ପର ହେ । ବଣ୍ଟୁର । ।୧୨୫।

କେ ବୋଲଇ ବନ୍ଦିବା କାଳୀସ୍ତୁ । କେ ବୋଲଇ ବଳ ଘେନା ଦିଅ । କେ ବୋଲଇ ଅମ୍ଭ କୃଷ୍ଣ ବଳଅର । ତୁମ୍ଭେ ମନରେ ଭୟ ନ ପାଅ ହେ । ଏମନ୍ତେ । ।୧୨୬।

କହୁଥିଲେ ନନ୍ଦ ଏହା କହି । ତୁଯେ ଘୋଷଣା ପୁରେ ଦିଅଇ । କହିବୁ ଘରକେ ଜଣେ ପ୍ରଭାତରେ । କାଳୀହ୍ରଦରେ ମିଳବେ ଯାଇ ସେ । ଏମନ୍ତେ । ।୧୨୭।

ଶୁଣି ଘୋଷଣାକୁ ପ୍ରଜାଜନେ । ବର୍ଣ୍ଣନ୍ତି ଏକେ ଏକେ
ମନେ । ଦୁର୍ଗାବଚନ ମର୍ଦ୍ଦି ମଲ୍ଲ ମାରଣ । ଶୁଣି କଂସ କ୍ରୋଧ
ହେଲା ମନେ ସେ । ଏମନ୍ତେ । ।୧୨୮।
ବୋଲନ୍ତି ସେ ନନ୍ଦସୁତ ଲାଗି । ଅମ୍ଭେ ହୋଇଲାଉଁ ଦୁଃଖ
ଭାଗୀ । ରାଜଦ୍ରୋହୀ ପାଶେ ରହି ନ ଯୋଗାଇ । ଗ୍ରାମପମସ୍ତେ
ରାତ୍ରରେ ଜାଗି ସେ । ସେକାଳେ । ।୧୨୯।
ବେନ ସଖା ସଙ୍ଗେ ଘେନ କରୁ । ପୁରେ ପୁରେ ଭ୍ରମନ୍ତି
ଶ୍ରୀହରି । ଶୁଣି ଏମନ୍ତ ନଗ୍ର ଜନ ବଚନ । କାଲି ବୁଝିବା
ବୋଲି ବର୍ଣ୍ଣର ସେ । ଶ୍ରୀହରି । ।୧୩୦।
କେ ବୋଲଇ ନୋହେ ଅଘାସୁର । ଗାଲୁ ଫୋଡ଼ି
ହୋଇଲେ ବାହାର । ଏ କାଳୀ ଦେବ ଦାନବରେ ଅଜସ୍ର ।
କେହି ନାଣିବ ନନ୍ଦକୁମର ସେ । ଏମନ୍ତେ । ।୧୩୧।
ପୁରେ ପ୍ରବେଶି ନନ୍ଦନନ୍ଦନ । ପଲଙ୍କରେ କଲେକ
ଶୟନ । ନିଦ୍ରା ନ ଆସଇ ପଙ୍କଜ ନୟନେ । ଏସମୟେ
ନିଶା ଅବସାନ ସେ । ଏମନ୍ତେ । ।୧୩୨।
ଗୋରୁ ଗୋପାଳଙ୍କୁ ଘେନ ସଙ୍ଗେ । ବୃନ୍ଦାବନକୁ ଗମନ
ରଙ୍ଗେ । କଦମ୍ବତଳେ ବସିଣ ବର୍ଣ୍ଣରନ୍ତି । ବହୁରବ ।
କାଳନ୍ଦୀର ସଙ୍ଗେ ସେ । ମୋହନ । ।୧୩୩।
ଷଷ୍ଠମରେ ଏ ଅଟେ ବିଶ୍ରାମ । ଧ୍ୟାନକର ନବଘନଶ୍ୟାମ ।
ଜଗନ୍ନାଥ ନାରାୟଣ ଦେବ କହେ । ଘେନ ଜନେ ହୋଇ
ଅତି ପ୍ରେମ ହେ । ଏରସ । ।୧୩୪।

ବିଶ୍ରାମ ଷଷ୍ଠମ ପ୍ରକାଶ ।

କହ ସଖାଙ୍କ ସଙ୍ଗେ ବର୍ଣ୍ଣର । ନଦେଖିବ ମୁଁ ପଦୁ କେତେ
ଦୂର । ବୋଲି କଦମ୍ବକୁ ପ୍ରଦକ୍ଷିଣ କରି । ଶିଖେ ଉଠିଲେକ
ଦାମୋଦର ସେ । ଦେଖିଲେ । ।୧୩୫।

ସଖୀଗଣଙ୍କ ସଙ୍ଗତେ ସେନ । ସୂର୍ଯ୍ୟ ପୂଜାକୁ ଆଗନ୍ତୁ ଯନା । କୃଷ୍ଣଙ୍କ ଅନୁରାଗ ପୁଷ୍ପ ତୋଳନ୍ତି । ବନେ ପଶି ସକଳ କାମିନୀ ସେ । ଦେଖିଲେ । ।୧୩୬।

ତେବେଣେ ସଖୀସଙ୍ଗେ ଚନ୍ଦ୍ରାବଳୀ । ଅସି ଗଉରୀ ସ୍ଥର୍ଥରେ ମିଳ । ଗୋପ ନଗର ନାରୀ ଯୂଥ ଯୂଥ ହୋଇ । ଅସ୍ୱଂ ଦେଖିଲେ ଶ୍ରୀବନମାଳୀ ସେ । ହରଷେ । ।୧୩୭।

ତେବେ ଆକାଶେ ଏମନ୍ତ କହି । ଦିଅ କାଳୀ ଏଥୁଁ ଯଉଡ଼ାର । ଶୁଣିଣ ଶ୍ରୀକୃଷ୍ଣ ଅତିଉତ୍ସୁବତେ । କାଳନ୍ଦୀ ମଝେ ପଡ଼ିଲେ ଡେଇଁ ସେ । ଶ୍ରୀହରି । ।୧୩୮।

କାଳନ୍ଦୀ ଜଳ ଊର୍ଦ୍ଧ୍ୱକୁ ଉଠି । ବିଷ ଜ୍ୱାଳ ଚଉଦିଗେ ଘୋଟି । ପ୍ରଳୟ କାଳ ଅନଳପ୍ରାୟ ହୋଇ । ଖଗ ମୃଗ ମୂର୍ଚ୍ଛ ଯାଇ ଲୋଟି ସେ । ଭୂମିରେ । ।୧୩୯।

ଅତି କାତରେ ଗୋରୁ ଗୋପାଳେ । ଯାଇ ରହିଲେ କଦମ୍ବ ମୂଳେ । ପୂର୍ବେ ଗରୁଡ଼ ଅମୃତ ରଖିଥିଲେ । ତେଣୁ କଦମ୍ବ ନାଶ ନୋହିଲେ ସେ । ସେକାଳେ । ।୧୪୦।

ଗୋରୁ ଗୋପାଳେ କୃଷ୍ଣ ବଦନ । ନ ଦେଖି ଯେ କରନ୍ତି ରୋଦନ । ଅହେ ନବୀନ ଶ୍ୟାମଘନ ସୁନ୍ଦର । ବାରେ ଆମ୍ଭଙ୍କୁ ଦିଅ ଦର୍ଶନ ହେ । ମୋହନ । ।୧୪୧।

ଯେବେ ନଦେଖିବୁ ତୁମ୍ଭ ମୁଖ । ଜୀବନରେ ଆମ୍ଭ କେଉଁ ସୁଖ । କେମନ୍ତେ ବଞ୍ଚିବୁ ଗୋପପୁରେ ଆମ୍ଭେ । ଅଜଠାରୁ ହୋଇଲୁ ନରେଖ ହେ । ମୋହନ । ।୧୪୨।

ବୃନ୍ଦାବନେ ତୁମ୍ଭ ସଙ୍ଗେ ମିଳ । ନାନାରଙ୍ଗେ କରୁଥାଉଁ କେଳି । କପାଇଁ ଅନାଥ କରିଣ ଆମ୍ଭଙ୍କୁ । ତୁମ୍ଭେ ଛାଡ଼ିଗଲ ବନମାଳୀ ହେ । ମୋହନ । ।୧୪୩।

ଗୋଲୁମାନେ ଯେ ସ୍ତବ୍ଧ ହୋଇ । ନେତ୍ରୁ ଲୋତକ ମାନ ବହାଇ । ଉର୍ଦ୍ଧ୍ୱମୁଖହୋଇ ଅଛନ୍ତି ହୁଅନ୍ତି । ପୁଣ ଯମୁନାକୁ ଗହିଁ ଯେ । ଗୋଲୁକେ । । ୧୪୪ ।

ଦେଖି ଗୋପରେ ନାନା ଉତ୍ପାତ । ନନ୍ଦ ଯଶୋଦା ଆଦି ସମସ୍ତ । କୃଷ୍ଣ ନଦେଖି କାଳନ୍ଦୀ କୂଳେ ଯାଇ । ଛାନିହୋଇ ହେଲେ ଭୂମିଗତ ଯେ । ଯଶୋଦା । । ୧୪୫ ।

ଧୂଣି ହୋଲନ୍ତି ଶ୍ୟାମସୁନ୍ଦର । ବାରେ ଦେଖାଅ ବଦନ ତୋର । ତୁ ମୋର ଏକାନନ୍ଦନ ମୋତେ ଛାଡ଼ି । କର୍ପା ହୋଇଲୁ ଏବେ ଅନ୍ତରରେ । କୁମର । । ୧୪୬ ।

ଅହା ଶ୍ୟାମଳ ତମାଳ ତନୁ । ତୁଯେ ପାସୋର ନଯାଉ ମନୁ । ଦ୍ୱାରେ ଥାଇ ମୁ ଦେଖୁଥାଇ ହରଷେ । ଚଳ ଚଳ ଅସୁଥାଉ ବନୁ ରେ । କୁମର । । ୧୪୭ ।

କାହା କରେ ମୁ ଘର ଲବଣି । ଖଣ୍ଡାରେ ମୁ ଆଉ ଦେବ ଅଣି । କେଉଁ ହେତୁରୁ ବୁଝି ଏବେ ନିରାଶ । ମୋତେ ଛାଡ଼ିଗଲୁ ବେନୁପାଣୀ ରେ । କୁମର । । ୧୪୮ ।

କହବଢ ମୁ ନ ଦିଶେ ବୁଦ୍ଧି । ଡେଇଁ ପଡ଼ିବ କାଳନ୍ଦୀ ନଦୀ । ଏ ମୋର ପ୍ରାଣ କଯାଉ କର୍ପାଅଛୁ । ବୋଲୁ ଗୋପୀ କହନ୍ତି ପ୍ରବୋଧି ଯେ । ଏମନ୍ତେ । । ୧୪୯ ।

ଦେଖ ଯଶୋଦା କୃଷ୍ଣ ମୂରତି । ପ୍ରକାଶିତ ହୋଏ ଅଙ୍ଗ କାନ୍ତି । ଖାଲେନ୍ଦୀବର ନସ୍ୱଳ ପଦ୍ମମୁଖ । ପୀତବାସେ ଶୋଭା ଦିଶେ ଅତି ଗୋ । ଯଶୋଦା । । ୧୫୦ ।

କୋକନଦ ଶୋଭା ଚରଣ । ନଖ କଣ୍ଠାଇ ଦିଶେ ମଞ୍ଜୁଳ । ବାଳ ଶରବାଳ ଅତି ମନୋହର । ଦେଖ ସୁନ୍ଦର ଭୁଜ ମୃଣାଳ ଗୋ । ଯଶୋଦେ । । ୧୫୧ ।

ବଳରାମ ଉରେ କର ଚଢ଼ି । ପୁଣି ଅବନୀ ଉପରେ ପଡ଼ି । କରନ୍ତି ରୋଦନ ଅହା ଶ୍ୟାମଧନ । ଭୁଯେ ଗଲୁ କାହାଁ ମୋତେ ଛାଡ଼ି ରେ । ପାନୁଙ୍କ । ।୧୫୨।

ମୋର ପଦ୍ମମୁଖ ବାରେ ଦେଖା । ତୋର ବିନୁ କେ ଅଛି ମୋ ସଖା । ଅହା ପୀତବାସ ତୋହରେ ମୋ ଆଶ । ଯେତେ କହିଲେ ନୂହଇ ଲେଖା ରେ । ପାନୁଙ୍କ । ।୧୫୩।

ନନ୍ଦ ଉପନନ୍ଦ ଆଦି ମିଳି । ତହିଁ ଉଠେ ଦିଅନ୍ତି ବଡ଼ାଳ । ଆମ୍ଭ ନିସ୍ତାରକ ଗୋପ ଉଦ୍ଧାରକ । କାହାଁ ଛାଡ଼ି ଗଲ ବନମାଳୀ ହେ । ଶ୍ରୀଦାମ । ।୧୫୪।

ଶୁଣି ଚନ୍ଦ୍ରାବଳୀ ହୋଇ ଦୁଃଖୀଆ ବଡ ରୋଦନ ପଦ୍ମାଙ୍କୁ ଦେଖି । କହନ୍ତି ଲଗାଇ କାଲି ପେଶିବାରୁ । ଶ୍ୟାମଚନ୍ଦ୍ର ଜୀବନ ଉପେକ୍ଷି ଗୋ । ସଜନୀ । ।୧୫୫।

କେବଳ ମୁଁ ଧରିବ ଜୀବନ । ମୋତେ ତେଜିଲେ ପଦ୍ମନୟନ । କରୁଣାନିଧି ଅକରୁଣା କଲେ ଗୋ । ବୋଲି ଉଚ୍ଚେ କରନ୍ତି ରୋଦନ ସେ । ଚତୁରୀ । ।୧୫୬।

ଶୁଣି ଶ୍ରୀମତୀ ଅତି ବିକଳ । ନୟନରୁ ବହେ ଅଶ୍ରୁଜଳ । କାଲି ନିଷ୍ଠୁର ଶୁଣି ମୋ ପ୍ରାଣବନ୍ଧୁ । ଅଙ୍ଗ ପଡ଼ିଲେ କାଳନ୍ଦୀ ଜଳ ଗୋ । ସଜନୀ । ।୧୫୭।

ଅହା ମୋହର ପରାଣନାଥ । ମୋତେ କରିଗଲ ଯେ ଅନାଥ । ନକଲି ଦର୍ଶନ ସୁନ୍ଦର ବଦନ । ବୋଲି ହୋଇଲେ ସେ ମୂର୍ଚ୍ଛାଗତ ଯେ । ଶ୍ରୀମତୀ । ।୧୫୮।

ଶୁଣି ସଖୀଏ କାତର ହୋଇ । ଦେଖିଲେ ଯେ ଦେହେ ଜ୍ଞାନ ନାହିଁ । କର ସଶବ୍ଦ ସବୁ ସଖୀ ଅଛୁନ୍ତେ । ପୁଣି ନାସାରେ ତୁଳାକୁ ଦେଇ ଯେ । ଦେଖନ୍ତି । ।୧୫୯।

ଶୋକେ ସଖୀ ଏମନ୍ତ ଭାଷନ୍ତି । ଦେଖ ଚମ୍ପକ ପରେ ବସନ୍ତି । ଶ୍ରୀକୃଷ୍ଣ ଅସି ମିଳିଲେ ବୋଲି ବାସେଇ । ଯାଇଣ ଚରଣ ମୂଳେ ବନ୍ଦନ୍ତି ଯେ । କିଶୋରୀ । ।୧୬୦।

ଶୁଣି ସତ୍ବରେ ଚେତି ଉଠିଲେ । ଦେଖି ସଙ୍ଗମ ଏହା କହିଲେ । କାଳନ୍ଦୀ କୂଳେ ଚଳଏ କରନ୍ତି । ଗଲେ ଦର୍ଶନ କରିବା ଭଲେ ଯେ । ଶ୍ରୀମତୀ । ।୧୬୧।

ସଖୀଙ୍କରେ କର ଭର ଦେଇ । ହେଲେ କାଳନ୍ଦୀ କୂଳରେ ଯାଇ । ଦେଖିଲେ ଶ୍ରୀକୃଷ୍ଣ ଜଳେ ନ ଦିଶନ୍ତି । ସର୍ବେ ରହିଲେ ସ୍ତମ୍ଭିତ ହୋଇ ଯେ । ଏମନ୍ତ । ।୧୬୨।

ନନ୍ଦ ବିଷବୈଦ୍ୟଙ୍କୁ ଡକାଇ । ମନ୍ତ୍ର ଯନ୍ତ୍ର ଔଷଧ କରାଇ । ଏକାଳେ ଶ୍ରୀକୃଷ୍ଣ ପଦ୍ମବନେ ପଶି । ମୃତମାନଙ୍କ ପରାୟେ ହୋଇ ଯେ । ଶ୍ରୀହରି । ।୧୬୩।

ପଦ୍ମ ତୋଳି ଫିଙ୍ଗନ୍ତି ଶ୍ରୀକରେ । ଯେଯେ ପଡ଼ି ନଦୀପ୍ରବାହରେ । ଦେଖି ସର୍ପଗଣ ଅତିରୋଷ ଭରେ । ଆସି ମିଳିଲେ କୃଷ୍ଣ ପାଶରେ ଯେ । ଏକାଳେ । ।୧୬୪।

କୃଷ୍ଣ କରେ ଯେବେ ପଦ୍ମନାଳ । ପେଟ ନାଶକଲେ ସର୍ପକୁଳ । ଶଙ୍ଖଚୂଡ଼ ମଣିଚୂଡ଼ ସେନାପତି । ରୋଷେ ପ୍ରବେଶ ହେଲେ ତତ୍କାଳ ଯେ । ଏମନ୍ତେ । ।୧୬୫।

ପାଦ ପଦ୍ମରେ ଦଂଶିଲେ ଯାଇ । ଦନ୍ତଭଗ୍ନେ ରୁଧିର ବହଇ । କରେ ଧରି କୃଷ୍ଣ ମୃଣାଳ ପରାୟେ । ମେଡ଼ି ବାହାରକୁ ଫିଙ୍ଗି ଦେଇ ଯେ । ଶ୍ରୀହରି । ।୧୬୬।

ଏହାଶୁଣି ଅତି କ୍ରୋଧଭରେ । କାଳୀୟହ୍ରଦେ ଧାଇଁଲା ସତ୍ବରେ । ଅଗେ ନାଗବାଳୀ ଓଗାଳି କହଇ । ସ୍ୱାମୀ କୋପକୁ ଏବେ ସମ୍ବରହେ । ହେ ନାଥ । ।୧୬୭।

ଏଯେ ସାକ୍ଷାତ ବ୍ରହ୍ମାଣ୍ଡପତି । ମସ୍ତେ ହୋଇଅଛନ୍ତି ଉତ୍ପତ୍ତି ।
କଂସ ଆଦିରେ ଯେତେ ଦୁଷ୍ଟ ଅଛନ୍ତି । ନାଶି ଉଦ୍ଧାର କରିବେ
କ୍ଷିତିହେ । ସ୍ୱେନାଥ । ।୧୬୮।

ମୂର୍ଖ କହୁଛୁ ମୋ ବୋଲ କର । ସ୍ଥାନ ମାଗ ଯିବା ଅନ
ପୁର । ବିଷ ଜଳରେ ସମସ୍ତେ ସନ୍ତାପିତ । କୃଷ୍ଣ କରିବେ
ଏଥି ବିହାର ହେ । ସ୍ୱେନାଥ । ।୧୬୯।

ଏ ଶୁଣି ସେ ଅତି କ୍ରୋଧଭରେ । ଫୁଂ ଫୁଂକାର କରଇ
ବାହାରେ । ପ୍ରଳୟ କାଳ ଅନଳକୁ ଲିଭାଇ । ହୋଏ ନଷ୍ଟ
ତୁଷାରବନ୍ଦୁରେ ସେ । ଏମନ୍ତେ । ।୧୭୦।

କ୍ରୋଧେ ଗର୍ଜନ କରଣ ଧାଁଏ । ଜଳ ଉର୍ଦ୍ଧ୍ୱେ ଉଚ୍ଛୁଳିତ
ହୋଏ । ବୋଲଇ କେ ଅଛି କାଳୀହ୍ରଦେ ପଶି । ଲେଶେ
ନପାଇ ଚଣ୍ଡରେ ବସେ ଯେ । ବୋଲଇ । ।୧୭୧।

ମୋତେ ଡରନ୍ତି ଯେ ଦେବାସୁର । କେତେ ଭରଷା
ଅଛଇ ତୋର । କୃଷ୍ଣ ବୋଲନ୍ତି ମାରୁଛୁ ଅମ୍ଭେ ତୋତେ ।
ଦିଅ କମଳ ସହସ୍ରେ ଘାରିହେ । କାଳୀୟ । ।୧୭୨।

କ୍ରୋଧେ କାଳୀୟ ଏସନ ଶୁଣି । ନନ୍ଦ ଗଉଡ଼ର ପୁଅ
ଅଛି । ମୋର ଅଗରେ ଏରୂପେ କହୁଅଛୁ । ମୋର ଅଶ୍ରବ୍ୟ
ହୋଇଲା ଅଛି ଯେ । ଏକାଳେ । ।୧୭୩।

କୋପେ ସହସ୍ରଫଣାକୁ ତୋଳି । ପାଦପଦ୍ମରେ ଦଂଶିଲା
କାଳୀ । ଅତିହିଁ ପ୍ରଚଣ୍ଡ ଅନଳ ପରାଏ । ବିଷ ଉର୍ଦ୍ଧ୍ୱକୁ
ଉଠିଲା ଜଳ ସେ । ଏମନ୍ତେ । ।୧୭୪।

ଅଙ୍ଗ ନୀଳଗିରିଙ୍କ ସାକ୍ଷାତ । କଲା ଛବା କାକ ଚଞ୍ଚୁ
ଘାତ । ଦନ୍ତ ଭଗ୍ନ ହୋଇ ସହସ୍ରେ ବଦନୁ । ନିରନ୍ତରେ
ବହଇ ଶୋଣିତ ଯେ । କାଳୀୟ । ।୧୭୫।

ପୁଣି ଅଙ୍ଗେ ଦଂଶନ୍ତେ ବହନ । ଅଙ୍ଗ ଛାଡ଼ିଦେଲେ ଶ୍ୟାମଘନ । ଚଳ ପଡ଼ନ୍ତେ ଲାଗିଲେ ସେ ମାରିଲେ । କ୍ରୋଧେ ହେବ ଯାଇଁକା ବଦନ ସେ । କାଳୀୟ । ୧୭୬ ।

ଦେଖି ଗୃପତେ ମାରିଲେ ହାତ । କାଳୀ ଘାରେ ପାଇ ଜ୍ଞାନ ହାତ । ପୁଣି ଗର୍ଜ୍ଜି ପୁଚ୍ଛରେ ବେଢ଼ାଇଲା । ପଦ୍ମପାଦ-ତଳ ଛଣ୍ଡି ଗଲ ସେ । କାଳୀୟ । । ୧୭୭ ।

ରହିଲାକ ମୁଣ୍ଡେ ଫଣା ଦେଇ । କୃଷ୍ଣ ହେଲେକ ଅନନ୍ତ ଶାୟୀ । ଏକାଳେ ଅସ୍ତ୍ରକୁ ଦେଖି ଦେବଗଣ । ଆକାଶରେ ବସ୍ତ୍ରାନ୍ତ ରହି ସେ । ବହରେ । । ୧୭୮ ।

ଛଳେ ବିଷ ରୁଧିର ପ୍ରବଳ । ଦୃଷ୍ଟି ଦୃଷ୍ଟରୁ ସବେ ଆକୁଳ । କୂଳରେ ଥାଇ ସେ ରୋଦନ କରନ୍ତି । ତନ୍ତ୍ର ଶ୍ୟାମଳ ତନୁ ମଣ୍ଡଳ ସେ । ବହରେ । । ୧୭୯ ।

କୃଷ୍ଣ ଜାଣି ସମସ୍ତ ଆକୁଳ । ତନୁ ହୋଇଲେ ଅତି ପୃଥୁଳ । କାଳୀୟ ବେଢ଼ି ନପାରି ଶଙ୍କା ସୁଜି । ହୋଇଗଲା ଅତ୍ୟନ୍ତ ଦୁର୍ବଳ ସେ । କାଳୀୟ । । ୧୮୦ ।

କୃଷ୍ଣ ଅଗ୍ରବତ ତାର ଗୃହିଁ । ଫଣା ଉପରେ ଉଠିଲେ ଯାଇ । ଲାଞ୍ଛନକୁ ଶ୍ରୀକରେ ଧରି ଛିଦ୍ରଙ୍କରେ । ଅତିଅନନ୍ଦେ ନର୍ତ୍ତନ କହି ସେ । ଶ୍ରୀହରି । । ୧୮୧ ।

ହବ ନାଳଗିରି ଶିଖେ ହେବ । ନୃତ୍ୟ ଅନୁମୃତ ପୁଚ୍ଛ ଛେବ । ଏ ଶୋଭା ଦେଖି ସମସ୍ତ ଗୋପ ଲୋକେ । ଏହି ଉପମାକୁ ଉପଲକ୍ଷି ସେ । ସମସ୍ତେ । । ୧୮୨ ।

ଏହା ଦେଖି ନାଗନାରୀ ଆସି । କୃଷ୍ଣ ବଦନ ହତନ ଘଷି । ଅଜ୍ଞାନ ଜୀବ ଏ ଗୋଚ୍ଛିଁ ନଜାଣେ । କୃପା କରନ୍ତୁ କରୁଣାରାଶି ହେ । ଶ୍ରୀହରି । । ୧୮୩ ।

ପତିଦାନ ବେଗେ ମୋତେ ଦିଅ । ଦିବ୍ୟଚକ୍ଷେ କରୁଣାକୁ ବହ । ଏଥୁଁ ଯାଇଣ କେଉଁଠାରେ ରହିବୁ । ସ୍ଥାନ ନିର୍ଣ୍ଣିୟ ଅମ୍ଭଙ୍କୁ କହିବେ । ଶ୍ରୀହରି । ।୧୮୪।

ଏତେବୋଲି ଅଣି ମଣି ହାର । ଲମ୍ବାଇଲା ଶ୍ରୀକୃଷ୍ଣ ଗଳାର । ଅତି ଆନନ୍ଦେ ଶଙ୍କରାଭରଣକୁ । କୃଷ୍ଣ ଆଳାପ କଲେ ଚତୁର ସେ । କାଳିରେ । ।୧୮୫।

ଶୁଣି ମହେଶ ଆନନ୍ଦହୋଇ । କଲେ ଅମୃତ ବୃଷ୍ଟିତ ତହିଁ । ସର୍ପ ମୃଗ ପକ୍ଷୀ ଯେତେ ମଲଥିଲେ । ଶୀଘ୍ରେ ଉଠିଲେ ସଚେତ ହୋଇ ସେ । ସେକାଳେ । ।୧୮୬।

ଚନ୍ଦ୍ରବାଳକିଁ ପାଇଲା ପ୍ରାଣ । ଜଳ ହେଲା ଅମୃତ ସମାନ । ଶ୍ରୀମତୀ ଶ୍ୟାମ ମୋହନ ଅଞ୍ଜନକୁ । ନେତ୍ରେ ଲଗାଇ କଲେ ଲୋଚନ ସେ । ଏମନ୍ତେ । ।୧୮୭।

ଶ୍ୟାମ ମୂରତି କଲେ ଦର୍ଶନ । ରାଧା ସଙ୍ଗେ ବହୁଭବା ମନ । ଫଣା ଉପରେ ଅଙ୍ଗ ଭଙ୍ଗି କରିଣ । ଠାରି କହନ୍ତି ପଦ୍ମନୟନ ସେ । ଏଅନ୍ତେ । ।୧୮୮।

କାଳୀ ବୋଲେ ପତିତପାବନ । ମୁହିଁ ଦୁଷ୍ଟ ସ୍ୱଭାବେ ଅଜ୍ଞାନ । ମୋର ଅପରାଧ ଦିବ୍ୟଚକ୍ଷେ ନ ଧର । କ୍ଷମା କର କରୁଣା ନିଧାନ ହେ । ଶ୍ରୀହରି । ।୧୮୯।

ତୁମ୍ଭ ପଦଚିହ୍ନ ଶିରେ ଧରି । ହେଲି ଗରୁଡ ଭୟରୁ ପାରି । ଏବେ ମୁଁ କେଉଁ ଠାରେ ଯାଇ ରହିବି । ଆଜ୍ଞା ଦିଅ ଚରଣରେ ବନ୍ଦୁଛି ହେ । ଶ୍ରୀହରି । ।୧୯୦।

ଆଜ୍ଞା ଦେଲେ ସିନ୍ଧୁମଧ୍ୟେ ଯାଇ । ଘର କରି ତୁ ରହିବୁ ତହିଁ । ଏମନ୍ତ ଶୁଣି ନିଜ ବଳ ସେବକଣ । କାଳୀ ଚଳିଲା ସତ୍ଵର ହୋଇ ସେ । ଏଅନ୍ତେ । ।୧୯୧।

ଏଉତ୍ତରେ ଗୋପାଳେ ସମସ୍ତେ । କାଳନ୍ଦୀରେ ପଶିଲେ ତ୍ୱରିତେ । ଅତି ଆନନ୍ଦରେ କମଳ ତୋଳନ୍ତି । କୃଷ୍ଣ ଦେଖି ଅତି ଉଚ୍ଛୁକତେ ଯେ । ଏଅନ୍ତେ । ।୧୯୨।

କୃଷ୍ଣ ସୁବଳଙ୍କୁ ଡାକ ପାଶ । ମଣି ହାର ଦେଲେ ଚଢ଼ି ତୋଷ । କହିଲେ ରାଧାଙ୍କ ମିଳନ କାଳରେ । ତୁମ୍ଭେ ଆଣି ଦେବଟି ଅବଶ୍ୟ ହେ । ସୁବଳ । ।୧୦୩।

ହୋଇ ସମସ୍ତ ଗୋପାଳ ମେଳ । ତୋଳ ସହସ୍ର ଘ୍ରାଣ କମଳ । ତଟରେ ପ୍ରବେଶ ହେଲେ କୃଷ୍ଣ ସଙ୍ଗେ । ଦେଖି ଅନନ୍ଦ ଗୋକୁଳ କୁଳ ଯେ । ହୋଇଲେ । ।୧୯୪।

ଅସ୍ତ୍ରଦିନ-ଈଶ ଏଅନ୍ତରେ । ଗାଢ଼ ଅନ୍ଧାର ନଶି ପ୍ରଗ୍ସରେ । ଯାଇ ନପାର ରହିଲେ ସର୍ବଜନେ । ଯେ ରାତ୍ରକ କାଳନ୍ଦୀ କୂଳରେ ଯେ । ସମସ୍ତେ । ।୧୯୫।

ପୁଣି ଅର୍ଦ୍ଧରାତ୍ର ସମୟରେ । ଅଗ୍ନି ବେଢ଼ିଲା ଚଉପାଶରେ । ଦେଖି ଗୋପକୁଳ ହୋଇଣ ଅକୁଳ । ବନମାଳୀଙ୍କି ସ୍ମରଣ କଲେ ଯେ । ସମସ୍ତେ । ।୧୯୬।

ଦେଖି ଗୋପୀ ଗୋପାଳ ଅକୁଳ । ଦୟା ହୃଦୟରେ ନନ୍ଦବାଳ । ବୋଇଲେ ନୟନ ବୁଜି ତୁମ୍ଭେ ସର୍ବେ । କରେ ଧେନ ଏକ ଏକ ଡାଳ ଯେ । ଲିଖିଥ । ।୧୯୭।

ସର୍ବେ ପିଠକ୍ରେ ଅଗ୍ନି ଉଡ଼ାଇ । କୃଷ୍ଣ ରଖିଲେ ସମୂଦ୍ରେ ନେଇଁ । ଅଗ୍ନି ନାଶ ଦେଖି ଗୋପ ନରନାରୀ । ଅତି ଅନନ୍ଦ ମାନସ ହୋଇ ଯେ । ସେହାଳେ ! ।୧୯୮।

ନନ୍ଦ ଯଶୋଦାଙ୍କୁ ଶ୍ରୀହରି କହେ । ତୁମ୍ଭେ ଏବେ ଜଗ ପୁର ଯାଇ । ଭଜନ କରାଇ ଶ୍ରୀକୃଷ୍ଣ କମଳେ । ତୁମ୍ଭେ ଦେବ ଏଠାକୁ ପଠାଇ ଯେ । ସତ୍ୱରେ । ।୧୯୯।

ଶୁଣି ଯଶୋଦା ଚହ୍ନିଁ ଚଳିଲେ । ପଥେ କୁନ୍ଦଲତାଙ୍କୁ ଭେଟିଲେ । ରାଧାଙ୍କୁ ଚନ୍ଦନ ନିମନ୍ତେ ଆଣିବ । ବୋଲି ପୁରରେ ଯାଇ ମିଳିଲେ ଯେ । ଯଶୋଦା । ।୧୦୦।

ଶ୍ରୀମତୀଙ୍କ ଲୀଳା ଇଚ୍ଛାମନେ । ନନ୍ଦ ସଙ୍ଗେ କୃଷ୍ଣ ବୃନ୍ଦା-ବନେ । ଯେ ଗମାୟୁ ବନେ ଘନ ଆସି ଘୋଟେ । ଅଛି ନବଜ ବନ ଗଗନେ ଯେ । ଏଥନ୍ତେ । ।୧୦୧।

ଜାଣି ଅନ୍ଧକାର ଦେଖି ଡର । ନନ୍ଦ ଅଗ୍ରେ ଭଜନ୍ତି ଜଉ । ଗୃହ ପ୍ରବେଶ କରାଅ ମୋତେ ବୋଲୁ । ଶୁଣି ନନ୍ଦ କୃଷ୍ଣ କର ଧରୁ ଯେ । ବାହାରେ । ।୧୦୨।

ଗୃହିଁ ଜଗର କହେ ଏସନ । ରାଢ଼କାର୍ଯ୍ୟ ବଜ ଘୋନନ୍ଦନ । ଯଦୁପ୍ରେମ୍ଭର କମଳ ଯେନ ଏବେ । ଗୃହ ବେଗେ ମଥୁରା ଭୁବନ ଯେ । ଏଥନ୍ତେ । ।୧୦୩।

ଶୁଣି ନନ୍ଦ କହଇ ଉତ୍ତର । ଏମୋ ଅଛି ବାଳୁତ କୁମର । ଏହାଙ୍କୁ ନେଇଁ ପୁରଜନେ ସମର୍ପି । ଆସି ମିଳବ ଘୋର ପାଶର ହୋ । ଜଗର । ।୧୦୪।

ବାହାରଲେ ଧରୁ କୃଷ୍ଣ କର । ପଥେ ଗମନ୍ତ ଅଛି ଖଞ୍ଜର । କେତେହେଁ ଦୂର ଯାଇଣ ଡାକଦେଲେ । ଶୁଣିନନ୍ଦିନୀ କହେ ଉତ୍ତର ଯେ । ଏକାଳେ । ।୧୦୫।

ରାଧା ସଖୀଗଣ ମଧ୍ୟ ଗୃହିଁ । ନନ୍ଦ କୃଷ୍ଣ ସମର୍ପିଲେ ନେଇଁ । ଗୃହରେ ପ୍ରବେଶ କରାଅ ଏହାଙ୍କୁ । ବୋଲି ନନ୍ଦ ବାହୁଡି ଅସଇ ଯେ । ଏକାଳେ । ।୧୦୬।

ରାଧାକୃଷ୍ଣ ଅତି ସ୍ନେହ ଭରେ । ବଢେ ମାଧବୀ ମଣ୍ଡପ ପରେ । ଅତି ଆନନ୍ଦେ ଲୀଳାମାନ କରନ୍ତି । ଛର ସନ୍ତାପ କଲେ ଅନ୍ତର ଯେ । ଏକାଳେ । ।୧୦୭।

ତହିଁ ସ୍ଵଚ୍ଛ ପ୍ରବେଶ ହୋଇ । ନାଗ ବାଳୀ ଦେବା
ହାର ନେଇଁ । ଶ୍ରୀକରେ ଦିଅନ୍ତେ ଅତି ସ୍ନେହଭରେ ।
ଶ୍ରୀମତୀଙ୍କ ଗଳାରେ ଲମ୍ବାଇ ସେ । ଶ୍ରୀକୃଷ୍ଣ । ୨୦୮ ।

କୁନ୍ଦଲତା ପ୍ରବେଶ ଏକାଳେ । ଶ୍ରୀମତୀଙ୍କି ଏମନ୍ତ
କହିଲେ । ଛଟିଲା କହିଲେ କନ୍ଦର୍ପରେ ନଥ । ରାଧାଙ୍କନ୍ତ
ମୂର୍ଚ୍ଛି ମୃଚ୍ଛା ଖୁଲେ ତୋ । ଶ୍ରୀମତୀ । ।୨୦୯।

ତୁମ୍ଭେ ସଦ୍ମରେ ବଜାପ୍ରେଶ୍ଵର । ବେଳ ହେଲାଣି ଏବେ
ଉତ୍ତର । ଘୃତ ଦ୍ରୁପାନେ ଅଗ୍ନି ଶିଖା ପଚାଏ । ଶୁଣି ଶ୍ରୀମତୀ
ଆନନ୍ଦଭର ଯେ । ଏକାଳେ । ।୨୧୦।

ମିଷ୍ଟ ଅନ୍ନକୁ ଯତନ୍ତ୍ରା ଆଣି । ପ୍ରବେଶକଲେ ସମସ୍ତ ଜାଣି ।
ଅତି ଆନନ୍ଦେ ଶ୍ରୀମତୀ ପରଷିଲେ । ଭଲେ ମଣୋହିଁ ଯେ
ବେଳୁପାଣି ଯେ । ତଦନ୍ତେ । ।୨୧୧।

ଅବଶେଷେ ରାଧା ତୋଷ ହୋଇ । ସଖୀ ସଙ୍ଗତେ କଲେ
ମଣୋହିଁ । ତଦନ୍ତେ ରାଧାମାଧବ ଆନନ୍ଦରେ । ଘରେ
ପ୍ରବେଶ ହୋଇଲେ ଯାଇ ସେ । ଏଥନ୍ତେ । ।୨୧୨।

ପୁରଜନ ସମସ୍ତ ଏକାଳେ । ରାଧାକୃଷ୍ଣଙ୍କୁ ଦର୍ଶନକଲେ ।
ନବ ପୁତ୍ର ବଧୂ ପ୍ରବେଶ ପରାଏ । ଦେଖି ଯଶୋଦା ଆନନ୍ଦ
ହେଲେ ଯେ । ଏମନ୍ତ । ।୨୧୩।

ରାଧା ରୋହିଣୀ ସଙ୍ଗେ ନେଇ । କଲେ ଯେ ଅତି
ତୋଷମନ । ଅନେକ ଅନ୍ନ ବ୍ୟଞ୍ଜନପିଷ୍ଟପାଦି । କର ଷଡ଼ଶେ
ସୁଧା ସମାନ ଯେ । ସଦ୍ମରେ । ।୨୧୪।

ଯଶୋଦା ଯେ କୃଷ୍ଣଙ୍କୁ ସ୍ନାନ । କରାଇ ଯେ ବସାଇ
ଆସନ । ଶ୍ରୀମତୀ ବଢ଼ାଇ ଦିଅନ୍ତେ ରୋହିଣୀ । ପରସନ୍ତି
ଷଡ଼ବିଧି ଯତନ ସେ । ସେକାଳେ । ।୨୧୫।

ହେନ୍ତେ ଶ୍ରୀକୃଷ୍ଣ ମନୋହିଁ ବେଶ । ଶ୍ରୀମନ୍ତ ଯେ ଅତିହିଁ ହରଷ । ଅବଶେଷ ଦ୍ରବ୍ୟମାନ ଯେ ଭୁଞ୍ଜିଲେ । ଏକାଳରେ ନନ୍ଦ ପରବେଶ ଯେ । ମନ୍ଦିରେ । ।୨୧୭।

ଶ୍ରୀକୃଷ୍ଣଙ୍କ ବଦାନ୍ତ ନିମନ୍ତେ । ସଞ୍ଜିଥିଲା ଅଳଙ୍କାର ଯେତେ । ଶ୍ରୀମନ୍ତଙ୍କି ଅତି ଅନୁରାଗେ ଦେଇ । ଘୁରେ ପଠାଇଦେଲେ ଭୁବନେ ସେ । ଯଶୋଦା । ।୨୧୮।

ରହିଲେଲକ ତୋଷେ ପୁରଜନ । ପୁଣି ଶୁଣ ଏମନ୍ତ ବଖାନ । ବୃଢ଼ିଏ ଗ୍ରୀଷ୍ମ ରାତ୍ରରେ ଦୁଅରେ । ଉକାଦେଇ ବୋଲଇ ଏସନ ଯେ । ଏହାଳେ । ।୨୧୯।

ଅରେ ଉରାଉ ପ୍ରଲମ୍ବାସୁର । କୃଷ୍ଣଚନ୍ଦ୍ର ଛନ୍ତି ଅମ୍ଭର । ଶୁଣି ଏ ବାଣୀକି ପ୍ରଭାତରୁ ରାମ । କୃଷ୍ଣ ଗୋରୁ ଗୋପାଳ ସଙ୍ଗରେ ଯେ । ହରଷେ । ।୨୨୦।

ହେଲେ ଭାଣ୍ଡୀର ବନରେ ଯାଇ । ରାମ କୃଷ୍ଣ ଅଧିକାରୀ ତହିଁ । କୃଷ୍ଣ ମୁରଲୀରେ ଡାକନ୍ତେ ସବୁରେ । ସବୁ ସଖା ପରବେଶ ହୋଇ ଯେ । ଏକାଳେ । ।୨୨୧।

ଗୋରୁ ମାନଙ୍କୁ ସୁଖେ ଚରାଇ । ବୃକ୍ଷଙ୍କର ଛାଇ ତଳେ ରହି । ଫଳ ବୁହାଇ ଖେଳ ତହିଁ ଖେଳନ୍ତି । ସବୁ ସଖାଗଣ ରୁଣ୍ଡ ହୋଇ ଯେ । ଏକାଳେ । ।୨୨୨।

ମହାବଳ ସଖା ଯେତୁ ଦିନ । ନ ଅଛିବାରୁ ହେଜିଣ ମନ । ତାହା ସ୍ୱରୂପରେ ପ୍ରଲମ୍ବା ଅସୁର । ଆସି ପ୍ରବେଶ ହେଲା ବହନ ଯେ । ଏଅନ୍ତେ । ।୨୨୩।

ଫଳ ଠାରନ୍ତୁ ରାମ କହିଲେ । ହାର ଗୋପାଳେ କନ୍ଧେ ବହିଲେ । ମହାବଳ କନ୍ଧେ ବଳରାମ ଚଢ଼ି । ତହୁଁ ଭାଣ୍ଡୀର ମୂଳକୁ ଗଲେ ଯେ । ଏଅନ୍ତେ । ।୨୨୪।

ତହୁଁ ଅତିକ୍ରମିଣ ରାକ୍ଷସ । ବଳରାମଙ୍କୁ ଘେନି ହରଷ । ଆକାଶ ମାର୍ଗେ ଉଡ଼ାଇ ବହୁରଇ । ଦେବ କଂସ ଛାମୁରେ ଅବଶ୍ୟ ସେ ; ବେଗରେ । ।୧୨୫।

କୃଷ୍ଣ ଦେଖିଣ ବୋଲନ୍ତି ମାର । ଉଡ଼ାଇ ଯେ ନେଉଛି ଅସୁର । ଜାଣି ବଳରାମ ଅତି ଗରୁ ହେଲେ । ବହି ନ ପାରି ପଡ଼େ ଭୂମିର ସେ । ଅସୁର । ।୧୨୬।

ମୋଥେ ମାରି ତା ପ୍ରାଣ ନେଲେ । ଦେଖି ଅତି ଆନନ୍ଦ ଗୋପାଳେ । ଏଥୁଅନ୍ତେ ଅସ୍ତ ହୋଇଲେ ଦିନେଶ । କୃଷ୍ଣ ବଳରାମ କୁଳହେଳେ ସେ । ଆସନ୍ତି । ।୧୨୭।

ସଙ୍ଗେ ଘେନି ଯେ ଗୋରୁ ଗୋପାଳ । ଦାଣ୍ଡେ ଆସିବା ଶୁଣି ଚହଳ । ଅଟ୍ଟାଳ ଆରୋହି ଦେଖନ୍ତି ଶ୍ରୀମତୀ । କୃଷ୍ଣ ଶ୍ରୀ ଅଙ୍ଗ କାନ୍ତି ମଞ୍ଜୁଳ ସେ । ଦେଖନ୍ତି । ।୧୨୮।

ଗୋପପୁର ଯାକ ରୁଣ୍ଡ ହୋଇ । ବେନି ଭାଇଙ୍କି ଦେଖନ୍ତି ରହି । ହେମ ହାର ମଧ୍ୟେ ହୀରା ନୀଳା ରତ୍ନ । ପ୍ରାୟେ ଅତି ସୁନ୍ଦର ଦିଶନ୍ତି ସେ । ଏଅନ୍ତେ । ।୧୨୯।

ପୁରେ ପ୍ରବେଶ ଯଶୋଦା ଗୃହିଁ । ବେଗେ ଅନ୍ନ ଆଣି ନଉଛାଇ । ସ୍ନାନ ଭୋଜନ କରାଇ ହରଷେ । ପଲଙ୍କରେ ସୁଆଇଲେ ନେଇଁ ସେ । ଯଶୋଦା । ।୧୩୦।

ପୁଣ ପଠାଇ ଦୂତୀଙ୍କ ହାତ । କୁଞ୍ଜେ ବେଗେ ଆଣ ପ୍ରାଣେ-ଶ୍ୱରୀ । ଏତେ କହି ଅତି କୁଞ୍ଜରେ ସତ୍ୱରେ । ତୋଷେ ପର-ବେଶ ବେଣୁଧାରୀ ସେ । ମୋହନ । ।୧୩୧।

ତହିଁ କପଟେ କାମିନୀ ବେଶ । ହେଲେ କଉତୁକେ ପୀତବାସ । ଦୂତୀ ବଚନେ ଶ୍ରୀମତୀ ଏସମୟେ । ବୃନ୍ଦାବନେ ହେଲେ ପରବେଶ ସେ । ହରଷେ । ।୧୩୨।

ସଙ୍ଗେ ଅତ୍ୟନ୍ତ ସଙ୍କଳ ସଖୀ । କୁଞ୍ଜେ ପ୍ରବେଶ ହେଲେ ସୁମୁଖୀ । ସ୍ଥଳରେ ରହିଲେ କିଶୋରୀ ରତନ । ଚନ୍ଦ୍ରାବଳୀଙ୍କ ସ୍ୱରୂପ ଦେଖି ସେ । ଶ୍ରୀମତୀ । ।୧୩୩

ପୁଣି ବଗୃରଲେ ଜଙ୍ଘ ଚଣ୍ଡ । କର ଚନ୍ଦ୍ରାବଳୀଙ୍କି ସଙ୍ଗେ ତ । ଦୂତୀଙ୍କ ପେଣି ଅଣାଇଲେ କପଟେ । କହିଁ ମୋତେ ଏଥେ ନନ୍ଦସୁତ ସେ । ଏମନ୍ତେ । ।୧୩୪।

ବୋଲି କ୍ରୋଧେ ତହୁଁ ବାହୁଡ଼ିଲେ । କୃଷ୍ଣ ଧାଇଁ ଧରି କୋଳକଲେ । ଅଙ୍କେ ବସାଇ ବଳନ୍ତ କେତେ କହି । ସୁଖେ କହୁତଲେ ପ୍ରେମ ଖେଳେ ସେ । ଏମନ୍ତେ । ।୧୩୫।

ପୁଣି ପ୍ରଭାତ ସମସ୍ତ ଗୃହିଁ । ପୁରେ ପ୍ରବେଶ ହୋଇଲେ ଯାଇ । ନାନାମତେ ପ୍ରତିଦିନରେ ବିହାର । ଚନ୍ଦ୍ରାବଳୀ ସମସ୍ତ ନପାଇ ସେ । ଦୁଃଖିତ । ।୧୩୬।

ପଦ୍ମା ସବ୍ୟା ଶ୍ରୀମତୀଙ୍କ ପୁରେ । ଯାଇ ପ୍ରବେଶ ହେଲେ ସତ୍ୱରେ । ଜଟିଳା ଆଗେ କୁଶଳ ପୁଚ୍ଛକରି । ପୁଣି ପୁରେ ଘିବା ସମସ୍ୟରେ ସେ । ସଖୀଏ । ।୧୩୭।

ଏକ ସମସ୍ୟା ମୃଗ ମଦରେ । ଲେଖି ଗଲେ ବାହାର କାନ୍ଥରେ । ପ୍ରାତଃକାଳୁ ଦ୍ୱାର ସମ୍ମାର୍ଜ୍ଜନା କରି । ପଢ଼ିଲା ଜଟିଳା ଅତି କ୍ରୋଧରେ ସେ । ଏମନ୍ତେ । ।୧୩୮।

• ବଗୃରଇ ମୂଖରାକୁ ଆଣି । ପଢ଼ାଇବ ଏ ସମସ୍ୟା ପୁଣି । ଜାରୁଣିକ ଯେ ପ୍ରଶଂସା କରୁଥାନ୍ତି । ଲେଖା ହୋଇଛୁ ଏମନ୍ତ ବାଣୀ ସେ । ବଗୃର । ।୧୩୯।

ମୂଖରାକୁ ଅଣିବାରେ ଚଳେ । ଶ୍ରୀମତୀଙ୍କ ସଜନୀ ଏ କାଳେ । ସମସ୍ୟାକୁ ପଢ଼ି ଉରକ ହୋଇଣ । ଅନୁସ୍ୱାର ଏକ ଉଢ଼ିଁ ଦେଲେ ସେ । ବାମାଏ । ।୧୪୦।

ମୁଖଚାକୁ ଯେନ ସଙ୍କୋଚରେ । ଜଟିଳା ଆମିଷ ନିଜପୁତ୍ରେ ।
ଏରୂପେ ସମାସ୍ୟା ମୁଖରା ଦେଖି ଯେ । ପଢ଼ନ୍ତେଣ ଏମନ୍ତ
ଉଚ୍ଚରେ ସେ । ସମସ୍ୟା । ।୨୪୧।

ବଧୂ ତୁମ୍ଭର ନନ୍ଦନନ୍ଦନ । ବନେ କରନ୍ତି ନିତ୍ୟ
ଗମନ । ଅଭିମନ୍ୟୁ କହି ନିବାରଣ କର । ନଯାନ୍ତୁ ଯେ
ଅଉ ବୃନ୍ଦାବନ ସେ । ଏମନ୍ତେ । ।୨୪୨।

ପଢ଼ି ମୁଖରା ବୋଲେ ଏସନ । ଏଥେ କି ଅର୍ଥ ଅଛଇ
ପୁଣ । ଜଟିଳା ଶୁଣି ଲଜ୍ଜିତମୁଖୀ ହୋଇ । ବସୁରଇହେଲି
ଭ୍ରମ ମନ ଯେ । ମାଳବସେ । ।୨୪୩।

ନାନ୍ଦୀମୁଖୀ ବନ୍ଦୁମତି ତହିଁ । ପ୍ରବେଶିଲେ ଅତି ଶୀଘ୍ର
ହୋଇ । ବୋଇଲେ ସମସ୍ୟା ଅର୍ଥ ପଢ଼ିଲଙ୍କ । ଶୁଣି ଜଟିଳା
କହ ବୋଲଇ ସେ । ସଭୁରେ । ୨୪୪।

ବନ୍ଧୁ ତୋର ଦୁଃଖିତ ହୁଅନ୍ତି । ସବୁ ଦିନରେ ବନକୁ
ଯାନ୍ତି । ଅଭିମନ୍ୟୁକୁ ନିବାରଣ କରାଅ । ବୃନ୍ଦାବନେ ନ
ଯାନ୍ତୁ ବୋଲନ୍ତି ସେ । ଏମନ୍ତ । ।୨୪୫।

ପୁଣି ଜଟିଳା ପୁତ୍ର ଅଗ୍ରତେ । ନାନ୍ଦୀମୁଖୀ ବଚନକହନ୍ତେ
ଶୁଣି ଅଭିମନ୍ୟୁ ଆନ ବନେ ଗଲେ । ପୁଣି ଶ୍ରୀମତି ଆନନ୍ଦ
ଚିତ୍ତେ ସେ । ଏମନ୍ତେ । ।୨୪୬।

ବୃନ୍ଦାବନଚନ୍ଦ୍ର ଲୀଳା ଭାବ । ବର୍ଣ୍ଣିବାକୁ ଏ ଅତି
ଦୁର୍ଲ୍ଲଭ । କୃଷ୍ଣ ଧାଇ ଷଷ୍ଠ ପ୍ରକାଶ କହିଲେ । ଜଗନ୍ନାଥ
ନାରାୟଣ ଦେବ ସେ । ଏରସ । ।୨୪୭।



## ସପ୍ତମ ପ୍ରକାଶ।

ରାଗ କେଦାର କାମୋଦି ।

ଜୟ ଜୟ ଶ୍ରୀକୃଷ୍ଣ ଶ୍ୟାମଳ ମୂର୍ତ୍ତି । ତୁମ୍ଭ ପଦ୍ମପାଦରେ
ମୋର ଭକତି ଯେ । କରୁଣାନିଧି ମୋତେ କରୁଣା କର ।
ଏଭବସାଗରୁ କରବା ଉଦ୍ଧାର ହେ । ।୧।

ଅତି ସୁନ୍ଦର ଶ୍ୟାମଘନ ଶରୀର । ବିଦ୍ୟୁତ ପ୍ରକାଶିତ କି
ପୀତାମ୍ବର ଯେ । କେକି ପୁଚ୍ଛ ଚୂଳ ଇନ୍ଦ୍ର ଶରାସନ । ମେଘ
ଗମ୍ଭୀର ଜିଣି ଅତି ରଞ୍ଜନ ଯେ । ।୨।

ହାର ଜ୍ୟୋତିଷ୍କ ବକପନ୍ତି ରାଜିତ । କାନ୍ତା ଅପାଙ୍ଗ କଟାକ୍ଷ
ଅଶନିପାତ ଯେ । କୃପା ଜଳ ବରଷି ମଦନାନଳ । ନିସ୍ତର
ତୋଷ ଗୋପୀ ଶସ୍ୟକୁଳ ଯେ । ।୩।

ପ୍ରେମ ତୃଷ୍ଣାକୁ ଚ ପ୍ରବଳ କରାଅ । କୁଳବଶ୍ୟବ୍ରତ ଲତାକୁ
ଭସାଅ ହେ । ଗୋପ ଦିଗରୁ ହୋଇ ଉଦୟ ମାନ । ବିହାର
କର ବୃନ୍ଦାବନ ଗଗନ ଯେ । ।୪।

ବ୍ରଜବଧୂ ମୋହନ ତମାଳ ଅଙ୍ଗ । କୋକନଦ କି ପଦ
ଯୁଗ୍ମ ସୁରଙ୍ଗ ହେ । ହେମନୂପୁର ଚର୍ଣ୍ଣେ ଅତି ରଞ୍ଜନ ।
ମୋହିତ କୃତ ଗୋପୀ ଜନଙ୍କ ମନହେ । ।୫।

କଟି ମଣ୍ଡ କେଶରୀ ଠଣିକ ଜିଣି । ପୀତାମ୍ବର କାଛେଣି
ତାନ୍ କିଙ୍କିଣିହେ । ଉରେ ଶୋଭିତ ଜ୍ୟୋତି ମୁକ୍ତାହାର ।
ସୁନ୍ଦର ଦିଶେ ହିରା ପଦକ ତୁଳ ଯେ । ।୬।

କରେ କଙ୍କଣ ଜଗଜ୍ଜନ ମୋହନ । କର୍ଣ୍ଣେ କୁଣ୍ଡଳ
ଦିଶେ ଅତି ଚଞ୍ଜନ ହେ । ଶ୍ରୀମୁଖ ପ୍ରକାଶିତ କି ସୁଧାକର ।
ଅତି ସୁନ୍ଦର ଦିଶେ ରଙ୍ଗ ଅଧର ହେ । ।୭।

ରତ୍ନମୁକୁଟ ଶିଖେ ମୟୂରଚନ୍ଦ୍ର । ଦେଖିତ ମୋହିତ
ଗୋ ଯୁବତୀ କୁଳ ଯେ । ଅପାଙ୍ଗରେ ସ୍ତମ୍ଭନ ମୋହନଧର ।
ଗୃହିଁ ଚତୁରୀ କୁଳ ଧୈର୍ଯ୍ୟକୁ ହରଯେ । ।୮।

ତ୍ରିଭଙ୍ଗୀଛନ୍ଦେ ଉଭା କଦମ୍ବ ମୂଳେ । ବଂଶୀ ବଜାନ୍ତି ରହି
ଅତି ମଞ୍ଜୁଳେ ଯେ । ଶୁଣି ଉତ୍କଣ୍ଠ ଗୋପ ଯୁବତୀ ମନ ।
ଅନୁବରତେ କରେ ଏରୂପ ଧ୍ୟାନ ଯେ । ।୯।

ଏଅନ୍ତରେ ନାରଦ ନନ୍ଦକୂବେରେ । କହନ୍ତି ଅତିଶୟ
ଅନନ୍ଦଭରେ ଯେ । ଶ୍ରୀରାଧାକୃଷ୍ଣ ଚର ହରନ୍ତେ ଦୁହିଁ ।
ଅନବରତେ ନେତ୍ରେ ଲୋତକ ଗଳି ଯେ । ।୧୦।

ଏମନ୍ତେ ଅପି ହୋଏ ବୈଶାଖ ମାସ । ଶୁକ୍ଳଦ୍ୱିତୀୟା ରବି
ବାର ପ୍ରବେଶ ଯେ । କୃତ୍ତିକା ନକ୍ଷତ୍ରରେ ସଖୀଙ୍କି ଧରି ।
ଶ୍ରୀମତୀ ଯମୁନାରେ ସ୍ନାନ ପାଇ ଯେ । ।୧୧।

ଶ୍ରୀକୃଷ୍ଣ ଅତି ରୋଷେ ପଥ ଓଗାଳି । ଗୃହିଁ କର୍କଶ ବାଣୀ
କହନ୍ତି ଆଳି ଯେ । କଂସରାଜା ଶୁଣିଲେ ପ୍ରମାଦ ହେବ ।
ତୁମ୍ଭର ସହର ବେଭାର ସକଳ ହେ । ।୧୨।

କାମ ଅଙ୍ଗୁରେ କୃଷ୍ଣ କରୁଣ କୋଳ । ଚୁମ୍ବନ ଦିଅ ବନ୍ଧୁ
ବୋଲି ଅକୁଳ ଯେ । କୋଳ ଖସି ଶ୍ରୀମତୀ ହୋଇ ଅନ୍ତର ।
ଚମ୍ପକ ତରୁତଳେ ଲୁଚି ରହିଲ ଯେ । ।୧୩।

ରାଧା ନ ଦେଖି କୃଷ୍ଣ ଅତି ଆକୁଳ । ନୟନରେ ଝରଇ
ଲୋତକ ଜଳ ଯେ । ବୋଲନ୍ତି ଅହାପ୍ରିୟେ ଗଲୁ କାହିଁ ।
ସଖୀଗଣ ଦେଖିଣ ହସାଇ କହି ଯେ । ।୧୪।

ଘେନିହିଁ କିଛି ଦୂର କଲେ ଗମନ । ତହିଁ ଦେଖିଲେ ପାଦ
ଲକ୍ଷଣ ମାନ ଯେ । ମିଳିଲେ ସର୍ବେ ଚମ୍ପକମୂଳେ ଯାଇ ।
ରାଧା ପ୍ରେମରେ ଅତି ଆସକ୍ତ ହୋଇ ଯେ । ।୧୫।

ଝଙ୍କାର କରଣ ଉଡନ୍ତି ଭ୍ରମର । ସେଥିରଲେ ମୋହନ୍ତି
ଅଛି ଏଥିର ଯେ । ରତ୍ନବେଦି ଉପରୁ ଅଣନ୍ତି ଧର । ପଦ୍ମ
ଉଛୁଡ଼ି ଅଣେ ଧ ସ୍ତଗ୍ଧ କର ଯେ । । ୧୬ ।
ଅଲିଙ୍ଗନକର କହନ୍ତି ମଧୁରେ । ଭୃ ଲ୍ଡରଲେ ରୋହାନ୍ତି
ଦିଶେ ବାହାରେ ଯେ । ଶ୍ରୀମନ୍ତି ସ୍ନେହଭରେ ଏମନ୍ତ କହି ।
ବାହାର ଚଣ୍ଡ ଯହିଁ ଶେ ଦିଶୁଥାଇ ଯେ । । ୧୭ ।
ଶ୍ରୀକୃଷ୍ଣ ବୋଲନ୍ତି ରେ ପରାଣମିତ । ବଦୁଧିତ ବନ୍ଦୁ ଘନ
କୋହେ ଶୋଭିତ ଯେ । ତୋଷଙ୍କ ବକ୍ଷରେ ମୁନ୍ଦ୍ରହଇ
ସୁଖୀ । କଷ୍ଟେ କହୁଛ ଯେନ ଚନ୍ଦ୍ରମା ମୁଖୀ ରେ । ୧୮ ।
ପୁଣ ରାଧା କହନ୍ତି ସ୍ନେହଭରେ । ଘନ ବରଇ ପ୍ରୀତି
ଦେଖ ଚନ୍ଦ୍ରରେ ହେ । ପୁଣି ଯେଷଣି ହୋଏ ଚଞ୍ଚଳତର ।
ଶୁଣି କୃଷ୍ଣ କହନ୍ତି ମଧୁର ଗୀର ଯେ । । ୧୯ ।
ଘନଚନ୍ଦ୍ର ପୀରତି ନୁହଇ ସ୍ଥିର । କିପାଁ ବନ୍ଧୁ କହୁଛ
ଏପରି ଗୀର ରେ । ମନ ଯେନା ଭୁମ୍ଭେ ଯେ ରସତରଙ୍ଗା ।
ଦୁହେଁ ଦୁହିଙ୍କ ସ୍ନେହ ଯେନ ଖ୍ରବନୀ ରେ । । ୨୦ ।
ଲତାନ୍ତରାଳେ ଥାଇ ସବ ସଜନୀ । ପ୍ରଶଂସନ୍ତି ଇଙ୍ଗିତ
ମନରେ ଯେନ୍ସ ଯେ । ରାଧାକୃଷ୍ଣ ମିଳନେ ମାନଧ ଖେଳ ।
ଦେଖି ସବ ସଜନୀ କହନ୍ତି ଛଳ ଯେ । । ୨୧ ।
ଲଳିତା ଦେଖି ଛଳେ କହେ ଏମନ୍ତ । କ ହେମଗିରି
ନୀଳଗିରି ଜଡ଼ିତ ଯେ । ବଶାଖାପୁଣି କହେ ଏମନ୍ତ ଗୀର ।
ତମାଳେ ହେମଲତା କ ଏ ସୁନ୍ଦର ଯେ । । ୨୨ ।
ଚତ୍ରା ଦେଖିଣ ତୋଷେ କହେ ଏମନ୍ତ । ହେମ ମର୍କତ
ପ୍ରତିମା କ ଜଡ଼ିତ ଯେ । ଚମ୍ପକଲତା ପୁଣ କହେ ବଗ୍ଧର ।
କବା ସ୍ୱର୍ଣ୍ଣ ପ୍ରର୍କୁ ନୀଳ ପାଚେରୀ ଯେ । । ୨୩ ।

ରଙ୍ଗଦେବୀ କହନ୍ତି ବଚନ ଛଳେ । ଘନକୋଳେ ବିଜୁଳି
ଦେଖି ନାଚିଲେ ଯେ । ସୁଦେବୀ କହେ ପୁଣି ହୋଇ ମୋହିତ ।
କାଳିନ୍ଦୀରେ ଜମ୍ବୁ ଜମ୍ବାଳ ମିଶିତ ଯେ । ।୨୪।

ତୁଙ୍ଗଦେବୀ କହନ୍ତି ହୋଇ ସପ୍ରେମ । କପଟରେ ହେମ
କଷିଛି କାମ ଯେ । ଇନ୍ଦୁଲେଖା କହନ୍ତି ଏମନ୍ତ ଗୀତ ।
ରାଧା ପଦ୍ମରେ ଶୋଭେ କୃଷ୍ଣ ଭ୍ରମର ଯେ । ।୨୫।

କୁଞ୍ଜଲତା ବିହରେ କହେ ଏମନ୍ତ । କୁଳବଧୂ ଗ୍ରହଣ
ନୋହେ ଉଚିତ ଯେ । ଶୁଣି ଶ୍ରୀକୃଷ୍ଣ ରାଧା ପାଶୁ ଅନ୍ତର ।
ରାଧାସ୍ନେହେ କହନ୍ତି କର୍କଶ ଗୀର ଯେ । ।୨୬।

ଅନ୍ତର ହୋଇ ଯାଉଥିଲି ବନରେ । ଯୋଗେ ପଡ଼ିଲି ଆସି
ତୁମ୍ଭ ଅଗରେ ହେ । ଅଳ୍ପ ଦିନର ମୋତେ ଥିଲା ଏ ଦଶା ।
ଯାସୁ ଜାଣିଲେ କେତେ ବୋଲିବେ ଭଷା'ଯେ । ।୨୭।

କୃଷ୍ଣ ପୁଣି ଶ୍ରୀମତୀ ଅଞ୍ଚଳ ଧରି । ଦାନ ଦେଅ ବୋଲି ଣ ଜଞ୍ଜାଳ
କରି ଯେ । ଲଳିତା ଧାଇଁ ଯାଇ ଛଡ଼ାଇ ବାସ । ବଦାନ୍ୟ ମଗୁ
ଅଛ ହେ ପୀତବାସ ହେ । ।୨୮।

ଯୁବତୀଗଣେ ଏକ ଧୂର୍ତ୍ତ ଥିଲେ । ଲୋକେ ଅପକୀର୍ତ୍ତି
ହୁଅଇ ଭଲେ ଯେ । ଏହି କୁଞ୍ଜରେ ଥାଅ ଶ୍ୟାମସୁନ୍ଦର । ପୂଜା
ଅନ୍ତରେ ଦାନ ଦେବୁ ସତ୍ୱର ହେ । ।୨୯।

କୃଷ୍ଣ ବୁଝାଇ ସର୍ବେ ଗଲେ ଯେ ଚଳି । କୃଷ୍ଣ ଗୁଣ ଗାଇନେ
କୁସୁମ ତୋଳି ଯେ । କୁଞ୍ଜରେ ଥାଇ କୃଷ୍ଣ ଚକ୍ଷେ କାତର ।
ଧାତୁକ ବଳାରେ ତନୁ ଥରଥର ଯେ । ।୩୦।

ଘ୍ରାଣନ୍ତି ସଖୀଗଣ ଭଣିଲେ ମୋତେ । ଅଭିଚାପର ନାଲାଗ-
ଇ ପରତେ ଯେ । ପଲ୍ଲବ ଶେଯପରେ ବସି ବିକଳ । ବେନି
ନୟନୁ ବହେ ଲୋତକ ଜଳ ଯେ । ।୩୧।

ପଲ୍ଲବ ଝଟଳରେ ଏମନ୍ତଭାବ । ଅଭିଲାଷ ମୋହର ପ୍ରାଣ
ବାନ୍ଧବୀ ଯେ । କୁଞ୍ଜ କୁଟୀରୁ ଶୀଘ୍ରେ ହୋଇ ବାହାର ।
ଶ୍ରୀକାନ୍ତ ଚଉଦିଗେ ଚକ୍ଷୁ ଅସ୍ଥିର ଯେ । ।୩୨।

କନ୍ଦର୍ପଶରେ ହୋଇ ଅତିଅବଶ । ବୋଲନ୍ତି ପ୍ରାଣପ୍ରିୟେ
ନାହିଁ ମୋପାଣ ଯେ । ସମସ୍ତ ବୁଝିପିନା ଦେଉଛ ଦଣ୍ଡ ।
ଅତିନିର୍ଦ୍ଦୟ ଅଟ କୁସୁମ କାଣ୍ଡରେ । ।୩୩।

ଅଭିବପରା ବନ୍ଧୁ ବୋଲିଯେ ସ୍ଥଳ । ପୁଣି କୁଞ୍ଜରେ ଯାଇ
ସନ୍ଦରେ ମିଳ ଯେ । ପୁଣି ଶୁଣିଲେ ଡହ୍କି ଝିଙ୍କାର ନାଦ ।
ବୋଲନ୍ତି ମୋ ସଖୀର ବଳା ଶବଦ ଯେ । ।୩୪।

ମନ ଉତ୍ସୁକେ କୁଞ୍ଜ ବାହାରେ ହେଲେ । କେତେହେଁ
ଦୂରେ ଶୁକ ଶାରୀ ଦେଖିଲେ ଯେ । ପୁଚ୍ଛନ୍ତି ଦେଖିଛକ ଗଲେ
ଏପଥେ । ନାୟିକା ଏକମଧ୍ୟେ ରମଣୀୟୂଥେ ଯେ ।୩୫।

ମନ ଧନ ଚୋରାଇ ନେଲେ ମୋହର । ଜାଣିଥିଲେ
ମୋ'ଆଗେ କହ ସତ୍ୱର ଯେ । ଶୁଣି ଶାରିକା ତୋଷେ କହେ
ଏମନ୍ତ । ମନ ଚୋରାତ ତୁମ୍ଭେ ଅଟ ସାକ୍ଷାତ ଯେ ।୩୬।

ଶୁକ କହଇ ଅହେ ଶ୍ୟାମସୁନ୍ଦର । ଏହିପଥରେ ଗଲେ
ରମଣୀବର ହେ । ତୁମ୍ଭଙ୍କୁ ଅନୁସର କୁସୁମ ତୋଳ । ଶୁଣି
ଶ୍ରୀକୃଷ୍ଣ ଗଲେ ସେଠାକୁ ଚଳ ଯେ । ।୩୭।

କୁସୁମ ତୋଳୁ କରୁ ଖସି ପଡଇ । ଲତା ଲୁଅଁଇବାରେ
ସମର୍ଥ ନୋହିଯେ । ଝରୁଗନ୍ତ ମୋ ଲୀଳା କମଳନାହିଁ ।
ଛଡ଼ି ଅଇଲି ମୁହିଁ ଅଣିବ ଯାଇ ଯେ । ।୩୮।

ତେଣୁ ଶ୍ରୀମନ୍ତ କୃଷ୍ଣଚନ୍ଦ୍ର ଆକୁଳ । ସଙ୍ଗେ ମଦନ ଶର ଅତି
ପ୍ରବଳ ଯେ । ବୃନ୍ଦାବନରେ ପଶି କୁସୁମ ତୋଳ । ମନରେ
ଚିନ୍ତା ଏକା ଶ୍ରୀବନମାଳୀ ଯେ । ।୩୯।

ବୋଲି ସଖିଗଣଙ୍କୁ ଅନ୍ତରହେଲେ । ସଙ୍କେତ କୁଞ୍ଜେ ରାଧା ଯାଇ ମିଳିଲେ ଯେ । ତହିଁ ନଦେଖି ଶ୍ୟାମସୁନ୍ଦର ରୂପ । ମନରେ ଅତିଶୟ ବଢ଼ିଲା ତାପ ଯେ । ।୪୦।

ଏଣେ ଶ୍ରୀକୃଷ୍ଣ ସଖୀ ମଧ୍ୟରେ ଯାଇ । ଦେଖିଲେକିଶୋରୀମଣି ନାହାନ୍ତି ତହିଁ ଯେ । ପୁଚ୍ଛନ୍ତି ଗୋପୀଗଣରେ ଲଭିଣ ବାଧା । ନ ଦିଶେ ମୋର ପ୍ରାଣଈଶ୍ୱରୀ ରାଧା ଯେ । ।୪୧।

କୃଷ୍ଣ ବଚନ ଶୁଣି ସକଳ ସଖୀ । ଖୋଜନ୍ତି କୁଞ୍ଜେ କୁଞ୍ଜେ ହୋଇଣ ଦୁଃଖି ଯେ । ଏହିକ୍ଷଣି ଥିଲେ ପ୍ରାଣମିତଣି । ପୁରେ ଗଲେକି ବୋଲି ଉତ୍ତର ଜାଣି ଯେ । ।୪୨।

କେ ବୋଲଇ ମୟୂର ନୃତ୍ୟକୁ ଚାହିଁ । ଦେଖୁ ଯେଥିବ ପରା ପରାଣସହିଯେ । କେହୋଲେ ଥିବେ କାହିଁ ତମାଳ ଦେଖି । କୃଷ୍ଣ ଅଙ୍ଗ ଶୋଭାକୁ ସମାନ ଲକ୍ଷି ଯେ । ୪୩ ।

ତହୁଁ ଶ୍ରୀକୃଷ୍ଣ ବୃନ୍ଦାବନେ ଚଳଲେ । କେତେଦୂରେ ଦୂରେ ପଦ୍ମା ସବ୍ୟା ଦେଖିଲେ ଯେ । ଦେଖି କହନ୍ତି କୃଷ୍ଣ ମାନସ ଘେନ । କହ ଅଛି ମୋ କାହିଁ ପ୍ରାଣସଜନୀ ଯେ । ୪୪ ।

ମୋହଠାରେ ଅଛନ୍ତି ସଖୀ ସେନେହ । କପଟ ଛାଡି ମୋରେ ଯଥାର୍ଥ କହଗୋ । କତି ଅଣାରେ ଲଗିଥାଇ ମ-ହାଠ । ଦିନେହେଁ ବନ୍ଧୁ ମୋତେ ନଦେଲା ହେଠ ଗୋ ।୪୫।

ପଦ୍ମା ବୋଲଇ ଅହେ ନବ ମୋହନ । କରତେ ଅମ୍ଭ ସଖୀ ତୁମ୍ଭରେ ଧ୍ୟାନ ଯେ । ପ୍ରବଳ ହୋଇଲାକ ବିରହବ୍ୟାଧି । ଏଥକୁ ତୁମ୍ଭେ ଜାଣ ସେ ମହୌଷଧି ହେ । ।୪୬।

କୃଷ୍ଣ ବୋଲନ୍ତି ବ୍ୟାଧି ଅସାଧ୍ୟ ନୁହେ । ଏଥକୁ ତୁମ୍ଭେ ହର୍ଷ କର ସଂଶୟ ଗୋ । ବହୁ ସୁବଳ ଆସି ହେଲେ ପ୍ରବେଶ । ଦେଖି କୃଷ୍ଣ ମନରେ ଅତିହିଁ ତୋଷ ଯେ । ।୪୭।

ପଦ୍ମ ସଦ୍ୟାଙ୍କୁ କୃଷ୍ଣ କହନ୍ତି ପୁଣ । ଗଉଡ଼ୀଗର୍ଭେ ଚନ୍ଦ୍ରାବ-
ଳୀଙ୍କ ଅଣ ଯେ । ଯକ୍ଷଙ୍କ କହି ଯେତନ୍ମଣ ରଖାଇ । କହଲ
ଚନ୍ଦ୍ରା ଅମ୍ଭେ ଚିହ୍ନିବୁ ଯାଇ ଗୋ । ।୪୮।

ଏବାଣୀ ଶୁଣି ସତୀ ଗଲେ ଭୂବତ । ବେଣି ସଖଙ୍କ କୃଷ୍ଣ
ଘେନି ଯନ୍ତ୍ରିତ ଯେ । ଚେଳନ୍ତି ଚନ୍ଦ୍ରମଣି ଦେଲି ଦ୍ୱାର ।
ଏବେ ଖୋଳିଲେ ଅଜି ପାଦଚ କାହିଁ ଯେ । ।୪୯।

ପୁଷ୍ପ ଚୌପ ମୁ ଆସି କେବେ ପ୍ରବେଶ । କହି ମୋତେହେ
ମିଳେକ୍ସ ମୟୂର ଭ୍ରଷ ଯେ । ଗଲା ପଞ୍ଜୀ ଯଶୁ ଅନ୍ତରହୋଇ ।
କେମନ୍ତେ ଦେଖିବୁ ପରାଣମଣି ଯେ । ।୫୦।

ଏତେବୋଲିଣ କୃଷ୍ଣ ଅତି ଅକୁଳ । ବେଢ଼ିଛନ୍ତି ବୁଦ୍ଧାର
ଲୋଚନ ଛଳଯେ । ମଦନଶରେ ତନୁ ଅବଶଅଛି । ବେଣ
ସଖା ପ୍ରବେଶ ଭଳ କହନ୍ତି ଯେ । ।୫୧।

ନବ ପଲ୍ଲବ ଶଯ୍ୟା ବିରଚି ଦେଇଁ । ଯତନେ ନେଇ ଶ୍ରୀ
କୃଷ୍ଣଙ୍କୁ ଶୁଆଇ ଯେ । କରନ୍ତି ଶୀତ ଉପଚାର ବ୍ୟଜନ ।
କେହିନ୍ତି ନୀରେ କର୍ପୂରଚନ୍ଦନ ଯେ । ।୫୨।

ଶିଞ୍ଚନ୍ତି ପଖା ନେଇ ଶୀତଳଜଳ । ଶାନ୍ତନୋହେ ତହେ
ବିରହ ଅନଳ ଯେ । ବୋଲନ୍ତି ଶୁଣ ଅହେ ନବ ନାଗର ।
କୃଷ୍ଣେ କେଉଁ ଥିବେଟି ରମଣୀବରଯେ । ।୫୩।

ତୁମ୍ଭଙ୍କୁ ନଦେଖି ସେ ମାନେ ଦୁଃଖୀ । ଗଲ ଯିଦା ସେ
ଥିବେ ପଥ ନିରେଖି ଯେ । ଏମନ୍ତ ଶୁଣି କୃଷ୍ଣ ସଖାଙ୍କ କରେ ।
କର ଦେଇ ଦେଉଣ ଗଲେ ବାହୁଡ଼ି ଯେ । ।୫୪।

ତେବେଣି ରାଧା ନଦେଖି ଧକ୍‌କା ପ୍ରସ୍ତି । ଲୋଡ଼ି କେତେହେଁ
ଦୂରେ ମିଳନ୍ତି ଯଶ ଯେ । ବୋଇଲେ ତୁମ୍ଭେ ଶଠ ନାଗରୀଙ୍କ
ବାଳା । ଛାଡ଼ି ଅଇଲ ଚମ୍ପା ଅମ୍ଭର ମେଳା ଗୋ । ୫୫ ।

ତୁମ୍ଭଙ୍କୁ ନଦେଖିଣ ସଙ୍ଗିନୀକୁଳ । ନ ବଞ୍ଚିବୁ ହୋଇଲୁ
ଯେତେ ଆକୁଳ ଗୋ । କାହିଁ ହୋଇଛ ତୁମ୍ଭେ ମାନସେ
ଦୁଃଖୀ । କୃଷ୍ଣ ଖୋଜିବା ଚାଲ ପଙ୍କଜମୁଖୀ ଗୋ । ୫୬ ।

ଏତେକ ବୋଲି ସବୁ ସଙ୍ଗିନୀ ମେଳ । କୃଷ୍ଣଙ୍କୁ ଅନ୍ୱେଷ
ବନରେ ଚଳ ଯେ । ଦେଖିଲେ ତହିଁ ଚନ୍ଦ୍ରାବଳୀ ସଖୀଙ୍କି ।
ସେ ପୁଛନ୍ତି ବନରେ ଭ୍ରମ କାହିଁକି ଗୋ । । ୫୭ ।

ବିଶାଖା ବୋଲନ୍ତି ଗୋ ପ୍ରାଣସଙ୍ଗିନୀ । କହି ଥିଲେ ସେ
ପୂର୍ବେ ଦୁର୍ବାସାମୁନି ଯେ । ଏବେ ଯେବେ ସୂର୍ଯ୍ୟ ପୂଜା କରନ୍ତିରାଧା ।
ପୁଷ୍ଟ ହୋଇବୁ ବନେ ହୋଇ ଶରଧା ଗୋ । । ୫୮ ।

ଲଳିତା ବୋଲନ୍ତି ଗୋ ତୁମ୍ଭେ କହଁଇ ; ବନେ ଭ୍ରମଣ
କର ଏକାନ୍ତ ହୋଇ ଯେ । ପଦ୍ମା କହନ୍ତି ପୁଣ ଏମନ୍ତ ଗୀର ।
ବେଣୀ ଯେ ଥିଲେ ଚନ୍ଦ୍ରାବଳୀ ଆମ୍ଭର ଗୋ । । ୫୯ ।

ପୌର୍ଣ୍ଣମାସୀ ପାଶକୁ ଯିବାର ବେଳେ । ଶ୍ରୀକୃଷ୍ଣ ଅଛି ପଥ
ଓଗାଳ ବନେ ଯେ । କହିଲେ ଚନ୍ଦ୍ରାବଳୀ ସଙ୍କେତ ଅର୍ଥେ ।
ପ୍ରବେଶ କରାଇବ ଗଉରୀତୀର୍ଥେ ଯେ । । ୬୦ ।

ଏମନ୍ତ ବୋଲି କୃଷ୍ଣ ଗଲେ ଯେ ଚଳ । ଅମ୍ଭେ ଯାଉ
ଅଣିବୁ ସେ ଚନ୍ଦ୍ରାବଳୀ ଯେ । ଏମନ୍ତ କହି ସଖୀ ହେଲେ
ଅନ୍ତର । ଶୁଣି ଶ୍ରୀମତୀ ଚିତ୍ତେ ଅତି କାତର ଯେ । ୬୧ ।

କେହୁ ସଙ୍ଗିନୀ ତହିଁ କହେ ଏମନ୍ତ । ବିପକ୍ଷ ଜନ ବାଣୀ
ମଣିଲ ସତ ଗୋ । ନନ୍ଦ ବାଳକ ଅଟେ ପରାଣମିତ । ଚାଲ
ଦେଖିବା ଯାଇ ଯଶୋଦା ସୁତ ଗେ । । ୬୨ ।

ଏମନ୍ତ ବୋଲି ତହିଁ କଲେ ଗମନ । ଦେଖିଲେ ଯାଇ
ପଦ୍ମପାଦର ଚିହ୍ନ ଯେ । କେ ବୋଲେ ବେନି ଗଣ୍ଡା ସଙ୍ଗତେ
ମିଳି । କଉଏ କରନ୍ତି ସେ ଶ୍ରୀବନମାଳୀ ଗୋ । । ୬୩ ।

ଦେଖି ଶ୍ରୀମତୀ ଯେବେ ଶ୍ରୀପଦଧୂଳି । ଶିରେ ଲଗାଇ ଉରେ
ଯତନେ ବୋଳ ଯେ । କୃଷ୍ଣ କରନ୍ତେ ରହୁଁ ନଚଳେ ପାଦ ।
ସ୍ୱେଦ ପୂରିତ ଅଙ୍ଗ କଣ୍ଠ ଗଦ୍ଗଦ ଯେ । । ୬୪ ।
ଚନ୍ଦ୍ରବୋଧ ଯୁଗଳ ଅଶ୍ରୁ ପ୍ରବଳ । କମ୍ପନ୍ତ ଥରହର ମତି
ବହ୍ୱଳ ଯେ । ପଲ୍ଲବ ଶଯ୍ୟା କଣ୍ଟକ ଦୂର ଦେଖିଲେ । ବସ୍ତୁରହଲେ
ଶ୍ରୀକୃଷ୍ଣ ପହୁଡ଼ିଥିଲେ ଯେ । । ୬୫ ।
ଦେଖ କୁସୁମ ମାଳ ପଡ଼ିଛୁ ଖସି । କର୍ପୂର ଚନ୍ଦନରେ
ବାସ ପ୍ରକାଶି ଯେ । କରନ୍ତେ କୃଷ୍ଣ କରଥିଲେ ରୋଦନ ।
ଦେଖ ପଲ୍ଲବେ ଅଛୁ ଲୋଚନ ମାନ ଯେ । । ୬୬ ।
ଶ୍ରୀମତୀ କହେଲେ ନହିଁ ଶକ୍ତ ଯାଇ । ବୋଇଲେ ପଦମୋର
ନଚଳେ ନହି ଗୋ । ଶ୍ରୀକୃଷ୍ଣ ଅଙ୍ଗ ବାସ କର ଆସ୍ୱାଦ ।
ଏଣେ ଶ୍ରୀମତୀ ଦେଲେ ଅତି ପ୍ରମୋଦ ଯେ । । ୬୭ ।
ସଙ୍ଗୀଗଣ ଦେଇ ଚନ୍ଦ୍ରକେ କର । ବୋଲନ୍ତି ସଖୀ ଲକ୍ଷ୍ମୀ
କଲା ଅନ୍ତର ଗୋ । କ ଉପାୟ କରିବା କହିଦେଣ ବୁଝି ।
ଆମ୍ଭ ଆଶା ଛେଦିଲା ଲାବଣ୍ୟନିଧି ଗୋ । । ୬୮ ।
ଏଥିରୁ ନଚଳଇ ରମଣୀମଣି । ଅନ ଉପାୟ ଆମ୍ଭେ
କରିବା ପୁଣିଗୋ । ଏମନ୍ତ ବୋଲି କେଇଁ ତୁଳସୀ କରେ ।
ମାଳ ଚନ୍ଦନ ପାନ ଦେଲେ କଣ୍ଠରେ ଯେ । । ୬୯ ।
ବୋଇଲେ ଶ୍ରୀକୃଷ୍ଣଙ୍କ ଦିଅ ତୁ ନେଇଁ । ଯେବେ ତୁଳସୀ
ଅଛି ଶୀଘ୍ରେ ଚାଲଇ ଯେ । ଶ୍ରୀକୃଷ୍ଣଙ୍କ ପାଶେ ପ୍ରବେଶ
ହୋଇଲେ । ଶ୍ରୀମତୀଙ୍କ ଭଲବ ବାଧା କହିଲେ ଯେ । ୭୦ ।
ତୁମ୍ଭ ସ୍ନେହେ ରାଧା ଅଛନ୍ତି ଖେଦ । ଗମନ କରିବାକୁ
ନ ଚଳେ ପାଦ ଯେ ନରହେ କେହୁ ବସେ ଲୋଚନ
ଯାଇ । ଏଣେ ପ୍ରହାରୁ ଅଛୁ କୁସୁମ ଶର ଯେ । । ୭୧ ।

ଶ୍ରୀକୃଷ୍ଣ ବୋଲନ୍ତରେ ତୁଳସୀ ସଖୀ । ଭଣ୍ଡି ଯେ ଗଲେ
ମୋତେ କୁଞ୍ଜରେ ରଖି ଯେ । ଏଥା ବସି ମୁଁ ସୁଶାଷରେ
ଅଛୁଁ । ତତ୍ରେ ନ ବସୁରଲ ସଜନୀ କୁଳ ଗୋ । ୭୨ ।
ବେଗେ ଆଣ ମୋ ପ୍ରାଣଈଶ୍ୱରୀ ରାଧା । ଦର୍ଶନେ ବଳବ
ମୁଁ କନ୍ଦର୍ପ ବାଧା ଯେ । ଗଳାରୁ ପଦ୍ମମାଳା କାଢ଼ି ତୁରତେ ।
ତୁଳସୀ କରେ ଦେଲେ କହି ଏମନ୍ତେ ଯେ । । ୭୩ ।
କହୁତ ନିକୁଞ୍ଜରେ ମିଳାଅ ସତ୍ତ୍ୱ । ବଞ୍ଚିମୁଁ ଅବ ତୁମ୍ଭ ପଥକୁ
ଚାହିଁ ଯେ । ଶୁଣି ତୁଳସୀ ଗଲା ଅତି ସତ୍ୱରେ । ମିଳିଲା
ଯାଇ ଶ୍ରୀମତୀଙ୍କ ସମ୍ମୁଖରେ ଯେ । । ୭୪ ।
ବୋଇଲେ ଶ୍ରୀକୃଷ୍ଣ ତୁମ୍ଭ ବିନୁ ଦୁଃଖିତ । କୁଞ୍ଜେ ଅଛନ୍ତି
ମୋତେ କହି ପଠାଇଛ ଯେ । ପଦ୍ମମାଳାହିଁ ଦେଇଛନ୍ତି
ତୁମ୍ଭରେ । ଉଠି ଶ୍ରୀମତୀ ନେଇ ଲଗାଇ ଶିରେ ଯେ । ୭୫ ।
ଅତି ହରଷ ବହି ଲମ୍ବାଇ ଗଲେ । ସଖୀଙ୍କ ସଙ୍ଗ ଯାଇ
କୁଞ୍ଜେ ମିଳିଲେ ଯେ । ଦେଖି ଶ୍ରୀକୃଷ୍ଣ ଉଠି ପାଛୋଟି ଆସି ।
ବୋଲେ ବଚ ବଚନ ମଧୁର ଭାଷି ଯେ । । ୭୬ ।
ବୋଲନ୍ତି ଧନି ମୋତେ ଗଲୁ ତୁ ଛାଡ଼ି । ଏଣେ କନ୍ଦର୍ପ
ଦେଲା ମୋପରେ ଯାଡ଼ି ଯେ । ଛଳଦ ବିନୁ ଚ ଚାତ୍ରିକ
ଗତି ବ । ଏକଥା ଦକ୍ଷ ତୁ ନ କଲୁ ବିଚାରକରେ । ୭୭ ।
ଚନ୍ଦ୍ର ବିନା ଜେ ସ୍ଥିର ଚକୋର ମନ । ଜଳ ଛାଡ଼ିଲେ
କଣ୍ଠାରେ ଜ ମୀନରେ । ଶ୍ରୀମତୀ କହନ୍ତି କେ ପଙ୍କଜମୁଖ ।
ନ କହିବ ମୁଁ ଯେତେ ଲଭିଲି ଦୁଃଖ ହେ । । ୭୮ ।
ତୁମ୍ଭ ଦର୍ଶନ ଆଶେ ଜୀବନ ରଖି । ଏବେ ହିମୁଖ ଦେଖି
କୋଇଲି ହରଷିତ । ସୂର୍ଯ୍ୟଦର୍ଶନେ ପଦ୍ମ ନୋହେ ପ୍ରକାଶ ।
ସେହିପ୍ରକାରେ ଯେଉଁ ମୋ ହତି ଅଣ୍ଡ ଯେ । । ୭୯ ।

ଏମନ୍ତେ ରାଧା କୃଷ୍ଣ ସପ୍ରେମେ ଭଜି । ପ୍ରବେଶ ହେଲେ
ଚନ୍ଦ୍ରା କୁଞ୍ଜରେ ଯାଇ ଯେ । ଅତି ଅନନ୍ଦେ କଲେ ବୈଧ
ଲୀଳା । ରସିକବର କୃଷ୍ଣ ଯେ ହେମ ଶୀଳା ଯେ ।୮୦।
ଦୁହେଁ ଦୁହିଙ୍କ ମନ ମୋହେ ଶ୍ରାନ୍ତ । ଅତି ଅନନ୍ଦେ
ବଢ଼େ ଦିଗୁଣେ ପ୍ରେମ ଯେ । କୁଞ୍ଜେ କୁଞ୍ଜେ କରନ୍ତି ବୈଧ
ଲୀଳା । ପୁଣି ହେଉଁ କୁଞ୍ଜରେ ଅରମ୍ଭ ହେଲା ଯେ ।୮୧।
ଷନ ରଙ୍ଗରେ କୃଷ୍ଣ କଲେ ମଣ୍ଡଣି । ଅଂଶେଷ ଶ୍ରୀମନ୍ତ
ଯାଦବେ ଚଢ଼ିଁ ଯେ । ଏଅନ୍ତେ ପଶାଖେଳ ହେଲାଉବଳ ।
ଲୀଳାରେ ରାଧାକୃଷ୍ଣ ମନଯ ଖେଳଯେ । ।୮୨।
ଏମନ୍ତେ ଖେଳନ୍ତି ଗୋକୁଳ ଗୋପାଳ । ଚଉଦିଗରେ
ଅଗ୍ନି ହେଲା ପ୍ରବଳ ଯେ । ବନ ଉଠିଣ ମୃଗ ଗଣ ପଳାଇ ।
କେତେହେଁ ପକ୍ଷୀଗଣ ପ୍ରାଣ ହରାଇ ଯେ । ।୮୩।
ଦେଖି ଅଗ୍ନିଭୟରେ ଗୋପାଳ କୁଳ । କୃଷ୍ଣ ନାମକୁ ଚନ୍ତ
ହୋନ୍ତ ଅକୁଳେଯେ । ଶୁଣି ନନ୍ଦ କୁବେର ଯୋଡ଼ି କର ।
ପୁଚ୍ଛନ୍ତି ନନ୍ଦଙ୍କୁ ଏମନ୍ତ ଚିତ୍ତ ଯେ । ।୮୪।
ଏ ବୃନ୍ଦାବନ କୃଷ୍ଣ ବିହାର ସ୍ଥାନ । କେମନ୍ତ ହେଲା କହ
ଅଗ୍ନି ବଢ଼ନ ଯେ । ଚନ୍ଦ୍ର ଦେ ଦେବଗଣ ପାଳନ୍ତି ବନ ।
ଅମୃତ ବରୁଥନ୍ତି ନିତ୍ୟ ଗୋଚନ ଯେ । ।୮୫।
ଶୁଣି କୁବେର ଅତି ଆନନ୍ଦ ମନ । ଯୋଡ଼କଲ ଯଜ୍ଞେହେ
କୁବେର ନନ୍ଦନ ହେ । ଅତ ଗୁରୁ ସଙ୍ଗତି ପୁଚ୍ଛଲ ମୋତେ ।
ପ୍ରକାଶ କୋହିଚ୍ଛ ଏ ଶ୍ରୀ ଭାଗବତେ ଯେ । ।୮୬।
ଏତେ ବୋଲି ମୂକ ବୃନ୍ଦାବନଙ୍କ । ଅଗାଧ ଧନେ
ଦେଖି ପୌର୍ଣ୍ଣମାସୀଙ୍କ ଯେ । କହିଥାନ୍ତି ଅନ୍ୟେ ଯେ ବିଧି
ମତେ । କହନ୍ତି ମୁନିବର ଶୁଣ ଏମନ୍ତ ଯେ । ।୮୭।

କୃଷ୍ଣ ସଙ୍କେତେ ପଦ୍ମା ସହିତ ସଙ୍ଗତା । ଗୌରୀ ତୀର୍ଥେ
ଚନ୍ଦ୍ରାବଳୀଙ୍କି ଘେନି ଯେ । କୃଷ୍ଣ ଅଗମନକୁ ଉତ୍ସାହ ହୋଇ ।
ନିଜ ମନ୍ଦିରେ ଛନ୍ତି ଲୋଚନ ବିନ୍ଦି ଯେ । ।୮୮।
ଶ୍ରୀକୃଷ୍ଣ ରାଧା ସଙ୍ଗେ କରନ୍ତି ରଙ୍ଗ । ଅଳ୍ପ ଦିବସ ମଧ୍ୟେ
ସେ ଲୀଳା ଭଙ୍ଗ ଯେ । ଏମନ୍ତ ବୋଲି ଘେନି ପଦ୍ମଲ ସ୍ତ୍ରୀ ।
ଦ୍ୱାରେ ସମୀପେ ଶୀଘ୍ରେ ମିଳିଲେ ଯାଇ ଯେ । ।୮୯।
ଦେଖି କଷଣ୍ଠୀ ବଲ୍ଲାତଦ୍ଦିଁ ନଶେଇ । ବାହାରେ ରହି
ଚନ୍ଦ୍ରାବଳୀ ବିଷାଦ ଯେ । ଚାହିଁ କୁଞ୍ଜରେ ପଶାଇଁଥିଲ ଗୋପାଳ ।
ଶୁଣି ସେ ଚନ୍ଦ୍ରାବଳୀ କ୍ରୋଧ ହେବାରୁ ଯେ । ।୯୦।
ବୋଇଲେ ଦଗ୍ଧ ହେଉ ଏ ବୃନ୍ଦାବନ । ଯେଣ କରି ମୋ
ଅଣ୍ଣା କଲେ ଭଗନ ଯେ । ଏମନ୍ତ ବୋଲି ସଖୀଗଣଙ୍କୁ ରାଇ ।
ବୋଇଲେ ଜଟିଳାକୁ କହ ତୁ ଯାଇ ଯେ । ।୯୧।
ଶୁଣି ଧନଜା ଗଲା ଜଟିଳା ପାଶ । ତୋତେ କହିଲା
ଚନ୍ଦ୍ରାବଳୀ ସନ୍ଦେଶ ଯେ । ବୃନ୍ଦା ପଥରେ କାହିଁ ଅଛନ୍ତି
ବାଳୀ । କହେ ଗଉରୀତୀର୍ଥେ ସେ ଚନ୍ଦ୍ରାବଳୀ ଯେ । ।୯୨।
ଜଟିଳା ପୁଚ୍ଛେ ମନେ ବିଚାରିଣ ଥିଆ । ଦେଖିଲୁଟି ଭ ସୂର୍ଯ୍ୟ
ପୂଜନ୍ତି ର ଥା ଗୋ । କହନ୍ତି ବନେଛନ୍ତି ସଖୀ ସମ ଜା ।
ସୂର୍ଯ୍ୟ ପୂଜାରେ ବରୁ ଥାଇଲେ ଅଜା ଗୋ । ।୯୩।
ଜଟିଳା ପୁଚ୍ଛେ ପୁଣ ଭ ବରୁ କହ । ସନ୍ଦେଶ କହେ ପୀତା
ମ୍ବରେ ଯେନେହ ଗୋ । ବହୁ ବୋଲଇ ମନେ ବିଷାଦ
ହୋଇ । କାହିଁ ରହନ୍ତି ମୋତେ ଦେଖା ଅ ନେଇ ଯେ ।୯୪।
ଖଗେନ୍ଦ୍ରଙ୍କ ସଙ୍ଗତେ ଘେନି ଜଟିଳା । ସହରେ ଯାଇ ବୃନ୍ଦା-
ବନେ ମିଳିଲା ଯେ । କାତରେ ନାନ୍ଦୀମୁଖୀ ସେ ବୃନ୍ଦମଣ୍ଡ ।
ଶୀଘ୍ରେ ଜଟିଳା ଅଗେ ଅପ ମିଳନ୍ତି ଯେ । ।୯୫।

ତୋଳନ୍ତି ତୁମ୍ଭେ ଝପାଁ ଯାଅ ଜଳକୁ । ଶ୍ରୀମନ୍ତ ପଠେଅଇ
ଛତ୍ରି ଅମୃତ୍ତ୍ ଯେ । ଗ୍ରୀଷମେ ଅଷି ନ ପାଉଲେ ଭୂଞ୍ଜନ ।
ଦେଲେ ନେତ୍ ଶୀତଳ ପଦାର୍ଥମାନ ଯେ । । ୯୬ ।
ବୃତ୍ତି ବେଳଇ ଶୁଣ ଅନ୍ୟେ ହେଲା । କେଶରୀ ସଙ୍ଗେ
ହେମ ହରଣୀ ଲୀଳା ଯେ । ତୁମ୍ଭେ ଦେଖିବ ଗୃଲ ଅମ୍ଭ
ସଙ୍ଗତେ । ଗ୍ରୀଷମେ ବୃତ୍ତି ଗୃଲିନପାରେ ପଥେ ଯେ । ୯୭ ।
ନାନ୍ଦୀମୁଖୀ ବୋଲନ୍ତି ଏ ଭ ଚରିତ୍ର । ସିଂହ ହରଣୀ
ଲୀଳା ମଣୁଛୁ ଚିତ୍ତ ଗୋ । ନୟେନଙ୍କ ପ୍ରବୋଧ କହିଲେ
ଯେତେ । ଖରତର ହୋଇଣ ଯାଁଏ ତୁରତେ ଯେ । ୯୮ ।
ବାହୁଡାଲ ନପାର ପଛେ ଗୋଡ଼ାଇ । ନାନ୍ଦିମୁଖୀ ଯେ
ବୃନ୍ଦାବନ୍ତକୁ ଧାଇ ଯେ । ଦେଖି ଶୁଷ୍କ ସରୁଟା ଏମନ୍ତ ବୃକ୍ଷେ ।
କହିଲା ହେଲା ଏଥି ପ୍ରବେଶ ଅଗି ଯେ । । ୯୯ ।
ବୃନ୍ଦା କେତେ ନେତ୍ରେ ପ୍ରମାଦ ହେଲା । କଣ୍ଟ ହୋଇବ
ରାଧା ଶ୍ରୀକୃଷ୍ଣଲୀଳା ଯେ । ଦଶା ଦେଖିକୁ ବୃନ୍ଦ ବଣ୍ଟ ଅନାଇଁ ।
ପାଦବନ୍ଧରେ ପାର ପାତବ ଯାଇ ଯେ । । ୧୦୦ ।
ବୃନ୍ଦା ବୋଲନ୍ତି ଧାଇ ବାହୁ ସଖୀକୁ । ଦହ ଏ ବନ ବହୁ
ଲୀଳା ସୁଖକୁ ଯେ । ବୃନ୍ଦା ଅଦେଖେ ହେଲା ବନ ଦହନ ।
ଦେଖି ଜ୍ଞାନିଲା ଅତି କାତର ମନ ଯେ । । ୧୦୧ ।
ବେଢ଼ିଲା ଚଉପାଖେ ପଥ ନ ଦିଶେ । ବେଳକୁ ବେଳ
ଛନ୍ନ ଅନଳ ଘୋଷେ ଯେ । ଫିଙ୍ଗିବା ପଣନ୍ତରେ ଲାଗେ ଅନଳ ।
ଛଟାଫଟ ହୋଇ ବୃତ୍ତି ହୋଇ ଅଷ୍ଟ ଯେ । । ୧୦୨ ।
ନାନ୍ଦୀମୁଖୀ ଯେ ବଦ୍ଧମନ୍ତ୍ର ବୋଲନ୍ତି । କନ୍ୟାଦୋଷେ ଜନ୍ମିଲୁ
ସେ ମହାକଷ୍ଟ ଯେ । ଜନ୍ମର ପ୍ରତିଫଳ ଭୁଞ୍ଜ ଏଥର ।
ଷଟଇ ଶୁଣି ବୋଲେ ଏମନ୍ତ ଭୀରୁ ଯେ । । ୧୦୩ ।

ତୁମ୍ଭେ କେବଳଛ ପତିବ୍ରତା ଯେମନ୍ତ । ଅଗ୍ନି ଲିଭଲେ
ଅମ୍ଭେ ମରିବୁ ସତଗୋ । ନାନ୍ଦିମୁଖୀ ବୋଲନ୍ତି ହେଉ
ତେମନ । ଯଥ ସୁଜି ଅନଳ ଗଲା ବଢ଼ିନ ଯେ । ୧୦୪ ।

ଦେଖି ଜଟିଳା ଅତି ତୋଷ ମନରେ । ପଥେ ଯାଇ
ବାଖି ପ୍ରଶଂସା କରେ ଯେ । ପତିବ୍ରତା ସମ୍ପୂର୍ଣ୍ଣ ସବୁଲକ୍ଷଣ ।
ମୋ ବୋହୂ ଦେହ ଯାଉ ବଞ୍ଚିରି ପ୍ରାଣ ଯେ । । ୧୦୫ ।

ଏମନ୍ତ ରାଧାକୃଷ୍ଣ ଲୀଳାରେ ପ୍ରେମ । ଗୋବୃନ୍ଦ ପାଳ
ଦେଖି ଅଗ୍ନି ହେଲ ଯେ । ତାବନ୍ତ କୃଷ୍ଣ ବଳଦେବ ଶ୍ୟାମଘନ ।
ଏଥୁ ଉଷ୍ଣରୁ ଅସ୍ତି ରକ୍ଷ ଜୀବନ ଯେ । । ୧୦୬ ।

ଗୋପଙ୍କ ଅଙ୍ଗୁଳ ଜାଣି ମୋହନ । ରାଧା ପାଶୁ ଅନ୍ତର
ହେଲେ ବଦନ ଯେ । ମିଳିଲେକ ଗୋପାଳ ମେଳରେ ଯାଇ ।
ଗୋବୃନ୍ଦ ଗୋପାଳଙ୍କର ଅକୁଳ ହୃଦ ଯେ । । ୧୦୭ ।

ହେ ଅଗ୍ନି ତମ୍ଭ ଦଣ୍ଡ ନକର ଚିତ୍ତେ । ନୟନ ବୁଜି ତୁମ୍ଭେ
ରହ ସମସ୍ତେ ହେ । କେତେ ବୃଜାନ୍ତ କୃଷ୍ଣ ଅତି ସତ୍ୱରେ ।
ସଂହରିଲେ ଅନଳ ଗର୍ଭ ଭିତରେ ଯେ । । ୧୦୮ ।

ପୁଣି ଦେଖିଲେ ଅଗ୍ନି ହେଲା ଅଦୃଶ୍ୟ । ଦେଖି ଗୋରୁ
ଗୋପାଳ ମନେ ହରଷ ଯେ । ଏମନ୍ତରେ ଅତିତ ହୋଇଲା
ଅସ୍ତ । ଘରେ ପ୍ରବେଶ ହୋଇଲେ ଅନନ୍ଦ ଚିତ୍ତେ ଯେ । ୧୦୯ ।

ଅଗ୍ନି ଚରିତ ଶୁଣି ଶ୍ରୀପତେ ତୋଷ । ହେ ଚେତନେ
ଚଢ଼ାଇ କଲେ ପୀଡ଼ତାଣ ଯେ । ହେମାତଳେ କୃଷ୍ଣ ଜନା ଚଢ଼ି
ହେ ଉଛ । ହେ ତୋଳି ଧନ୍ୟ ଯଶୋଦା ନନ୍ଦନ ଯେ । ୧୧୦ ।

ଏଥିଅନ୍ତରେ ଶୁଣ ଅନ ଚରିତ । ନାରଦଙ୍କୁ ପୁଚ୍ଛନ୍ତି
କୁବେର ସୁତ ଯେ । ତୁମ୍ଭଙ୍କୁ ରାଧାକୃଷ୍ଣ ଲୀଳା ଚରିତ ।
ଜଣା ହେଲା କେମନ୍ତ କହ ବୁଝିତ ଯେ । । ୧୧୧ ।

ଶୁଣି ନାରଦ ଅତି ଆନନ୍ଦମନ । ପ୍ରଶଂସନ୍ତି ଯେ ଭକ୍ତ
କୁବେର ଧନ୍ୟ ହେ । ତୁମ୍ଭେ ପୃଚ୍ଛିଲ ଏହା ଅତି ଗୁପତ ।
ଭଦଭ ଶୁଣ କୃଷ୍ଣଲୀଳା ଚରିତ ଯେ । ।୧୧୨।
ପୂର୍ବେ ବ୍ରହ୍ମାଯେ ଗୋପପୁତ୍ରଙ୍କୁ ଅପହୃତେ । ସକଳ ମୁନି ମିଳି
ତାଙ୍କ ଅଗ୍ରତେଯେ । ପଚାରିଲୁ ଏ ଅର୍ଥେ ମର୍ମକୁ ଯାଅ ।
କହିଲେ ବେଦବର ଯେତି ସନ୍ଦେହ ଯେ । ।୧୧୩।
ଲୀଳା ବଖାନ ଅର୍ଥେ ବ୍ରହ୍ମାଣ୍ଡପତି । ନନ୍ଦ ଭୁବନେ
ହୋଇଛନ୍ତି ଉତ୍ପତ୍ତି ଯେ । ଗୋପାଳ ମେଳେ ବନ ଭୋଜନ
ଦେଖି । ମାନସରେ ହୋଇଣ ଅତିହିଁ ଦୁଃଖୀ ଯେ ।।୧୧୪।
ହରିଲି ସାକ୍ଷାତ ବ୍ରହ୍ମାଣ୍ଡପତି । ଗୋପାଳଙ୍କ ଉଚ୍ଛିଷ୍ଟ ଭଏ
ଭୁଞ୍ଜନ୍ତି ଯେ । ହରିଲି ବତ୍ସା ବାଳ ଯେତେ ଗରବ । ଜାଣି
ସେ ନାଥ କଲେ ଅଙ୍ଗରୁ ସର୍ବ ଯେ । ।୧୧୫।
ଦେଖି ମହିମା ଅତି ଆନନ୍ଦ ହୋଇ । ବତ୍ସା ସମର୍ପି ଅଜ
ଅଇଲି ମୁହିଁ ଯେ । ମୁଁ ଅନେକ କହିଲି ସ୍ତୁତି ବଚନ । କଲେ
ମୋ ଦୋଷ କ୍ଷମା ପଦ୍ମ ଲୋଚନ ଯେ । ।୧୧୬।
ଶୁଣି ସକଳ ମୁନି ମାନସେ ଚିନ୍ତି । କହିବା ଦରଶନ ବ୍ରହ୍ମା-
ଣ୍ଡ ପତି ଯେ । ଭରୂପେ କରୁଛନ୍ତି ଲୀଳା ବଖାଣ । ବ୍ରହ୍ମା
ଯୋଗ ମାର୍ଗ ଗୁପତ ଜ୍ଞାନ ଯେ । ।୧୧୭।
ଏମନ୍ତେ ସର୍ବ ଋଷି ମାନସେ ଘେନି । ବୃନ୍ଦାବନରେ ଯାଇ
ସତ୍ୱରେ ମିଳି ଯେ । ଦେଖିଲେ ଅତି ରମ୍ୟ ହୋଇଛି ବନ ।
ପୁଷ୍ପ ଫଳେ ଯତନ ପଲ୍ଲବେ ଘନ ଯେ । ।୧୧୮।
ଗୋପାଳ ଗଣ ଖେଳ ଦେଖି ହଜାଇ । ସର୍ବେ ସମାନ
କୃଷ୍ଣ ଚହିଲୁ ନାହିଁ ଯେ । ଅମ୍ଭଙ୍କୁ ଦେଖି ରକ୍ତ ଚକ୍ରେ କୁମା-
ରେ । ବେନି କରକୁ ନେଇଁ ଯୋଡ଼ିଲେ ଶିରେ ଯେ ।୧୧୯।

ବୋଇଲେ ମୁନିଗଣ ଦେଖ ଏ ଖେଳ । ବେଗରେ ଅମ୍ଭେ
ମାନେ ଅନୁ ଗଡ଼ଡ଼ ଯେ । ଅତି ସୁନ୍ଦର ପିଢ଼ ମାଧବୀ ତଳ ।
ବସିଲେ ସର୍ବ ଯୋଏ ହୋଇଣ ମେଳ ଯେ । ।୧୨୦।
ଅତି ଆନନ୍ଦେ ଏକ ଖେଳ ଭିଆଇ । ଚୌଷଠି କୋଠି
ଗୃହ ପାଳିରେ ଶୋଭ ଯେ । ଗୃହ ଗୃହ ସାରକୁ ରଖିଲେ
ଛନ୍ଦି । ମଧୁମଙ୍ଗଳ ସୁବଳ ଏକ ହୋଇ ଯେ । ୧୨୧ ।
ଦାମ ସୁଦାମ ଛନ୍ଦି ହୋଇଲେ ଏକ । ରାମକୃଷ୍ଣ ରହିଲେ
ସାକ୍ଷି ପ୍ରତ୍ୟେକ ଯେ । ଛକ୍କା ପଞ୍ଜା କଉଡ଼ି ପକାଇ ଏକେ । ଦଶ
ପଚିଶ ଦାନ ବୋଲିଣ ଡାକେ ଯେ । ।୧୨୨।
ଏ ଦାନ ଯେବେ ସାର ହୋଏ ବାହାର । ନପୁଂଶକ ଦାନଟି
ଯେ ଛକା ବାର ଯେ । ଗୃହ ଭିନ୍ନ ଦୁଇ ହୋଏ ହାତଦାନ ।
ଖେଳ ଖେଳ କୁମାରେ ଆନନ୍ଦ ମନ ଯେ । ।୧୨୩।
ଦାନ ବଳରେ ଚଉଦିଗ ବୁଲଇ । ମାଡ଼ ଖାଇଣ ଘରେ
ପାଚ ଉଠଇ ଯେ । ଦାନ ବାହୁନେ କେତେ ଦୂରେ ଗମନ ।
ମାଡ଼ଖାଇଲେ ଉଠି ଆସେ ବାହନ ଯେ । ।୧୨୪।
ଛକେ ରହିଲେ ମାଡ଼ ନଖାଇ ବସ୍ତି । ଏମନ୍ତେ ଯୋଏ
ଖେଳ ଖେଳନ୍ତି ପାଞ୍ଚି ଯେ । ଅଠର ଏ ସଯାର ବନ୍ଧନ ଦାନ ।
ଲ୍ଷିଙ୍କୁ ଛାନ ଏ ସଖାଙ୍କୁ ସନ୍ଧାନ ଯେ । ।୧୨୫।
ବନ୍ଧୁକୁ ହରାଇଣ ହାସ୍ୟ ପଗ୍ରହ । ରାକ୍ଷସ ଚାମର ଲକ୍ଷଣ
ହସ୍ତାତ୍ ଯେ । ଥୋକାଏ ବେଳ ଏହିରୂପେ ଖେଳିଲେ ।
ଗୋରୁଙ୍କୁ ଅନୁରାଗ ବନେ ଚଳିଲେ ଯେ । ।୧୨୬।
ମୁନି ସମସ୍ତେ ହେଲୁ ହରଷ ମନ । ଆସ ପଥେ ଦେଖିଲୁ
ଚତୁରାନନ ଯେ । ପୁଚ୍ଛନ୍ତେ କହିଲୁ ଏମନ୍ତ ବଚନ । ଯାଇ
ଥିଲୁ ସମସ୍ତେ ଶ୍ରୀବୃନ୍ଦାବନ ଯେ । ।୧୨୭।

ପ୍ରଭୁଙ୍କ ଦର୍ଶନ ନ ପାଇଲୁ କହିଁ । ଗୋପାଳ ଘୋଏ ଖେଳ ଖେଳନ୍ତି ତହିଁ ଯେ । ରହି ଦେଖିଲୁ ସବେ ଏମନ୍ତ ଖେଳ । ଗୁରୁ ପାଳି ଅବୋଧ ଗୁରୁ ଗୋପାଳ ଯେ । ୧୨୮ ।

ସାକ୍ଷି ପ୍ରକାରେ ବେନି ଗୋପାଳ ଥାଇ । ବ୍ରହ୍ମା ବୋଲନ୍ତି ତୁମ୍ଭେ ଚହ୍ନିଲନାହିଁ ଯେ ! ଭଗବାନଙ୍କୁ ଯାଇ ଦର୍ଶନ କର । ଜ୍ଞାନ ମାର୍ଗ ପୁଚ୍ଛିବା ଥିଲ ବଗୁର ଯେ । । ୧୨୯ ।

ଦର୍ଶନ ଦେଇ କୃଷ୍ଣ ଗଲେ ଭୁଲାଇ । କୃଷ୍ଣ ଗୋପାଳଙ୍କର ଭିନ୍ନ କାହି ଯେ । କିଜ ପାଶେ ଦଶ ପ୍ରତିଷ୍ଠ ଭଗତ । ତାଙ୍କ ସମାନେ ଅମ୍ଭେ କୋହୁଁ ଏ ସତ ଯେ । ୧୩୦ ।

ଇତର ଖେଳ ବୋଲି ଘେନିଲ ମନେ । ତୁମ୍ଭଉପଦେଶକୁ ଖେଳଲେ ବନେ ଯେ । କାମନା ଯାହା କଲ ଚହ୍ନିଲନାହିଁ । ଜୀବର ଜ୍ଞାନ କର୍ମ ବଗୁର ସେହି ଯେ । । ୧୩୧ ।

ଶୁଣି ସକଳ ମୁନି ପ୍ରଣାମି କହି । ବ୍ରହ୍ମା ବିଷ୍ଣୁ ଏକର ଭିନ୍ନ ନୁହଇ ଯେ । ତୁମ୍ଭେହେ କହ ଜ୍ଞାନ କର୍ମ ଘଟନା । ଅମୃର ବୃକ୍ଷ ଅଟେ ଅଜପ ସିନା ହେ । । ୧୩୨ ।

ବ୍ରହ୍ମା କହନ୍ତି ପିଣ୍ଡ ବ୍ରହ୍ମାଣ୍ଡ ସାର । ପଞ୍ଚିଶ ପ୍ରକୃତିରେ ଜୀବ ସଞ୍ଚାର ଯେ । ଏ ଘେନି ପଞ୍ଚଶାଇ ନାମଟି ତାର । ପାଳି ଗୋଟି କୋଟି ବ୍ରହ୍ମାଣ୍ଡ ପ୍ରକାର ଯେ । । ୧୩୩ ।

ପ୍ରକାଶ ହୋଇଅଛୁ ଚତୁର ଦିଗ । ଅଷ୍ଟ କାଳରେ ବାର ମାସ ପ୍ରୟୋଗ ଯେ । ଅଠ ଛକଟି ଅଷ୍ଟ କ୍ଷେତ୍ର ପ୍ରମାଣ । ତହିଁରେ ସାର ମାଜ ନଶାଇ ଜାଣଯେ । । ୧୩୪ ।

ଗୁରୁଶାନ ସାର ଦିବ୍ୟ ଗର୍ଭେ ଠୁଳ । ଜନମ ଦାନ କର୍ମେ ହୋଏ ପ୍ରବଳ ଯେ । ଗୁରୁ ବ୍ରହ୍ମାଟି ଉତପତି କରନ୍ତି । ରାମକୃଷ୍ଣ ତହିଁଟି ସାକ୍ଷୀ ଅଛନ୍ତି ଯେ । । ୧୩୫ ।

ଷଡ଼ାଙ୍ଗ ଅଠାଶ୍ଚ ଏ କପର୍ଦ୍ଦିମାନ । ଯଜନ ଯାଜନ ଅଧ
ଅଧ୍ୟାପନ ଯେ । ଦାନ ପ୍ରତିଗ୍ରହ ଏମାନେଟି ସତ ।
ଅଯୋଧ୍ୟ ମୁଖେ ବତିଶଗୁଣ ଖ୍ୟାତ ଯେ । ।୧୩୬।
ସପ୍ତ ଦାନ ସପ୍ତ ଅବରଣ । ସରିଜିଜୀବ ଗର୍ଭେଉତ୍ପତ୍ତି
ଜାଣ ହେ । ଦଶ ଦାନଟି ଦଶ ଇନ୍ଦ୍ରିୟ ସାର । ନପୁଂଷକଟି
ଦାନ ସେ ଛଡ଼ା ବାର ଯେ । ।୧୩୭।
ଧର୍ମାର୍ଥ କାମ ମୋକ୍ଷ ଦାନଟି ଗୃହ । ତ୍ରିଗୁଣ ପାପ ପୁଣ୍ୟ
ହୁଗା କରୁଛ ଯେ । ଚୌରାଶିକୋଠି ଏ ନରକ ପ୍ରମାଣ ।
ଦାନ ସ୍ଥନେ ଏଥିରେ ଭ୍ରମନ୍ତି ଜାଣ ଯେ । ।୧୩୮।
କେନ୍ଥ ଦାନ ବଳରେ ହୋଏ ଉଦ୍ଧାର । କେତିଲେ ଏ
ସଂସାର ମଧରେ ପାର ଯେ । ଶୁଣି ସର୍ବେ କହିଲୁ ଏମନ୍ତ
ଗୀର । ଅଜ୍ଞା ଦେଲେ ସେବକୁ ବୃନ୍ଦାବନର ହେ ।୧୩୯।
ବ୍ରହ୍ମା ଆନନ୍ଦେ ପୁଣ ବୋଇଲେ ହେଉ । ସମସ୍ତ ମୁନି
ଗଲେ ତପକୁ ତହୁଁ ଯେ । ଏକା ରହିଲି ମୁହିଁ ବ୍ରହ୍ମା
ପାଶରେ । କହିଲେ କରଦେଇ ମୋହର ଶିରେ ଯେ ।୧୪୦।
ଗୋପାଳ ରୂପିଥିଲେ ବ୍ରଜ ଲାଗି । ହର ପ୍ରସନ୍ନଟତାରେ
ହୁଅନ୍ତୁ ଅପେ ଯେ । ଗୋକୁଳେ ତୁମ୍ଭେ ଗୋପ କନ୍ୟା ରୂପାଅ ।
ପୂର୍ବେ ଦଣ୍ଡକମୁନି କୃଷ୍ଣେ ମିଶାଅ ଯେ । ।୧୪୧।
ଶ୍ରୀବୃନ୍ଦାବନଚନ୍ଦ୍ର ବିହାର ନାମ । ଅଷ୍ଟମରେ ଏଥିରେ
ହେଲା ବିଶ୍ରାମ ହେ । ଅତି ଅପୂର୍ବ ଗୋପୀ ଗୋବିନ୍ଦ ସ୍ତବ ।
କହେ ଜଗନ୍ନାଥ ନାରାୟଣ ଦେବ ଯେ । ।୧୪୨।



## ଷଷ୍ଠମ ନବମ ପ୍ରକାଶ ।

ରାଗ କେଦାର କାମୋଦି ।

ପିତା ଆଦେଶ ପାଇ ଆନନ୍ଦ ଚିତ୍ତେ । ଅସ୍ତ୍ର ବନ୍ଦିଯୁଗଳୁ
ଦେଖିଲୁ ପଥେ ଯେ । ଅଳପେ ବହ୍ନିସୂର୍ଯ୍ୟ ଯୁଗରେ ସାର ।
ହରିନାମରେ ଜୀବ ହୋଏ ଉଦ୍ଧାର ଯେ । । ୧୪୩ ।

ଯଶୋଦା ଖେଳ ବଳ ବଧି ଉଆଳ । ଦେଖି ଆନନ୍ଦମନେ
ଧରିଲୁ ଯାଇ ଯେ । ବନ୍ଦ ଯୋଗଜି ବାଣେ ଜାନବାଟେକ ।
ଧନ୍ୟେ ବୋଲନ୍ତି ଏ କଳପ୍ରିୟ ମନ୍ତ୍ର ଯେ । । ୧୪୪ ।

ଏମନ୍ତେ ଗୋପପୁରେ ଯାଇଣ ରହି । କୃଷ୍ଣଲୀଳାକୁ ଗୃହିଁ
ଆନନ୍ଦ ହୋଇ ଯେ । ସୁବେଶ ବର ନବ ବନିତା ଗଣଙ୍କୁ ।
ପିତା ମାତା ପେଷନ୍ତି ନନ୍ଦ ପୁରକୁ ଯେ । । ୧୪୫ ।

ନିରେଖୁଥାନ୍ତି ଶ୍ରୀକୃଷ୍ଣଙ୍କ ବଦନ । ସମସ୍ତ ନପାଇଣ
ଆକୁଳ ମନ ଯେ । କୃଷ୍ଣ ମଣୋହିଁ ଅବଶେଷ ପାଅନ୍ତି ।
ଗୋଷ୍ଠୁ ଫିବା ସମସ୍ତେ ନାଚି ଗୃହାନ୍ତି ଯେ । । ୧୪୬ ।

କୃଷ୍ଣ ରାଧାଙ୍କ ସଙ୍ଗ କର ଭାବନ । ସମସ୍ତ ନପାଇଣ
ଆକୁଳ ମନ ଯେ । ଧୁରେ ଚୋଳଥା ହୋଇ ନପାରୁଅଛେ ।
କର୍ଣ୍ଣପ ସଙ୍ଗଠଣ ହୋଇବ ଏବେ ଯେ । । ୧୪୭ ।

ସୁଦାମ ବୋଲନ୍ତି ହେ ଏକଥା ସତ । ତୁମ୍ଭ ଦର୍ଶନ ଅପେକ୍ଷେ
ସେ ବନିତା ଯୂଥ ହେ । ଖେଳୁଯେ ଥାନ୍ତି ନାଚି ବସି ପଥରେ ।
ତୁମ୍ଭଙ୍କୁ ଦେଖି ସେ ପଳାନ୍ତି ସତ୍ୱରେ ଯେ । । ୧୪୮ ।

ଶ୍ରୀକୃଷ୍ଣ ବୋଲନ୍ତି ସେ ଅବୋଧ ବାଳା । ଆମ୍ଭ ସଙ୍ଗତେ
କେମନ୍ତ କରିବ ମେଳା ଯେ । ଏଥକେ ଆମ୍ଭେ ଯମୁନାରେ
ସ୍ନାନ । ସାର ପୌର୍ଣ୍ଣମାସୀଙ୍କି କଲୁ ଦର୍ଶନ ଯେ । ୧୪୯ ।

ଦେଖି ଆନନ୍ଦମୟୀ କରୁଣା ହୋଇ । ଗାନ୍ଧର୍ବମନ୍ତ୍ର ଉପଦେଶକୁ କହି ଯେ । ଶ୍ରୀକୁଣ୍ଡେ କେଉଁ କରାଇଲେ ସାଧନ । ନାରୀ ଅଙ୍ଗରୁ ହେଲା ନାରଦ ନାମ ଯେ । ।୧୫୦।

ଦେବୀ ଆଜ୍ଞାରୁ ବୃନ୍ଦାପାଶେ ରହିଲ । ଦିନେ ପଥରେ କନ୍ୟାଗଣ ଦେଖିଲ ଯେ । ଶ୍ରୀକୃଷ୍ଣ ପଦରେଣୁ ଚର୍ଚ୍ଚିମନେ । ଧୂଳି ଖେଳ ଖେଳନ୍ତି ସେ କନ୍ୟା ମାନେ ଯେ । ।୧୫୧।

ସେଠାରେ ଯାଇ ଅମ୍ଭେ ହେଲୁ ଚନ୍ଦନ । ଦେଲେକ ଅଣି ଧୂଳି ଚୂଳ ଆସନ ଯେ । ଭକ୍ଷା ଦିଅନ୍ତେ ଧୂଳି ଅନ୍ନ ବ୍ୟଞ୍ଜନ । ସ୍ଥାପନ୍ତେ ପୂର୍ଣ୍ଣ କଷେଧିଲେ ଚନ୍ଦନ ଯେ । ।୧୫୨।

ଅନନ୍ଦମନ ହୋଇ କଲ୍ୟାଣ କଲୁ । କୃଷ୍ଣଙ୍କୁ ତୁମ୍ଭେ ବର ପାଅ ବୋଇଲୁ ଯେ । କନ୍ୟା ବୋଇଲେ ମିଥ୍ୟାସ୍ତ୍ରେଜନ ପାଇଁ । ମିଥ୍ୟା ବର ଦେଉଛ ତୁମ୍ଭେ ଗୋସାଇଁ ହେ ।୧୫୩।

ଯେତ ରାଜ କୁମାର ଆଭିର ଅମ୍ଭେ । ଏ ରୂପେ ସମ୍ପଠେଣ କହିଲ ତୁମ୍ଭେ ହେ । ବୋଇଲୁ ତୁମ୍ଭେ ଯେବେ ଅପ୍ରତ କର । ଏ ଖେଳ ଖେଳ ବସିଥାଅ ସେଠାର ହେ । ।୧୫୪।

ପ୍ରଥମେ ଏକ ଋଷି ମିଳିବେ ଆସି । ତାହାଙ୍କୁ ପୁରୋହିତ କର ସ୍ୱକେଶି ଗୋ । ସଙ୍କଠା ଦେଇ ତାଙ୍କୁ ପ୍ରବୋଧକର । ବୋଇଲୁ ଖେଳୁଥାଅ ସବ ସୁନ୍ଦର ଯେ । ।୧୫୫।

ସଙ୍କଠାବଞ୍ଛିନୀ ନାମ ତାଙ୍କର । ଏ ଖେଳ ଖେଳୁ ଯେ ମିଳିବେ ସତ୍ତ୍ୱର ଗୋ । ଏବେ କହିଣ ଅମ୍ଭେ ହେଲୁ ଅନ୍ତର । ପ୍ରବେଶ ହେଲେ ତହିଁ ଶ୍ୟାମସୁନ୍ଦର ଯେ । ୧୫୬।

ଜିତା ଉହାଜେ ରହି ଯେ କନ୍ୟା ଶୋଭ୍ର । ତହିଁ ମନ ଉଲ୍ଲାସ ହୋଇଲା ଲୋକ୍ଷ ଯେ । ସଖୀକୁ ବୋଲନ୍ତି ସେ ନବ ନାଗର । ତାଙ୍କ ସଙ୍ଗ ମିଳନ କେ କରୁ ପାର ହେ ।୧୫୭।

ଏମନ୍ତ ଶୁଣି ବନ୍ଧୁ ବାହାର ହୋଇ । ହୋଇଲେ ମିଶାଇବ
ତାହାଙ୍କୁ ମୂର୍ତ୍ତି ଯେ । ବୃନ୍ଦାଙ୍କ ଅନୁକୂଳେ ଚଳିଲେ ବନ୍ଧୁ ।
କେତେ ପ୍ରକାରେ ଗୃଲି ଦେଖାନ୍ତି ପନ୍ଥ ଯେ । ।୧୫୮।

ଖଣ୍ଡେକେ ଦୂର ଯାଇ ରହନ୍ତି ଦଣ୍ଡେ । କମ୍ପାଇ ଦେହ
ଘୋଟେ ଉଠଇ ଗୃଣ୍ଡେ ଯେ । କୁଞ୍ଜାଇଣ ହାବୋଡ଼ି ପଡନ୍ତି
ଗୃଲି । ଉଚେ ଡାକନ୍ତି ଶ୍ୟାମସୁନ୍ଦର ବୋଲି ଯେ ।୧୫୯।

ଏମନ୍ତେ କନ୍ୟାଗଣ ପାଶେ ପ୍ରବେଶ । ହୋଇଲେ ଶ୍ୟାମ
ଛନ୍ତିକି ତୁମ୍ଭ ପାଶ ଗୋ । ଶୁଣି ସେ ନବ କନ୍ୟା ଅସ୍ଥିର
ହୋଇ । ବୋଲନ୍ତିକି ଶ୍ୟାମ ଛାଡ଼ିଲ କାହିଁ ଯେ ।୧୬୦।

ଅମ୍ଭଙ୍କୁ ପଚାରୁଛ ଏକ ଆଶ୍ଚର୍ଯ୍ୟ । ଶୁଣିବାକୁ ତ ବଡ ଏ
ଲୋକ ଲାଜ ଯେ । ବନ୍ଧୁ ବୋଲନ୍ତି ବିଧୁବଦନୀ ଶୁଣ ।
ତ୍ରିଭୁବନ ମଙ୍ଗଳ ସେ ଶ୍ୟାମ ଗୁଣ ଯେ । ।୧୬୧।

ପଚାରିଲେ ତ ବ୍ୟଥା ପାଅ ମାନସେ । ତାହାଙ୍କୁ ଯେବେ
ଖେଳୁଥିଲ ହରଷେ ଯେ । ଏ ସଙ୍କଟା ଯେନ୍ତୁ ସଙ୍କଟା ଭଞ୍ଜନ ।
ତାଙ୍କ ସଙ୍ଗେ ଖେଳୁଛ ଆନନ୍ଦ ମନ ଯେ । ।୧୬୨।

କନ୍ୟା ବୋଲନ୍ତି ଶ୍ୟାମ ନାହାନ୍ତି ଏଥେ । କୁମାରୀଙ୍କି
କଳଙ୍କଦିଅ କି ଅର୍ଥେ ଯେ । ବନ୍ଧୁ ବୋଲନ୍ତି ଶୁଣ ନାରୀରତନ
ଦ୍ୱାଦଶ ପାଳି ଭ୍ରମ ଦ୍ୱାଦଶ ବନ ଯେ । ।୧୬୩।

ଅଷ୍ଟ ଛକ ଏ ଅଷ୍ଟ କୁଞ୍ଜ ନଦାନ । ମଧ୍ୟେ ଶ୍ରୀକୁଞ୍ଜ ବିଶେ
ଅଛି ରଞ୍ଜନ ଯେ । ତହିଁ ମଧ୍ୟରେ ଲୀଳା କରନ୍ତି ବେନି ।
ରାଧାକୃଷ୍ଣ ସମସ୍ତ ଲକ୍ଷଣ ଯେନି ଯେ । ।୧୬୪।

ଷୋଳ ସାର ଷୋଳସହସ୍ର ଗୋପନାରୀ । କାଳୀ ଶ୍ୟାମ
ରଙ୍ଗିଣୀ ଗଉରୀ ଗୃହ ଯେ । ଅମ୍ଭ ବଚନ ଯେବେ ହେଲ
ମାନସେ । ତୁମ୍ଭ ତାଙ୍କର ଲୀଳା ଏହି ପ୍ରକାଶେ ଯେ ।୧୬୫।

ଶୁଣି କୁମାରୀ ବସୁରନ୍ତି ମାନସ । ବାଞ୍ଛିତ ଫଳ ଅଛି
ହେଲା ପ୍ରବେଶ ଯେ । କନ୍ୟାଙ୍କୁ ମୋହି ବଡ଼ୁ ଆଶ୍ଚର୍ଯ୍ୟ
ହୋଇ । କହନ୍ତି କୃଷ୍ଣଚନ୍ଦ୍ର ଆସିବେ ଯଦି ଗୋ । ୧୬୭ ।
ଶୁଣି ଆନନ୍ଦମନ କୁମାରୀ ଯୂଥ । ବଡ଼ୁ ଗୃହାନ୍ତ କୁଣ୍ଡ
ଅଛିବା ପଥ ଯେ । ଖେଳ କୁମାରୀଗଣ ଆନନ୍ଦମନ ।
ଡାକନ୍ତି ପୁଣି ପୁଣି ସେ ବାର ଦାନ ଯେ । । ୧୬୮ ।
ଶୁଣି ଶ୍ୟାମସୁନ୍ଦର ଅସ୍ଥିର ହୋଇ । କନ୍ୟାଗଣ ପାଶରେ
ମିଳିଲେ ଯାଇ ଯେ । ଲୀଳା ପଦ୍ମ କରରେ ଅତିହିଁ ଶୋଭା ।
ଦେଖି କୁମାରୀଗଣେ ହୋଇଲେ ଲୋଭା ଯେ । ୧୬୯ ।
ମଦନଶରେ ଅତି ଅବଶ ହୋଇ । ଅନୁରାଗେ ଅପାଙ୍ଗେ
ଚଞ୍ଚିତ ଗୃହିଁ ଯେ । ଚରଣ ନଚଳେ ଲୋଚନ ନଷ୍ଟଳେ ।
ଗୃହିଁଲା ନଗୃହିଁଲା ପ୍ରାୟେ ରହିଲେ ଯେ । । ୧୬୯ ।
ମଧୁମଙ୍ଗଳ ସଙ୍ଗେ ଶ୍ରୀକୃଷ୍ଣ ମେଳ । ହୋଇ ଦେଖନ୍ତି ବନି
ଘର ମଣ୍ଡଳ ଯେ । କେଉଁ ସ୍ଥଳେ ପଲଙ୍କେ ଏକ ଚଉରୀ ।
ଉନ୍ନିଦ୍ରେ ଦେଖି ବଡ଼ୁ ବୋଲେ ଶ୍ରୀହରି ଯେ । । ୧୭୦ ।
ତୁମ୍ଭ ବଚନେ ଏଉନ୍ନିଦ୍ର ଶୟନେ । ବଚନ ସୁରତି ବଢ଼ାଅ
ବଦନେ ଯେ । ଶାକଟ଼ା ଖେଳ ପାଶେ ପ୍ରବେଶ ହେଲେ ।
ସମସ୍ତ କନ୍ୟା ଖେଳ ଛାଡ଼ି ରହିଲେ ଯେ । । ୧୭୧ ।
ଖେଳକୁ ଗୃହିଁ କୃଷ୍ଣ ସୁବର୍ଣ୍ଣ । ନାରଦ ଭାଅଣ ଏ
ଅନ ନୁହଇ ଯେ । ମଧୁମଙ୍ଗଳ କହେ ଏମନ୍ତ ଗୀର ।
ଯାହାକୁ ଘିବୃଥିଲ ରାତ୍ର ଦିନରହେ । । ୧୭୨ ।
ସେ ଅଛି ତୁମ୍ଭ ପାଶେ ପ୍ରବେଶ ହେଲେ । ତଥ ଘଟଣା
ଭଲା କରଣଥିଲେ ଯେ । ତାହାଙ୍କୁ ଦେଖି ତାଙ୍କ ଲଜ୍ଜିତ
ଚିତ୍ତ । ମନ୍ଥାଇ ହୋଇଅଛ ମଉନ ବ୍ରତ ଗୋ । ୧୭୩ ।

ଶୁଣି କୁମାରୀଗଣ ମନ୍ଦ ହସନ୍ତ । ବଚନ କହିବାକୁ ନ ବଳେ ଚିତ୍ତ ଯେ । ତହୁଁ ବୋଲନ୍ତି ନବ କୁମାରୀ ଗଣ । ନାହିଁବା କଥାହିଁ କହିବ ପୁଣ ଗୋ । ।୧୭୪।

ଉଲଗ୍ନେ ଜନ୍ମ ହେବ କୃଷ୍ଣ ସୁନ୍ଦର । ଏବେ ବିନା ନାହର ହୋଇ ଅମ୍ବର ଗୋ । ଏବାଣୀ ଶୁଣି କନ୍ୟା ଗଣ ହରଷ । ଖେଳ ଆରମ୍ଭି ବସେ ଶ୍ରୀକୃଷ୍ଣ ପାଶ ଯେ । ।୧୭୫।

ମଧ୍ୟମଣ୍ଡ ନାମେଣ ଯେ ଯୂଥେଶ୍ୱରୀ । ଶ୍ରୀକୃଷ୍ଣ ସଙ୍ଗେରଙ୍ଗେ ଖେଳେ ଚତୁରୀ ଯେ । ଅଙ୍ଗ ହାର ରଖିଲେ ଚତୁରୀ ଭୁଜ । ଶ୍ରୀକୃଷ୍ଣ ହୋଡ଼ କଲେ ମୁକୁତା ମାଳ ଯେ । ।୧୭୬।

ଖେଳନ୍ତେ ହରଷରେ କୃଷ୍ଣ ଜିଣିଲେ । ହାର ଦେଲେ ଚତୁରୀ ଶ୍ରୀକୃଷ୍ଣ ଗଳେ ଯେ । ପୁଣ ଖେଳନ୍ତେ ନବ କନ୍ୟା ଜିଣିଲେ । ତହୁଁ ଶ୍ରୀକୃଷ୍ଣ ସେହି ହାରକୁ ନେଲେ ଯେ ।୧୭୭।

କନ୍ୟା ଗଳାରେ ଅତି ଆନନ୍ଦେ ଦେଇ । ହୁଳହୁଳି ଦିଅନ୍ତି ସକଳ ସଖୀ ଯେ । ପୁଷ୍ପ ବରଷେ ତରୁ ଲତା ସକଳ । ମଙ୍ଗଳ ଧ୍ୱନି କଲେ ସେ ଦ୍ୱିଜକୁଳ ଯେ । ।୧୭୮।

ପୁଣି ଖେଳନ୍ତି କହି ଏହୁ ଉତ୍ତର । ଯେ ହାରିବ ନିଶ୍ଚୟେ ହେବ ତାହାର ଯେ । ଖେଳନ୍ତେ କୃଷ୍ଣଚନ୍ଦ୍ର ଜିଣିବା ଗୃହିଁ । ସକଳ ସଖୀ ଅତି ଆନନ୍ଦ ହୋଇ ଯେ । ।୧୭୯।

ତହୁଁ ବୋଲନ୍ତି ପୁଣ ଏମନ୍ତ ଭାଷ । ଯେ ହାରିବ ବହିବ ପାଲଟା ବାଜି ଯେ । ଖେଳନ୍ତେ ଶ୍ରୀକୃଷ୍ଣ ହାରିଲେ ସେଖେଳେ । ଏକାଳେ ବୁଡ଼ି ଏକ ମେଠାରେ ମିଳେ ଯେ । ।୧୮୦।

ନାମାରେ କର ଦେଇ କହଇ ପୁଣ । କହେଲା ନନ୍ଦଙ୍କୁ ହେଲ କୁମାରୀ ଗଣ ଯେ । କୁଳଶୀଳ ଛାଡ଼ିଲ ଲଜ୍ଜାକୁ ନାଶି । ନନ୍ଦସୁତଙ୍କ ସଙ୍ଗେ ଖେଳୁଛ ବସି ଯେ ।୧୮୧।

ଶୁଣି କୁମାରୀଗଣ ଗଲେ ପଳାଇ । ଶ୍ରୀକୃଷ୍ଣ ଗଲେ ତହିଁ
ଅନ୍ତର ହୋଇ ଯେ । ଏମନ୍ତେ କନ୍ୟାଗଣ ଶ୍ରୀକୃଷ୍ଣ ଧ୍ୟାଇ ।
ହରଷରେ ଅତ୍ୟନ୍ତ ଆକୁଳ ହୋଇ ଯେ । ।୧୮୨।

ଗୃହକୃତ୍ୟ ମାନଙ୍କୁ ତେଜିଲେ ସବେ । ଶ୍ରୀକୃଷ୍ଣ ରୂପ ଗୁଣ
ମାନସେ ଭାବେଯେ । ଅନାହତସ୍ଥ ତାଙ୍କ ଚିତ୍ତେ ନଥାଇ ।
ବାରବ୍ରତ କରନ୍ତି ଶ୍ରୀକୃଷ୍ଣ ଧ୍ୟାଇ ଯେ । ।୧୮୩।

ଏଅନ୍ତେ ହେମନ୍ତ ଋତୁ ହୋଏ ପ୍ରବେଶ । ବିୟୋଗି ଜନେ
ହେଲେ ଶୀତେ ଅବଶ ଯେ । ଦୀନଜନ ହୋଇଲେ ଅତି
କାତର । ଦନ୍ତ କମ୍ପାଇ ଉଦରେ ତୁହିଣ କର ଯେ ।୧୮୪।

କାନ୍ତ ଅଙ୍ଗେ ଜଡ଼ିକେ ଆନନ୍ଦ ମନ । ଉଷ୍ଣ ଗୃହେ
ଓଢ଼ିଣ ଲୋମ ବସନ ଯେ । ଏକାଳେ କନ୍ୟାଗଣ ନାରଦେ
ଗୃହିଁ । ବୋଲନ୍ତି ମିଥ୍ୟା ବର ଦେଲ ଗୋସାଇଁ ହେ ।୧୮୫।

ନବଘନ ଉଦୟ ହୋଇ ଆକାଶେ । ଜଳ ନଦେଇ
ଗୃତକଙ୍କୁ ନ ତୋଷେ ଯେ । ନାରଦ ବୋଲନ୍ତି ଗୋ ରମଣୀ
ହର । ଏ ହେମକାଳେ ତୁମ୍ଭେ ତପସ୍ୟା କର ଗୋ ।୧୮୬।

କରୁଣା ଚିତ୍ତ ହୋଇ ଯେ ଶ୍ୟାମଘନ । କୃପା ଜଳ
ବରଷା କରିବେ ଘନ ଯେ । ନାରଦ ବାଣୀ ଶୁଣି ଆନନ୍ଦ
ମନ । ହେମନ୍ତେ ମାର୍ଗଶିରେ କଲେ ସ୍ନାନ ଯେ । ୧୮୭ ।

ନିତି ସ୍ନାନ କରନ୍ତି ସକଳ ବାଳା । ହେବସେ କାତ୍ୟାୟିନୀଙ୍କ
ବ୍ରତ ପାଳ ଯେ । ଦେଖି ଶ୍ରୀକୃଷ୍ଣ ମନେ ଅତି ଆନନ୍ଦ ।
ଛଳେ ପ୍ରବେଶ କି ହେମ ଅରବିନ୍ଦ ଯେ । ।। ୧୮୮ ।

କନ୍ୟାଙ୍କ ବାସ କୃଷ୍ଣ କୂଳରେ ଗୃହିଁ । ପଦ୍ମ ବାସେ ଭ୍ରମର
ଉଡ଼ନ୍ତି ତହିଁ ଯେ । ବଚ୍ଚ ବଚନ କୃଷ୍ଣ ମନେ ବିଚାର ।
ବାସ ଉଡ଼ାଇ ବୃକ୍ଷେ ପଡ଼ିବା କର ଯେ । ।୧୮୯।

କେତେ ବାସ କଦମ୍ବେ ଅଗନ୍ତ ଭର । ବଂଶୀ ବଜାନ୍ତି କନ୍ୟା ନାମ ଉଚ୍ଚାର ଯେ । ଶୁଣି କୁମାରୀଗଣ ଉରସ୍ତ ହୋଇ । ଦେଖିଲେ ସର୍ବେ କୂଳେ ବସନ ନାହିଁ ଯେ ।୧୯୦

କଦମ୍ବକୁ ଗୃହିଁଲେ ସର୍ବ ସୁକେଶୀ । ଶ୍ରୀକୃଷ୍ଣ ରଙ୍ଗେ ବସି ବଜାନ୍ତି ବଂଶୀ ଯେ । ମରଣୁ ବଳଲାଜ ଲାଜ ଅମ୍ଭର । ଜାକନ୍ତି ଅମ୍ଭ ବାସ ଦିଅ ନାଗର ହେ । ।୧୯୧।

ପୁଣ ବୋଲନ୍ତି ଅମ୍ଭ କନ୍ୟା ଯେନ । ମହତ୍ତ୍ୱ ରଖ କୃଷ୍ଣ ଦେଇ ବସନ ହେ । ତୁମ୍ଭର ଦାସୀ ସେନା ଏ ଅବେଗ୍ରର । ଲୋକ ଦେଖିଲେ ହାନ ହେବ ହାହାର ହେ । ।୧୯୨।

କୃଷ୍ଣ ବୋଲନ୍ତି ଶୁଣ ଚତୁରୀ ଗଣ । ଉଠାଇ ନେଉଥିଲା ଚନ୍ଦ୍ର ପବନ ଗୋ । ଅମ୍ଭେ ଯତନେ ଅଣି କଦମ୍ବେ ରଖି । ଦୋଷ ଦେଇ ଆମ୍ଭଙ୍କୁ କହ ସମ୍ମୁଖୀ ଗୋ । ।୧୯୩।

ଜଳରେ ପଶି ତୁମ୍ଭେ ଉଲଙ୍ଗ ହୋଇ । ଅନାଉ ଦେଖି ବାୟୁ ବାସ ଉଡାଇ ଗୋ । ଶୀଘ୍ର କମ୍ପନ୍ତୁ ଏବେ ଜଳରୁ ଆସ । ଚହ୍ନି ନିଅ ତୁମ୍ଭେ ଯେ ଯାହାର ବାସ ଗୋ । ୧୯୪ ।

କୃଷ୍ଣ ବଚନେ କନ୍ୟା ଲୁକଯେ ହ୍ରାଷେ ! ବନ୍ଧୁ ବଚନଏବେ ହୋଇଲା ଆସି ଗୋ । କୃଷ୍ଣ ବୋଇଲେ ଯାହା ତାହା କହିବା । ବୁଡି ଜଳରେ ଅଉ କେତେ ରହିବାଗୋ ।୧୯୫।

ଏତେବୋଲି କନ୍ୟାଏ ଜଳୁ ଅସନ୍ତି । ଶ୍ରୀକୃଷ୍ଣ ଦେଖି ଅତି ଅନନ୍ଦ ମତି ଯେ । ଲୁନ୍ତନ୍ତି ଘନ ପୃଷ୍ଠ ଦେଶେ ତରଙ୍ଗ । ମୁଖ ପଦ୍ମେ ଅଳକା ଭ୍ରମର ଭ୍ରାନ୍ତି ଯେ । ।୧୯୬।

ପ୍ରକାଶ ଅତି ରୋମ ବଳ ଉଜଳ । ହେମ ଘଟରୁ ଭ ଜାହ୍ନବୀ ତନ୍ତ୍ରାଜ ଯେ । ନବକୁମ ରୀଗଣ ସର୍ବାଙ୍ଗେ ଶୋଭା । ଦେଖି ଶ୍ରୀକୃଷ୍ଣ ମନ ନୟନ ଲୋଭ ଯେ । ।୧୯୭।

ଏକ ଅଙ୍ଗରେ ସହସ୍ରଗୁଣେ ପ୍ରକାଶ । ଅତି ସୁନ୍ଦର ରୂପ
ସମ ବପୁ ଯେ । କୃଷ୍ଣ ବୋଲନ୍ତି ଶୁଣ କନ୍ୟା ସକଳ ।
ଯମୁନା ଜଳରେ ଉଲଗ୍ନେ ପଶିଲ ଯେ । ।୧୯୯।

ଏ ଅପରାଧ ସୂର୍ଯ୍ୟଙ୍କୁ ଦର୍ଶନ କର । ଖଣ୍ଡନ କର ଏବେ
ସର୍ବ ଚତୁରୀ ଯେ । ଶ୍ରୀକୃଷ୍ଣ ଅମୃତ ବଚନକୁ ଶୁଣି । ଲଜ୍ଜା
ଅନ୍ତର କଲେ ସର୍ବ ତରୁଣୀ ଯେ । ।୧୯୯।

ଦକ୍ଷିଣ କର ଦେଲେ ମସ୍ତକପରେ । ନାଗରବର ସିଂହ
କହନ୍ତି ଧୀରେ ଯେ । ଏକ କରେ ଦେବତା କଲେ ଦର୍ଶନ ।
ଦ୍ୱିଗୁଣ ପାପ ହୋଏ ମୋ ବାଣୀ ଘେନ ଗୋ । ।୨୦୦।

ଦୁଇଁ ଅଞ୍ଜଳି ତୁମ୍ଭେ ଏତେ ପାତକ । ଯେବେ କରିବୁ
ନେଇ ଦିଅ ମସ୍ତକ ଗୋ । କୃଷ୍ଣ ବଚନ ଶୁଣି ସର୍ବ ତରୁଣୀ ।
ନେଇ ମସ୍ତକେ ଯୋଡ଼ିଲେ ବେନି ପାଣି ଯେ । ।୨୦୧।

କୃଷ୍ଣ ଦେଖିଣ ଅତି ଆନନ୍ଦ ହୋଇ । ନିର୍ମଳ ମନ ଘେନି
କରୁଣା ବହି ଯେ । ଯେଝା ବସନ ନିଅ ବୋଲନ୍ତି ହରି ।
ଅଙ୍ଗୁଳି ଦେଖାଇ ମାଗନ୍ତି ସୁନ୍ଦରୀ ଯେ । ।୨୦୨।

କେ ବୋଲେ ମୋର ହଂସାବଳୀ ବସନ । କେ ବୋଲେ
ପୁଷ୍ପ ରଞ୍ଜି କମ ଶୋଭନ ଯେ । କେ ବୋଲେ ଚନ୍ଦ୍ରୋଦୟ ଶାଢ଼ି
ମୋହର । କେ ବୋଲେ ପୁଣି ତାରାବଳୀ ଅମ୍ବର ଯେ ।୨୦୩।

କେ ବୋଲେ ପୀତବାସ କ୍ଷୀରୋଦ୍ର ମୋର । କେ ବୋଲେ
କାନ୍ଥପଡ଼ି ଦିଅ ସତ୍ୱର ହେ । କୃଷ୍ଣ ବୋଲନ୍ତି ଶୁଣ ରମଣୀ
ଗଣ । ବସନ ଦେଲେ ତୁମ୍ଭେ କ ଦେବ ପୁଣ ଗୋ ।୨୦୪।

କେ ବୋଲେ ଅଙ୍ଗେ ମୂର ଛିଡ଼ିକି ଦେବା । ବନ୍ଦା ତୁମ୍ଭ
ପାଦେ କରିବୁ ସେବା ହେ । ଶ୍ରୀକୃଷ୍ଣ ବାସ ଦେଲେ ଜଣଜଣଙ୍କୁ
ଯାଚି ପାଇଲେ କନ୍ୟା ଚିହ୍ନି ରଙ୍ଗକୁ ଯେ । ।୨୦୫।

ଚପଳ ପିନ୍ଧି କନ୍ୟାଗଣ ଅଙ୍ଗନ । ବୃକ୍ଷରୁ ଓହ୍ଲାଇଣ ଆସ୍ତ
ଗୋବିନ୍ଦ ଯେ । ତ୍ରିଭଙ୍ଗିଛନ୍ଦେ ଉଭାହୋଇ ଶ୍ରୀହରି । ନଟବର
ବେଶରେ ମୁରଲୀ ଧରି ଯେ । ।୧୦୬।

କନ୍ୟାଗଣ ମଧ୍ୟରେ ଦିଶନ୍ତି ଶୋଭା । ହେମ ପଦ୍ମେ କି ନୀଳ
ନାଗର ଅଛି ଯେ । କୃଷ୍ଣ ବୋଲନ୍ତି ଶୁଣ ସକଳ ସଖି ।
ଦେଖାଦେଲ ଅମ୍ଭଙ୍କୁ ଉଲଗ୍ନ ହୋଇ ଯେ । ।୧୦୭।

ଏ ପ୍ରାୟଶ୍ଚିତ୍ତେ ହେବ ଏ ପାପ ନାଶ । କାହାକୁ ପ୍ରକଟିବୁ
ଏଥି ସନ୍ଦେଶ ଯେ । ବୃନ୍ଦା ଅବେଶେ ଶୁଣ କହେ ବଚନ ।
ସାବଧାନେ ଶୁଣିମା ନନ୍ଦନନ୍ଦନ ହେ । ।୧୦୮।

ଉଲଗ୍ନ ଦୋଷ ମୁନିଶାସ୍ତ୍ରେ ପ୍ରକାଶ । ନାରୀ ଉପଦେଶରେ
ଛିଡ଼ି ସନ୍ଦେଶ ଯେ । ଯାଣି ପ୍ରଭୁଙ୍କୁ ଦେଇ କର ପୂଜନ ।
ଦ୍ୱିଜରାଜ ବଦନେ ଚୁମ୍ବନ ଦାନ ଯେ । ।୧୦୯।

କୃଷ୍ଣ ବୋଲନ୍ତି ଶୁଣ ସବୁ ସଜନୀ । ସ୍ୱଶମ୍ଭୁ ସ୍ତ୍ରୀ ଦ୍ୱିଜରାଜ
ବଦନୀ ଗୋ । ଶରତରେ କାର୍ତ୍ତିକ ପୌର୍ଣ୍ଣମୀ ଦିନ । ତୁମ୍ଭଙ୍କୁ
ଦେବୁ ଅମ୍ଭେ ଏ ମହା ଦାନ ଗୋ । ।୧୧୦।

ଦୃଢ଼ବ୍ରତ କନ୍ଦର୍ପ ମୋତେ ଭଜିଲ । କୁଳଶୀଳ ଲଜ୍ଜା ମୋ
ଲାଗି ତେଜିଲ ଗୋ । ଏବେ ବୃନ୍ଦାବତୀଙ୍କ କର ସେବନ ।
ଶିଖ ହୃଦେ ଗୋପ ଲୀଳା ବିଧାନ ଯେ । ।୧୧୧।

ଗୋ ନବ ବିଦ୍ୟା ଶିଖ ସିଦ୍ଧହୋଇବ । ନାନ୍ଦୀମୁଖୀ ବଦିଲେ
କାମନା ହେବ ଗୋ । ଶିଖିବ କାମ ବୀଜ ଉପାସନାକୁ ।
କନ୍ଦର୍ପ ବଶ ହୁଇଁ ଯେନ ମନକୁ ଗୋ । ।୧୧୨।

ବର୍ଣ୍ଣନ ଗଲେ ରାସଲୀଳା ଭଲାଯେ । ତୁମ୍ଭମନ ତୋଷିବ
ଯେନ ମାନସେ ଗୋ । ଶ୍ରୀକୃଷ୍ଣ ବାଣୀଶୁଣି ସର୍ବସୁକେଶୀ । ଅତି
ଆନନ୍ଦେ ନିଜପୁରରେ ପ୍ରବେଶି ଯେ । ।୧୧୩।

ତହୁଁ ଶ୍ରୀକୃଷ୍ଣ ସଖା ସଙ୍ଗେ ମେଳରେ । ଦେଖି ବଟୁ ଦ୍ରୁହାସ୍ୟ ବଚନ ବୋଲେ ଯେ । ସଙ୍ଗୀତରସେ କାନ୍ତାଗଣେ ଯେବଟେ । ତାଙ୍କୁ ଗୋରୁ ଗୋପାଳ କଥା ଖରୁଚେହେ । ।୨୧୪।

ଶୁଣି ଶ୍ରୀକୃଷ୍ଣ ହସି ବଟୁକୁ ଭାଷି । ତୁମ୍ଭବଚନ ଆଜ ଫଳିଲା ଅଟିହେ । ଏମନ୍ତେ ଗୋଦୋହନମାନ କରାଇ । ପୁରେ ପ୍ରବେଶ ହେଲେ ଆନନ୍ଦେ ଯାଇ ଯେ । ।୨୧୫।

ଶୁଣି ନଳ କୁବେର ଯୋଡ଼ିକର । ନାରଦଙ୍କୁ ପୁଛନ୍ତି ଏମନ୍ତ ଗୀତ ଯେ । ନବଯୌବନା ନାରୀଗଣ ସ୍ୱଚ୍ଛେ । ଏକାନ୍ତରେ ମେଳିଲେ ଶ୍ରୀକୃଷ୍ଣ ଭାବେ ଯେ । ।୨୧୬।

ଶ୍ୟାମସୁନ୍ଦର ନବକିଶୋର ବର । ନକଲେ କପି ତାଙ୍କ ସଙ୍ଗେ ବେଭାର ଯେ । ନାରଦ ବୋଲନ୍ତି ହେ ନଳ କୁବେର । ଶୁଣ କହୁଛି ମୁଁ ତହିଁର ବିସ୍ତର ଯେ । ।୨୧୭।

କନ୍ୟା ଏମନ୍ତ ଉପାସନା ବହୀନ । କରନାହାଁନ୍ତି ଶ୍ରୀମତିଙ୍କି ସେବନ ଯେ । କଲେ ସଙ୍କେତ ତାଙ୍କ ରାସ ଉତ୍ସବ । ସେ ରାସେଶ୍ୱରୀ କୃପା ହୋଇଲେ ହେବ ଯେ । ।୨୧୮।

କାମବୀଜରେ ରାଧା ଚରଣ ଧ୍ୟାଇ । ତେବେ ସେ କୃଷ୍ଣ ଅଙ୍ଗସଙ୍ଗକୁ ପାଇ ଯେ । ପୁଣ କହନ୍ତି କୃଷ୍ଣଲୀଳା ରହସ୍ୟ । ହେମନ୍ତରୁ ଅନ୍ତେ ଶିଶିର ପ୍ରବେଶ ଯେ । ।୨୧୯।

ଅତି ପ୍ରବଳ ହେଲା ତୁଷାର ବୃଷ୍ଟି । କୁହୁଡ଼ି ରହ ବନ ପର୍ବତ ଘୋଟି ଯେ । ମକର ପ୍ରବେଶନ୍ତେ ଲୋକେ ହରଷ । ପୁରେ ପୁରେ ଉତ୍ସବ କଲେ ବିଶେଷ ଯେ । ।୨୨୦।

ମନାଧିକ ଭାଜନ ଯାତ୍ରା କୁ ସର୍ବେ । କଲେ ବସନ୍ତ ପଞ୍ଚମୀର ଉତ୍ସବ ଯେ । ଏକାଳରେ ଶ୍ରୀକୃଷ୍ଣ ଉତ୍ସୁକ ମନ । ରାତ୍ରେ ରାଧା ପୁରକୁ କଲେ ଗମନ ଯେ । ।୨୨୧।

ଅତିହିଁ ଅନ୍ଧକାରେ ନଦିଶେ ପଥ । ଏଣେ ଶର ପ୍ରହାର
କରେ ମନ୍ମଥଯେ । ଏଣେ ଶ୍ୟାମଳ ତନୁ ନୀଳ ବସନ ।
ଗାଢ଼ ଅନ୍ଧକାରରେ ହୋଇଲେ ଲୀନଯେ । ।୧୧୧।

ଲୋକ ଭୟରେ କୃଷ୍ଣ ପଥକୁ ଛାଡ଼ି । ଲୁଚି ଲୁଚି ଯାଆନ୍ତି
ଅପଥ ମାଡ଼ିଯେ । କଷ୍ଟେ କଷ୍ଟେ ଯାବତେଁ ପ୍ରବେଶ ହେଲେ ।
ଅତି ଅଦ୍ଭୁତ ରାଧା ପୁର ଦେଖିଲେଯେ । ।୧୧୩।

ଦ୍ୱାରେ ଜଗି ସମସ୍ତ ନପାର ହଠି । ଶୀତେ ତନୁ କମ୍ପଇ
ରୋମ ଠାଙ୍କୋଳିଯେ । ଲୋକ ଜାଗ୍ରତ ଜାଣି ପଳାଇ ଅଛି ।
ପୁଣି ସମୀପେ ଛପି ଛପି ପ୍ରବେଶିଯେ । ।୧୧୪।

ଯିବା ଆସିବା ଲୋକ ଛଟକ ଜାଣି । ଭିତରେ ପ୍ରବେଶିଲେ
ମୁରଲୀପାଣିଯେ । କେଉଁଠାବରୁ ହୁଡ଼ି କାନ୍ଥ ବାହୁଡ଼ି । କାହିଁ
ଜେଉଁଯାଆନ୍ତି କାହିଁରେ ପଡ଼ିଯେ । ।୧୧୫।

ଦମଦମ ହୃଦୟ ମନ ଚଞ୍ଚଳ । ଘରେ ଘରେ ଖୋଜନ୍ତି
ହୋଇ ଆକୁଳଯେ । ପଦ୍ମଗନ୍ଧ ଯେସନେ ଜାଣେ ଭ୍ରମର ।
ତେସନେ କୃଷ୍ଣ ମିଳି ରାଧିକା ପୁରଯେ । ।୧୧୬।

ନିବିଡ଼ପୁର ପବନରେ ଅଗମ୍ୟ । ବଡ଼ ବାସେ ହୋଇଛି
ମନୋରମଯେ । ଛତ୍ରପଲଙ୍କ ଅଙ୍କେ ହଂସତୂଳ ସେଜ । ତହିଁ
ଶ୍ରୀମତୀ ଶୋଇଛନ୍ତି ବିରାଜିଯେ । ।୧୧୭।

ଅଗୁରୁ ଧୂପଧୂମ୍ର ବାସନ୍ତୀରମେ । ମାଣିକ୍ୟ ଦୀପାବଳୀ ଜଳେ
ସୁଷମେଯେ । ନଅଛି ଉଜି ରାଧା ପହୁଡ଼ିଛନ୍ତି । ସଖୀଏ କୃଷ୍ଣ
ମହିମାକୁ ବହନ୍ତିଯେ । ।୧୧୮।

ଶ୍ୟାମସୁନ୍ଦର ରାଧା ସ୍ୱପ୍ନ ଗୃହିଁ । ଦରିଦ୍ର ଧନପ୍ରାପ୍ତି
ପରାୟେ ହୋଇଯେ । ଶ୍ରୀମତୀ ନିଦ୍ରା ଗୃହି ସଖୀ ଅନ୍ତର ।
ପାସେ ମିଳିଲେ ଯାଇ ନାଗରବରଯେ । ।୧୧୯।

ଶାଯଧାରେ ବସି ନବରସ ନକହି । ବରବଚ୍ଛାର ପୁଷ୍ପ ସ୍ତବକ ରଚିଯେ । ପୁଷ୍ପ ପଲାର ଧୀରେ ଧନ୍ୟପୁଷ୍ପର । ମନ୍ଦ୍ରାଳ ଧୀରେ ଧୀରେ ମୁରଲୀ ଧରେଯେ । । ୨୩୦ ।

ଚକ୍ଷୁ କଫେଇ ସଚେତରେ ଶ୍ରୀମତୀ । ମାନମୋହନଙ୍କ ଚାନ୍ତ ଦାସୀ ସେବନ୍ତଯେ । ଚରଣଙ୍କୁ ଘଷ୍ରାଇ ବନ୍ଧୁଂବାର । ସ୍ପରତି ବଣେ ଦହ ମନ ଅଛୁରଯେ । । ୨୩୧ ।

ପୁର୍ଣ୍ଣହିଁ କରେ ପଦଧର ଶ୍ରୀହରି । ଗୃପେଦିଅନ୍ତ ଅତି ସଧୀର କହେଯେ । ଏତେବେ ଶ୍ରୀମତୀ ନୋହିଁଲେ ସଚେତ । ଛାନ୍ଦରେ ନେଇଂ କଲେ କରଜ କ୍ଷତଯେ । । ୨୩୨ ।

ସ୍ୱପନେ କୃଷ୍ଣରସ ଅବେଶହୋଇ । ମାନନାସ୍ତବେ ରାଧା କରନ୍ତି କାହିଁଯେ । କରାଣ ଜାଣି ଚନ୍ତେ ଅତି ବିକଳ । ହୃର ଅଛୁରେ କୃଷ୍ଣ ଅରମ୍ଭି ବୋଲଯେ । । ୨୩୩ ।

ବେତନା ପାଇ ରାଧା ଚମକ ଉଠି । ରସନା ଦଶନରେ ଗୃପି ବସ୍ନୋଷ୍ଟିଯେ । ଶୀତେ ଅନ୍ଧାରେ ଏବାଅଇଲ ପଥେ । ହୋଜି ଶ୍ରୀମତୀ ଅତି ସନ୍ତାପ ଚନ୍ତେଯେ । । ୨୩୪ ।

ପଣନ୍ତି ପାଞ୍ଜି ଛାଡ଼ି ଚରଣଧୂଳ । ଶ୍ରୀଅଙ୍ଗେ ହିନବାସେ ପୋଛୁଲେ ବାନ୍ଧଯେ । ବସନ୍ତବ ସମୀପକୁ ଯେଅଣାଇଂ । କରଉପୁମ ବଢ ଗୃପନ୍ତି ନେଇଂଯେ । । ୨୩୫ ।

ମୋଦ ବଷାଦେ ଗଦଗଦ ପୁଚ୍ଛନ୍ତି । କେତେ କଷ୍ଟରେ ଭୁମ୍ଭେ ଅଇଲ ଏଥିଯେ । ମାନଯେ ଭୟ୍ ନପାଇଲ ଛଳିତେ । ନୀଳମଣି ହଜାଅ ପିଣ୍ଠଳ ଅର୍ଥେଯେ । । ୨୩୬ ।

ତାମ୍ବୁଳିରେ କୃଷ୍ଣ କହନ୍ତି ଏମନ୍ତେ । ଯେତେ କଷ୍ଟେ ଅଇଲି କହିବ କେତେଯେ । ସ୍ତିରଧବନେ ଥରଥର ଶରୀର । ଶୀତେ ଲୋକ ଭିତରେ ହୋଇ ଅଛୁରଯେ । । ୨୩୭ ।

ଏଠେକଷ୍ଣ ମଣିରେଁ କହିଡ ପ୍ରାୟେ । ଏହା ତୁମ୍ଭ ବଚ୍ଛେଦ ଦୁଃଖ ହୃଦୟେ ଗୋ । କୃଷ୍ଣ ବଚନେ ରାଧା ଆନନ୍ଦ ମନ । ଅଶ୍ରୁ ଫେକଣ ମୁଖେ ଦେଇ ଚୁମ୍ବନ ଯେ । ।୧୩୮।

ଏଥନ୍ତେ କୁନ୍ଦାକୁନ୍ଦି ସ୍ନେହ ଉତ୍ତର । ରାଧାମାଧବ ଅତି ଆନନ୍ଦଭର ଯେ । ହବଝବକେ ଲୀଳା ଆରମ୍ଭ କର । ସମସ୍ତ ଦୁଃଖ ମାନ ମାନସ୍ତୁ ହରେ ଯେ । ।୧୩୯।

ଲୀଳା ବନ୍ଧରେ ପାଦେ ଛନ୍ଦିଣ ପାଦ । ଶ୍ରୀମୁଖେ ମୁଖ ଦେଇ ଅତି ପ୍ରମୋଦ ଯେ । ଜଘନେ ବଚ୍ଛୁଳ ଛନ୍ଦିଲା ପ୍ରାୟେ । କମଳେ ମତ୍ତ ମଧୁକର କ ଶୋଭେ ଯେ ।୧୪୦।

କୃଷ୍ଣ ଅଗେ ଶ୍ରୀମତୀ କହି ଏସନେ । ଶୀଘ୍ର ପ୍ରବାସଲୀଳା କରିବା ବିଜେ ଯେ । କୃଷ୍ଣ ବୋଲନ୍ତି ହେଉ ପ୍ରାଣସଙ୍ଗାତ । କହିବା ଯାଇ ଲୀଳା ପ୍ରବାସ ତୀର୍ଥ ଗୋ । ।୧୪୧।

ଏଥନ୍ତରେ ରଜନୀ ହୋଇଲା ଶେଷ । ଚେତନ ହେଲା ରାଧାକୃଷ୍ଣ ମାନସ ଯେ । ଲୋକ ଅପଖ୍ୟାତି ବିଷାଦ ଭର । ଏମନ୍ତେ ପୁରୁ କୃଷ୍ଣ ହେଲେ ବାହାର ଯେ । ।୧୪୨।

ପାଶୋଟି ଯାଇ ରାଧା କୃଷ୍ଣ ବଦନେ । ଚୁମ୍ବନ ଦେଇ ଅତି ଆନନ୍ଦ ମନେ ଯେ । ଅନେକ କହି କୃଷ୍ଣ ପ୍ରେମ ଉତ୍ତର । ଗୁପତେ ପ୍ରବେଶିଲେ ନିଜ ମନ୍ଦିର ଯେ । ।୧୪୩।

କୃଷ୍ଣ ପଲ୍ୟଙ୍କ ଅଙ୍କେ କଲେ ଶୟନ । ଏଣେ ଶ୍ରୀମତୀପାଶେ ସଜନୀ ଗଣ ଯେ । ଲଜ୍ଜିତା କହେ ଚହିଁ ଛଳ ଉତ୍ତର । ସ୍ୱପ୍ନଂ ଦୃଷ୍ଟି ଏ କଣି କୃଷ୍ଣ ଭ୍ରମର ଯେ । ।୧୪୪।

ପଦ୍ମିନୀ କୋଳେ କଣି ଯାଇ ଚଢ଼ିଲା । ମଧୁପାନ କରି ଯେ ପ୍ରଭାତୁ ଗଲା ଯେ । ବିଶାଖା କହେ ନବକିଶୋରୀକର- -କୁମ୍ଭ ବିଦାରି ଗଲା ଶ୍ୟାମ କେଶରୀ ଗୋ । ।୧୪୫।

ଚମ୍ପକଲତା ପୁଣି ବୋଲେ ଏମନ୍ତ । ହୋଇଲାଣି ବସନ୍ତ
ପଞ୍ଚମୀ ଜାତ ଯେ । ଗୌରୀ ବସନ୍ତ ଜାଣି ରୋପି ସ୍ଥିତ ।
ଚନ୍ଦ୍ରରେ ପ୍ରକାଶିତ ଜୋହ୍ନେ ଚୂପତ ଯେ । । ୨୪୬ ।

ତଚ୍ଛା କହନ୍ତି ପୁଣି ଅତି ହରଷେ । କୃଷ୍ଣ ମୃଗ ଭ କାମ
ଭଲାତ ଛାପେ ଯେ । କନକ ଗିଲ ଶିଖେ କର ସଖ୍ୟ'ର ।
ମୁଖ ଚନ୍ଦ୍ର ଅମୃତ ଗ୍ରାସି ଅନ୍ତର ଯେ । । ୨୪୭ ।

ଏଅନ୍ତେ ନନ୍ଦ ଆଗେ ସସ୍ତାଙ୍କ କହି । ସୋମବାର ଶ୍ରବଣା
ନକ୍ଷତ୍ର ହୋଇ ଯେ । କୃଷ୍ଣ ଚତୁର୍ଦ୍ଦଶୀରେ ଶିବ ପ୍ରତ୍ୟୋଗ ।
ହର ଜନ୍ମ ହୋଇବେ ଏ ମହା ସ୍ନିର୍ଦ୍ଧ ଯେ । । ୨୪୮ ।

ଅମ୍ବିକା ବନ ତୀର୍ଥ ପ୍ରବାସ ସ୍ଥାନ । ନଗରେ ନନ୍ଦ ଦିଅଇଲେ
ଘୋଷଣ ଯେ । ସେ ଯାହାର ସାମଗ୍ରୀମାନ ଘେନାଇ ।
ସ୍ଫୁର ବଚନ ଚଳଲେ ଉତ୍ସୁକ ହୋଇ ଯେ । । ୨୪୯ ।

ନନ୍ଦ ଯଶୋଦା ରାମକୃଷ୍ଣ ସଙ୍ଗତେ । ବାହାରିଲେ ଅତିହି
ଆନନ୍ଦ ଚିତ୍ତେ ଯେ । ପଥରେ ନାନା ଦ୍ରବ୍ୟ ପସରା ଗୃହିଁ ।
କଣନ୍ତି ନାରୀଗଣେ ଆନନ୍ଦ ହୋଇ ଯେ । । ୨୫୦ ।

ଶ୍ରୀମତୀ ଚନ୍ଦ୍ରାବଳୀ ସଖୀଙ୍କ ସଙ୍ଗେ । ଯାଆନ୍ତି ଅତିତୋଷେ
ଗମନ ରଙ୍ଗେ ଯେ । ଅଗରେ ନନ୍ଦ ଗୁଳ ବୃନ୍ଦଙ୍କୁ ଘେନି ।
ସକଳ ସଖା ସଙ୍ଗେ ମୁରଲୀ ପାଣି ଯେ । । ୨୫୧ ।

ସମସ୍ତେ ପ୍ରବେଶିଲେ ଅମ୍ବିକା ବନ । ଦେଖିଲେ ଦିଶୁଅଛି
ଅତି ରଞ୍ଜନ ଯେ । ଅମୃତତୁଲ୍ୟ ଜଳ ସୁସ୍ୱାଦୁ ଫଳ । ସମସ୍ତ
ତରୁ ଲତା ପୁଷ୍ପେ ମଞ୍ଜୁଳ ଯେ । । ୨୫୨ ।

ହର ଗଉରୀ ସଦା ତହିଁ ବିହାର । ସର୍ବଦା ହୋଏ ଷଡ
ଋତୁ ପ୍ରଚାର ଯେ । ଗୋପ ଅନୁକ୍ରମରେ ଯେ ଯାହା ମତେ ।
ରହିଲେ ବସାମାନ କରି ନିର୍ଦ୍ଧନ୍ତେ ଯେ । । ୨୫୩ ।

ବସିଲେ ହାଟ ଲୋକ ଗହଳ ଅତି । ଆକାଶେ ଗୃହିଁ
ଦେବେ ଅନନ୍ଦ ମତି ଯେ । ସେ ଦିନ ତୀର୍ଥ ଉପବାସେ
ରହିଲେ । ବ୍ରାହ୍ମଣେ ଶିବ ପୁରାଣକୁ କହିଲେ ଯେ । ୧୫୪ ।
ପ୍ରଭାତୁ ଉଠି ସର୍ବେ କଲେ ସ୍ନାନ । ବିପ୍ରଙ୍କୁ ନନ୍ଦେ ଦେଲେ
ଅନେକ ଦାନ ଯେ । ଯାଇ ଶିବାଳୟରେ ହେଲେ ପ୍ରବେଶ ।
ଙ୍କ ବାଚସ୍ପତି କଇଳାସ ପ୍ରକାଶ ଯେ । । ୧୫୫ ।
ରାମ ଗୋବିନ୍ଦ ସଙ୍ଗେ ଯେତେକ ନନ୍ଦ । ଶିବ ଦର୍ଶନ କରି
ଅତି ଆନନ୍ଦ ଯେ । ଫଳ ତଣ୍ଡୁଳ ଧନ ଅନେକ ବାସ ।
ଦେଇ ହର ଗଉରୀ ସେବ ସନ୍ତୋଷ ଯେ । । ୧୫୬ ।
ରାମ ଗୋବିନ୍ଦ ଦେଖି ପରେ ଗୋସାଇ । ସକଳ ନର
ନାରୀ ଅନନ୍ଦ ହୋଇ ଯେ । ଅତି ଉତ୍ସୁକ ମନ ହୋଇ
ସମସ୍ତ । ଦୀପ ଜାଳି ଭାଗରେ ଅଚଳ ବ୍ରତ ଯେ । ୧୫୭ ।
ଗୋପ ନନ୍ଦିନୀ ନାନ୍ଦୀମୁଖୀ ବନ୍ଦିନୀ । ନବ କନ୍ୟାଙ୍କ
ବୃନ୍ଦା ବଳସ୍ତ ଯେନ ଯେ । କାମ ବୀଜ ଗାୟତ୍ରୀ କଲେ
ପ୍ରଦାନ । ଗାନ୍ଧାରବିଦ୍ୟା ନୃତ୍ୟ ଗାୟନ ମାନ ଯେ । ୧୫୮ ।
ସଙ୍ଗୀତ ସାହିତ୍ୟ ଯନ୍ତ୍ର ବିଦ୍ୟା ଯେତେ । ବୃନ୍ଦାଦେବୀ
କହିଲେ ଅନନ୍ଦ ଚିତ୍ତେ ଯେ । ଶ୍ରୀମନ୍ତଙ୍କ ପାଦେ ଦର୍ଶନ
କରାଇ । ସେବା ଦିଅଇ ସେ କନ୍ୟାଙ୍କୁ ରଖାଇ ଯେ । ୧୫୯ ।
ସମସ୍ତ ହିଣ୍ଡ ହୋଏ ସେ କାମ୍ୟ ବନେ । ରାସ ଉତ୍ସବ
ଚାଧା ବାଞ୍ଛନ୍ତି ମନେ ଯେ । ଏମନ୍ତେ ନନ୍ଦ କଲେ ଶୟନ
ପୁରେ । ସର୍ପେ ମେଳିଲା ଆସି ଅର୍ଦ୍ଧ ରାତ୍ରରେ । । ୧୬୦ ।
ସଦ ଧଉ ଯେ ଗିଳିଲାକ ବଦନ । ବିକଳେ ନନ୍ଦ କରେ
ଉଚ୍ଚେ ରୋଦନ ଯେ । ଅକୁଳ ଗ୍ରହେଁ ନନ୍ଦରାଣୀ ସଚେତ ।
ହୋହାଳ ପାଡେ ଦେଖି କାତର ଚିତ୍ତ ଯେ । । ୧୬୧ ।

ଗୋପାଳଗଣ ସଙ୍ଗ ମିଳଣ ଛନ୍ଦିଁ । ଯାଜନ୍ତି କ୍ଷେଷ୍ଟୋମରେ
ଅକ୍ରୂର ହୋଇ ଯେ । ଷଣ୍ଢୋ ଯାବେଳେ କୁନ୍ତଭଲ୍ଲୁ ପ୍ରହାର ।
ଲେଖଣେହେଁ ନରେହଇ ଅଙ୍ଗରେ ତାର ଯେ । ।୧୬୨।

ଅକ୍ରୂରେ ନନ୍ଦ ବୋଇଲେ ଗୋବନ୍ଦ ରଖ । କୃଷ୍ଣ ମିଳଲେ
ଜାଣି ପିତାର ଦୁଃଖ ଯେ । ପାଦ ପ୍ରହାରକ୍ରମେ ପ୍ରାଣ
ଛେଡିଲା । ଦିବ୍ୟ ସ୍ୱରୂପେ କୃଷ୍ଣ ପାଦେ ପୂଜିଲା ଯେ ।୧୬୩।

ଗାନ୍ଧର୍ବବିଦ୍ୟା କୃଷ୍ଣେ ସମର୍ପେ ନେଇ । ବୃନ୍ଦାବତୀଙ୍କି କୃଷ୍ଣ
ଆନନ୍ଦେ ଦେଇ ଯେ । କନ୍ୟାମାନଙ୍କୁ ବୃନ୍ଦା କଲେ ପ୍ରଦାନ ।
ଦିଶିଲେ କନ୍ୟା ବିଦ୍ୟାଧରୀ ସମାନ ଯେ । ।୧୬୪।

ଚରଣ ଛୁଜି ସର୍ପ ମହୁବା ଦେଖି । ଉଠି ନନ୍ଦ ଶ୍ରୀକୃଷ୍ଣ
ମୁଖ ନିରେଖି ଯେ । ଗୋପ ସକଳ ଗୃହିଁ ଅନନ୍ଦ ମନ ।
କେ ବୋଇଲ ମାତ୍ର ଖାଇ ଗଲା ଜୀବନ ଯେ । ୧୬୫ ।

ଏମନ୍ତେ ଛନ୍ଦିଁ ସୁଖେ ରହିଲେ ହରି । ନାଗର ବଙ୍ଗେ
ଦେଇନ୍ତି ସେ ଗୋପ ନାରୀ ଯେ । ଶ୍ରୀମତୀ ସଙ୍ଗେ କୃଷ୍ଣ ରଙ୍ଗେ
ବିହର । କଲା କାମନା ପୂର୍ଣ୍ଣି କଲେ ମନର ଯେ । ୧୬୬ ।

ସଙ୍ଗରେ ବୃନ୍ଦାଦେବୀ ଅଛନ୍ତି ସେବ । ସଳ ତୁଣ୍ଡ ନ୍ୟୋଛି
ସମସ୍ତ ଭାବଯେ । ଆସିଥିଲେ ଅନେକ ରାଜା ଯୁବତୀ । କୃଷ୍ଣ
ରୂପ ଦର୍ଶନେ ଉତ୍ସୁକ ମତି ଯେ । ।୧୬୭।

କୃଷ୍ଣ ଲାବଣ୍ୟବାରାନିଧି ମଜ୍ଜିଲେ । ଲଜ୍ଜାକୁଳସଙ୍କନ ଦୂରେ
ଛେଡିଲେ ଯେ । ଏମନ୍ତେ ରହି ଛନ୍ଦିଁ କେତେହେଁ ଦିନ ।
ପୁରେ ଆସି ପ୍ରବେଶ କନ୍ଦ ରୋଛନ ଯେ । ।୧୬୮।

ଗୋକୁଳବାସୀ ଆସି ପୁରେ ପ୍ରବେଶ । ରାମକୃଷ୍ଣଙ୍କୁ ଦେଖି
ଯଶୋଦା ତୋଷ ଯେ । ନାରଦ କହନ୍ତି ହେ ନଳ କୁବେର ।
ଅମ୍ବିକା ବନେ କୃଷ୍ଣ ଯିବା ବିଶ୍ୱର ଯେ । ।୧୬୯।

ଗାନ୍ଧର୍ବ ତାରଣ କନ୍ୟାଙ୍କ କାରଣ । ଶ୍ରୀମନ୍ତଙ୍କ ବଚନ
ପ୍ରତିପାଳକ ଯେ । ଏ ବୃନ୍ଦାବନଚନ୍ଦ୍ର ବିହାରି ରସ ।
ସପତ୍ନେ ଏରସ ହୋଏ ପ୍ରକାଶ ଯେ । ।୨୭୦।

ଶ୍ରୀକୁଣ୍ଡ ଶ୍ୟାମକୁଣ୍ଡ ଯେ ତୀର୍ଥସ୍ଥଳ । ଦର୍ଶନ କର ହୋଇ
ମାନବେ ହେଲ ଯେ । ଧ୍ୟାନକର ଶ୍ରୀକୃଷ୍ଣ ପଦ ତାଙ୍କୀର ।
କହେ ଜଗନ୍ନାଥ ନାରାୟଣଦେବ ଯେ । ।୨୭୧।



## ଦଶମ ପ୍ରକାଶ ।

ରାଗ କଲ୍ୟାଣଅହୀର ।

ଜୟ ରାଧିକା ସମସ୍ତ ଗୁଣାଧିକା ଗାନ୍ଧର୍ବ କୃଷ୍ଣ ମନୋହାରୀ ।
ନବକିଶୋରୀ ଜୟ ବ୍ରଜ ଈଶ୍ୱରୀ ଶ୍ୟାମ କଳାକ୍ଷୀ ରାସେଶ୍ୱରୀ ।
ଶ୍ରୀମତୀ । କୃଷ୍ଣ କନ୍ଦର୍ପ ତାପହାରୀ । ଭକ୍ତ ଆନନ୍ଦିନୀ ଜଗତ ବନ୍ଦିନୀ
ବୃଷଭାନୁ ନନ୍ଦକୁମାରୀ । । ୧ ।

ତୁମ୍ଭ ଚରଣେ କହୁଛି କରଯୋଡ଼ି ମୋହରେ ହୁଅ କୃପା ଚିତ୍ତ ।
ଏ ବ୍ରଜ ବିହାର ଅମୃତ ସାଗର ବର୍ଣ୍ଣିବେ ବଳେ ମୋର ଚିତ୍ତ ।
ତୁମ୍ଭର । କରୁଣା ବିନା କୋହେ ନିହି । ଶେଷ ଶଙ୍କର ବ୍ରହ୍ମାରେ
ଅଗୋଚର କିମ୍ପିତ ସିନା ମୋର୍ବୃଦ୍ଧି । । ୨ ।

ଜୟ ପୌର୍ଣ୍ଣମାସୀ ଶ୍ରୀମତୀ ତପସ୍ୱିନୀ ଜୟ ବ୍ରଜକୁଳ ଦେବତୀ ।
ଜୟ ଆଦିଶକ୍ତି ଯୋଗ ମାୟା ମୂର୍ତ୍ତି ବେଦନମା ମୋହର ବନ୍ଦତି ।
କେବଳ । ତୁମ୍ଭେ ମୋହ୍ରଦେ କର ବାସ । କୃପା ଚିତ୍ତରେ କହିଲେ
ସିନା ମୋତେ କରିବ ଏ ଲୀଳା ପ୍ରକାଶ । । ୩ ।

ନାରଦ ଆଗେ ଯୋଡ଼ିଣ ବେନି କର ପୃଚ୍ଛନ୍ତି କୁବେର ନନ୍ଦନ ।
ପ୍ରେମକ ମୋହରେ କରୁଣା ଚିତ୍ତରେ ସଭିରେ ହୋଇବା ପ୍ରସନ୍ନ ।
ଅମ୍ବିକା । ବନ ଯାତ୍ରା ହେଲା ସମ୍ପୂର୍ଣ୍ଣ । ତଦୁତ୍ତରେ ପୂର୍ଣ୍ଣ ପୁରେ
ବେନୁପାଣୀ କହିଲେ କି କି ଲୀଳା ମାନ । । ୪ ।

ଶୁଣି ନାରଦ ଭାବେ ଅତି ଆନନ୍ଦ ଗୋବିନ୍ଦ ଗୁଣ ଗୁଣି ଚିତ୍ତେ ।
କହନ୍ତି ସଧୀରେ ହେ ନଳ କୁବେରେ ଧନ୍ୟ ଭକ୍ତ ତୁମ୍ଭେ ଜଗତେ ।
ଏମନ୍ତେ । ହୋଇଲା ବସନ୍ତ ପ୍ରବେଶ । ବିଶେଷେ ଶୋଭିତ
ହେଲା ବୃନ୍ଦାବନ ଫୁଟିଲେ ନାନା ସୁମନସ । । ୫ ।

ଚୂତ ପଲ୍ଲବିତ ନବ ମୁକୁଳିତ ନାଗେଶ୍ୱର ଚମ୍ପା ନଅଳ ।
ମଲ୍ଲିକା ଅଶୋକ କୁନ୍ଦ କୁରୁବକ ମାଧବୀ ସେବତୀ ପାଟୋଳି ।
ରଙ୍ଗଣୀ । ଜାଇ ଯୁଇ ନବ ମାଳତୀ । କରୁଣା ମନ୍ଦାର କେତକୀ
ଟଗର ତରାଟ କୁରୁବକ ପତ୍ର । ॥ ୬ ॥

କଦମ୍ବ ବନ୍ଧୁଳ କଣିଅର କୁଳ କରବୀର ବାଣ ମରୁଆ । କୁରୁଆ
କୁଟବଲି ପୁନ୍ନାଗ ଛାତେଲି ଯୁବା ଜନମନୋ- ହରଣ । ମଧୁପ ।
ଝଙ୍କାର ପିକ କୋଳାହଳ । ମନ୍ଦ ଗନ୍ଧ ଶୀତ ସେବ ଅନୁବ୍ରତ
ବହଇ ମଳୟ ଅନିଳ । ॥ ୭ ॥

କୁସୁମ ପରାଗ ମଣ୍ଡିତରେ ଦିଗ ଭୂମି ଆକାଶ ରଙ୍ଗ ଅଟି । ବସନ୍ତ
ଉତ୍ସବେ ଯୁବା ପଞ୍ଚାଭବେ କଜସ୍ୱେ ମଦନ ନୃପତି । ଏମନ୍ତ ।
କାଳରେ ଯେ ଗୋପୀ ଗୋପାଳେ । ଚରୁ ଗୌରବ ମିତ୍ର ବନ୍ଧୁ ଜ
ମାନ ସଙ୍ଗୁ ଖେଳନ୍ତି କୁତୂହଳେ । ॥ ୮ ॥

ଅବର ଚୂର୍ଣ୍ଣ ଅଗଣା ହୋଏ ମଣ୍ଡି ଦଶ ଦିଗ ପୂରଇ ଉଡ଼ଇ ।
ଏକକୁ ଅନେକ ବନ୍ଧେ କଉତୁକ ସଙ୍ଗୁ ମାର ପ୍ରେମ ବଢ଼ାଇ ।
ସୁରଙ୍ଗ । ଦିଶଇ ଅଙ୍ଗ ଝିନ୍ନବାସ । ସମ୍ମୁଖେ ଖେଳନ୍ତି ଲୂଚ କେ
ମାରନ୍ତି କେ ବଞ୍ଚାଇ ଅଟି ହରଷ । ॥ ୯ ॥

ଶ୍ରୀକାମପାଳ ଗୋପାଳ ହୋଇ ମେଳ ଖେଳନ୍ତି ଅତି ଉତ୍ସବରେ ।
ଗୋପ କୁମାରୀ ଚନ୍ଦ୍ରାବଳୀ ସୁନ୍ଦରୀ ମଦନଗୋପାଳ ସଙ୍ଗରେ ।
ସୁବଳ । ବଟୁ ମାଧବ ସଙ୍ଗେ ଛନ୍ତି । ସଙ୍ଗୁ ସଂଯୋଗ କରଣ ଅଟି
ବେଗ ଶ୍ରୀକୃଷ୍ଣ କରେ ନେଇଁ ଦେନ୍ତି । ॥ ୧୦ ॥

କଲେ କୁଟୁମ୍ବି ସଙ୍ଗୁ ଯନ୍ତ୍ର ସ୍ୱର୍ଣ୍ଣ ଗୁଳନ୍ତେ ବରଷେ ଧରଣୀ ।
ସେ ବ୍ରଜବାଳୀ ଉପରେ ନେଇଁ ଚାଳ ଅତି ଆନନ୍ଦେ ବେନୁମାଣୀ ।
ସପ୍ତ । ପାଟ୍ଟି କୁଟେ ସଙ୍ଗୁ ଶୋଭତ । ସିନ୍ଦୂର ଶୋଭା ଶମ୍ଭୁ ସ
ହେଲା ଅବା ଅରୁଣ ଏ ହେମ ପର୍ବତ । ॥ ୧୧ ॥

ସୁନ୍ଦରୀ ଗଣେ ଅବିର ଫଗୁ ରଙ୍ଗେ ଶ୍ରୀକୃଷ୍ଣଙ୍କୁ ବେଢ଼ି ମାରନ୍ତି । କର କଙ୍କଣ ବାଜଇ ରୁଣଝୁଣ ମଦନ ନିଶାଣ ପ୍ରଭୃତି । ସେହିବ- ଅଙ୍ଗନା ହୋଇ ପ୍ରେମମତି । ଶ୍ରୀକୃଷ୍ଣ ଅଙ୍ଗେ ମାରନ୍ତି ଫଗୁ ରଙ୍ଗେ ଧୂଣିହିଁ ଉତ୍କଣ୍ଠା କରନ୍ତି । ।୧୨।

ବହୁଯତ୍ନ ସମ୍ଭ୍ରମମଧ୍ୟେ ବାହୁବାହୁ ପ୍ରାପ୍ତେ ଗୋପୀଙ୍କ ମଧ୍ୟେ ହରି । ଶତମୁଖରେ ଖେଳ ଅତି ସୁଖରେ ସେଇଠିକିବର ନାଗରୀ । ଶ୍ରୀକୃଷ୍ଣ । ଶୋଭୁଅଛି କେଉଁ ସୁକେଶୀ । ମର୍ଦ୍ଦନରେ ଚତୁର ହୋଇ ବହୁଳିତ ପଜଇଫଗୁ ମୁଠାଖସେ । ।୧୩।

ଶ୍ରବଣ ମୂଳରେ କହିବା ଛଳରେ କେକୃଷ୍ଣ ମୁଖେ ଚୁମ୍ବଦେଇ । ନେତ୍ର ତରଙ୍ଗରେ କେଳୀଳା ରଙ୍ଗରେ ବସନାଧର ଓଟାରଇ । କେନିଜ । କରଜକର ଅତିତୀକ୍ଷ୍ଣ । ହୋଇ ତୋଷମନ କରସେ ଉତ୍କ୍ଷିନ କହଇ କୃଷ୍ଣ ଦେଖ ଦେଖ । ।୧୪।

କାମିନୀ ମଧ୍ୟେ ନାନାକେଳୀ ବିନୋଦେ ଫଗୁଉତ୍ସବେ ପୀତବାସ । ନୃତ୍ୟ ରସରେ ମନ ରାସରସରେ ହୋଇସେ ନଟବରବେଶ । ଏମନ୍ତ । ବେଳେ ଶ୍ରୀମତୀ ସଖୀସଙ୍ଗେ । ମୁରଲୀଧ୍ୱନିଶୁଣି ବନେଆସନ୍ତି ଶ୍ରୀକୃଷ୍ଣ ଲୀଳା ଇଚ୍ଛିରଙ୍ଗେ । ।୧୫।

ଦେଖିଲେ ହରି ସମସ୍ତ ଗୋପନାରୀସଙ୍ଗେ ରାସରଙ୍ଗେ ବିହାର । ଲତାନ୍ତରେ ଥାଇ ସଖୀଙ୍କି ଦେଖାଇ କହିଲେ କପାଳରେ କର । ଧରସେ । ପୁଣ ପୁରକୁ ଲେଉଟିଲେ । ସୁନ୍ଦରୀବୃନ୍ଦ ମଧ୍ୟେ ରହି ଗୋବିନ୍ଦ ରାଧା ବଦନ ନିରେଖିଲେ । ।୧୬।

ଚଞ୍ଚଳଚିତ୍ତ ସ୍ୱେଦ ଅଙ୍ଗୁ ଗଳିତ ଫଗୁ ଶ୍ରୀହସ୍ତରୁ ପକାଇ । ଚକିତେ ରହିଁ ସଙ୍କୋଚ ଧ୍ରୁବ ହୋଇ ରାଧା ପିରତି ଚିତ୍ତେ ଧ୍ୟାଇ । ଯୁବତୀ- । -ଗଣ ଛାଡ଼ି କୃଷ୍ଣ ଅନ୍ତର । ଅହା ପ୍ରାଣପ୍ରିୟା ହେଲୁ ତୁ ନିର୍ଦ୍ଦୟା ବୋଲି ଅତିହିଁ କାତର । ।୧୭।

ମଦନ କାତରେ ଭ୍ରମି ବନସ୍ତରେ ପାଦ ଚିହ୍ନକୁ ଅନୁସରି ।
ହୋଇ ଅତି ଦୁଃଖି ନ ଦେଖି ସୁମୁଖୀ କାଳନ୍ଦୀ କୂଳେ ଯାଇ ମିଳି ।
କୁଞ୍ଜରେ । ଏକାନ୍ତେ ବସି ମନେ ଗ୍ଳାନି । ରାଧା ଗମନେ ଦୂତୀ ଅତି
ହମନେ ଶ୍ରୀକୃଷ୍ଣ ପାଖେ ଅସି ମିଳି । ।୧୮।

କହନ୍ତି ଶ୍ରୀହରି ମୋ ପ୍ରାଣ ଈଶ୍ୱରୀ ମୋପାଶେ ଦେଖି ବ୍ରଜବାଳ ।
ଦୋଷ ମନେଘେନି ସେ ମୋ ଛାଡ଼ିଯାଇ ରୋଷେ ଧୂରକୁ ଗଲେ
ଚଳ । ତାଙ୍କ । ବିନୁ ମୋ ପ୍ରାଣ ନୁହେ ସ୍ଥିର । ଅତିହିଁ ଦାରୁଣ
ଅଟେ ଫୁଲ ବାଣ କରଇ ପ୍ରହାରଇ ଶର । ।୧୯।

ଦେଇ ସଖୀ ମେଳ ମୋ ଅଙ୍ଗ ଶୀତଳ କର ଲିଭାଅ କାମାନଳ ।
କହି ନିବେଦନ ଘେନିଅ ଧନ୍ୟ ସତ୍ୱର ହୋଇ ଏବେ ଚଳ ।
ଦୂତିକା । ଶୁଣି ହରଷ ବାଣୀ ଭଣି । ରାସ ଲୀଳାରେ ନାଗରୀଙ୍କ
ଖେଳାରେ ତୁମ୍ଭଙ୍କୁ ଦେଖି ଗଲେ ଧନୀ । ।୨୦।

ଆଦର ନଦେଖି ସେ ମୋ ପ୍ରାଣସଖୀ ମଦନ ଶରେ ହୋଇ
ଦୁଃଖୀ । ଏ ବସନ୍ତ କାଳ ତୁମ୍ଭ ସଙ୍ଗ ମେଳ ବିନୁ ଲୋଡନ୍ତି ପୂର୍ଣ୍ଣ
ଅଖି । କୋକିଳ । ବାଣୀ ଶୁଣି ହୋଏ ଉଚ୍ଛନ୍ନ । ମଧୁପ ଝଙ୍କାର
ମଦନ ଟଙ୍କାର କରେ କି ଧରି ଶରାସନ । ।୨୧।

ମୁରଲୀଧର ସରସ ଦୂତୀ କର କହନ୍ତି ସଜନୀଙ୍କ ଅଣି । ଘେନି
ବନଭିଙ୍କ କହନ୍ତୁ ଏତିକି ନଇଲେ ନ ରହେ ମୋ ପ୍ରାଣ ।
ମୋହନ । ବାଣି ଶୁଣି ଦୂତୀ ହରଷ । ଗମିଲା ସତ୍ୱରେ ଶ୍ରୀମତିଙ୍କ
ପୁରେ ଯାଇ ହୋଇଲା ପ୍ରବେଶ । ।୨୨।

ଏଣେ ସୁମୁଖୀଗଣ କୃଷ୍ଣ ନ ଦେଖି ଅକୁଳହୋଇ ଭ୍ରମି ବନେ ।
ବୋଲନ୍ତି ହେ ନାଥ କଲଇ ଅନାଥ ଏତେ କପଟ ଥିଲା ମନେ ।
ଅବଳା । ଗଣଙ୍କୁ କାମମୁଖେ ଦେଇ । କଲୁ କେଉଁ ଦୋଷ ଏତେକ
ନଥାଇ କରୁଣ ଛାଡ଼ିଗଲ କାହିଁ । ।୨୩।

ସର୍ବେ ଦୁଃଖମନ ଭ୍ରମି ବୃନ୍ଦାବନ ପୃଛନ୍ତି ତରୁ ଲତା ଗୃହେଁ ।
ପକ୍ଷୀ ମୃଗଗଣଙ୍କୁ ଆମ୍ଭ ପ୍ରାଣନାଥ ଛାଡ଼ିଗଲେଗେ କାହିଁ । ଶ୍ରୀକୃଷ୍ଣ ।
ଗମନ ପଦ ଚିହ୍ନମାନ । ଅନୁସରି ଚନ୍ଦ୍ରାବଳୀ ସହଚରୀ ମିଳିଲେ
କୃଷ୍ଣ ସନ୍ନିଧାନ । ।୧୪।

ଜବ କନ୍ୟା ଯୂଥ ଦଣ୍ଡା ହୋଇ ପଥ କୃଷ୍ଣଙ୍କୁ ଲୋଡ଼ି ଭ୍ରମନ୍ତେ ।
ରୋଦନ କରନ୍ତି ଅଶ୍ରୁଲେ ବୋଲନ୍ତି ଛାଡ଼ିଗଲ ନାଥ ଗହନେ ।
ଏକାକେ । ମନେ ବିଚାରି ଶାଙ୍ଗରୂଜ । କନ୍ୟା ହରନ୍ତେଉ ସୁଖେ
ଅନ୍ତରିତ ବୋଲି ହେଲା ମାୟା ଗଉଜ । ।୧୫।

ମିଳି ସନ୍ନିଧାନ କହଇ ବଚନ ଜନ୍ମିଲ ଏମନ୍ତ ଯୋଗବନେ ।
କନ୍ୟା ଯେତେ ଅଟ ବୋଲି ପୀତବାସ ଚଳିଲେ କେଳି କୁଞ୍ଜ ସ୍ଥାନ ।
ଉତ୍ତର । ଦିଗେ ଗଲ ଶିବା ବଦନ । ଅନ୍ତର୍ହିତ ରଙ୍ଗେ ମାଧବଙ୍କ
ସଙ୍ଗେ ଶୁଣି କନ୍ୟା କଲେ ଗମନ । ।୧୬।

ବନ୍ଧୁ ସୁବଳ ମନେ ଅତି ଆକୁଳ ହୋଇ ଡାକିଲେ ଅଗରେ ।
ବୋଲନ୍ତି ରହ କନ୍ୟାଏ କାହିଁ ଯାଅ ଭୟ ନ ପାଅ ବନସ୍ତରେ ।
କୁମାରୀ । -ଗଣ ବନ୍ଧୁ ସୁବଳେ କହି । ଏଥେ ଶ୍ରୀହରି ଅଛନ୍ତି ବୋଲି
ହଉ ଏ ଗୋପାଳ ପଥ କଟାଇ । ।୧୭।

ମାୟା ଗୋପାଳ ଦେଖି ବନ୍ଧୁ ସୁବଳ ହୋଇଲେ ରୁ କାହାକୁମର ।
ଶୁଣି ସେ ଏବାଣୀ ମନେ କ୍ରୋଧ ମଣି ଧଇଲାକ ନିଜ ଶରୀର ।
କନ୍ଦର- । ବଦନ ଶିରେ ଶୃଙ୍ଗ ଶୋଭେ । କଣ୍ଠୋରୁ ସର୍ପ ବିସ୍ତାର
ସ୍ୱରୂପ ଦେଖି କୁମାରୀ କଲେ ଭୟେ । ।୧୮।

ବାହୁ ବିସ୍ତାର ନିଶ୍ୱାସ ବାତେ ହର ନଥଇ କର ଆକର୍ଷିତ ।
ବନ୍ଧୁ ସୁବଳ ଆଦି କନ୍ୟା ସକଳ ଅସିତ ନୃତ୍ୟନ୍ତି ସମର୍ଥ । ମାନସେ ।
ହୋଇଣ ଅତିହିଁ ବିଷାଦ । କନ୍ୟାଙ୍କ ଆକୁଳ ଗୃହେଁ ସେ ସୁବଳ ବନ୍ଧୁ
କରନ୍ତି ସିଦ୍ଧା ନାଦ । ।୧୯।

ଶୁଣି ବଳରାମ ବନ୍ଧି ଘୋରତମ ଗୋପାଳଗଣ ଘେନ୍ଧ ଚଳ । କୃଷ୍ଣ ଯେ ଥିଲେ ଯମୁନା ନଦୀ କୂଳେ ଚନ୍ଦ୍ରାବଳୀଙ୍କ ଗୃହିଁ ସ୍ଥଳ । ଟୋଲନ୍ତି । ହୋଇଲା ଏ ଅତି ବିଷମ । ଯାଇଛୁ ଦୂତି ପ୍ରବେଶିବେ ଶ୍ରୀମତୀ ଦେଖି ଦୁର୍ଗ୍ରେଣ ହେବେ ତମ । । ୩୦ ।

କେମନ୍ତେ ବଞ୍ଚିବୁ ଏଥୁ ଲୁଚି ଯିବ କୃଷ୍ଣ କୁଞ୍ଜେ ରହି ବଗ୍ଗିର । ଏମନ୍ତ ବେଳେ ଶିଙ୍ଗା ନାଦ ଶୁଣିଲେ କାନ୍ଧାଙ୍କୁ ଶଙ୍ଖଚୂଡ ହର । କୁଞ୍ଜରୁ । ତାହାଙ୍କ ଦେଖି ଚନ୍ଦ୍ରାବଳୀ । ବୋଲନ୍ତି ଭୁମ୍ଭେତ ପ୍ରବେଶିଲ ଏଥ ଛାଡ଼ିଁ ରହିଲେ ବ୍ରଜବାସୀ । । ୩୧ ।

ଛନ୍ଦର ହର ନେଉଛୁ ବ୍ରଜବାଳ ତକ୍ଷୁ ସୁବଳ ପଥେ ଯାଇ । ଅଗ୍ରେ ଅଛନ୍ତି ଯାଉଛୁ ସୁମତୀ ଗୋପୀ ଅଣିବ ନେଉଠାଇ । ଏମନ୍ତ କହି ଅତି ଶୀଘ୍ରେ ଚଳଲେ । ସେ ଭାବ ଯୁବତୀ ଗଣ ଯହିଁ ଛନ୍ତି ସେଠାରେ ଯାଇଣ ମିଳିଲେ । । ୩୨ ।

ଗତି ବିକ୍ରମ, ପ୍ରବେଶ ବଳରାମ ଦେଖି ଶଙ୍ଖଚୂଡ ପଳାଇ । ଗୋପ କୁମର ଘେନିଣ ଦାମୋଦର ବଳରାମଙ୍କୁ ଦେଖି ଯାଇଁ । କେତେହେଁ । ଦୂରେ ଶଙ୍ଖଚୂଡ ଦେଖିଲେ । ମୋଥେକ ମାର ମୂର୍ଚ୍ଛନା ତାର ଚୂଡ଼ି ଶଙ୍ଖମଣି ଘେନି ଅଇଲେ । । ୩୩ ।

କାନ୍ଧାଙ୍କ ପାଶେ ରାମଙ୍କୁ ଦେଖି ତୋଷେ ମଣି ସମର୍ପିଲେ ଶ୍ରୀହରି । ମଣିକି ନେଇଁ ରାମ ଉରେ ଲମ୍ବାଇ ଅତି ଆନନ୍ଦ ହୋଇ କରି । ସମସ୍ତେ । ପୁରେ ପ୍ରବେଶ ହେଲେ ଆସି । ଗୋକୁଳବାସୀ ପାଶ୍ଚେଷ୍ଟି ବେଗେ ଅସି କୃଷ୍ଣଙ୍କୁ ବନ୍ଧୁ ପରଶଂସି । । ୩୪ ।

ଏଥନ୍ତେ ଦୂତୀ ପ୍ରବେଶନ୍ତେ ଶ୍ରୀମତୀ ହୃଦୟ ବେଦନା କହନ୍ତି । ଅନେକ ନାରୀଗଣ ମଧ୍ୟେ ଶ୍ରୀହରି ରାସ ରଙ୍ଗରେ ବହଚନ୍ତି । ପ୍ରତ୍ୟକ୍ଷେ । ଦେଖି ମୁ ହୋଇଲି ଅନ୍ତର । ଧଇର୍ଯ୍ୟ ଧର ନପାଇ ସ୍ଥିର କର ମୂରଛରେ ହେଲି କାତର । । ୩୫ ।

ଦୂତିକା ଭଣି ଶୁଣିମା ଠାକୁରାଣୀ କୃଷ୍ଣ ସନ୍ଦେଶ ଅଛି ଆଣି । ଧୀର ସମୀରେ ଯମୁନାତଟରେ ତୁମ୍ଭ ଆଶେ ଅଛନ୍ତି ବେଣୁପାଣି । ସୁମୁଖୀ । ତୋହର ପ୍ରେମ ଜଳେ ଭାସେ । ଖୁଣ୍ଟିଖୁଣ୍ଟିରେ ମନ ଯଢି ବାଟରେ ଶ୍ୟାମସୁନ୍ଦର ଛନ୍ତି ବସି । ।୩୬।

କୋକିଳ କଳ ଶୁଣି ହୋଇନ୍ତି ଆକୁଳ ତୁମ୍ଭ ବଚନ ପ୍ରାୟ ମଣି । ଗନ୍ଧ ପବନେ ଉଦ୍ବେଗ ହୋଇନ୍ତି ଚନେ ତୋ ତନୁ ପରିମଳ ଜାଣି । ନୟନ । ନଷ୍ଟେ ପଥକୁ ନିରୂପି । ଶଯ୍ୟାକୁ ଗୁନ୍ଥି କୁସୁମମାଳ ପିନ୍ଧି ତୋ ରୂପ ହୃଦୟରେ ସ୍ଥାପି । ।୩୭।

ମୋର କର ଧନ କହିଛନ୍ତି ହରି କହିବୁ ନବ କିଶୋରୀକି । ସେ ମୋ ପ୍ରାଣପତି ରାଧାବିନୁ ମୁହିଁ ଜୀବନ ପାରିବି ଧରିକି । ସୁମୁଖୀ । ତେଜି ରୋଷ ହୁଅ ସୁବେଶ । ଏ ମଧୁ ଯାମିନୀରେ ନବ କାମିନୀ ଘେନ ଚଦ୍ଦର ପୀତବାସ । ।୩୮।

ପୁଣ କହେ ଦୂତୀ ଶୁଣଗୋ ଶ୍ରୀମତୀ ବିରହରେ କୃଷ୍ଣ ଏମନ । ଅନଳ ତାପେ ଯେସନ ନୀଳମଣି ହୋଏ କାନ୍ତି ଅତି ମଳିନ । ମଧୁରେ । ବିଳମ୍ବେ କର ରାସେଶ୍ୱରୀ । ଘେନ ମୋ ମିନତି କୁଞ୍ଜେ ଚଳ ସତି ତୋଷ କର ସୁଖେ ହରିର । ।୩୯।

ଦୂତୀ ଭାରତୀ ଶୁଣି ତୋଷେ ଶ୍ରୀମତୀ ମଧୁରେ ହୋଇଲେ ସୁବେଶ । ଘେନ ସହଚରୀ ଅଭିସାର କରି ବୃନ୍ଦାବନେ ହେଲେ ପ୍ରବେଶ । ଶ୍ରୀମତୀ । ଅତିହିଁ ଉତ୍କଣ୍ଠିତ ହୋଇ । ବିଚାରନ୍ତି ମନେ ସେ ଶ୍ୟାମ ବଦନେ କିରୂପେ ନିରେଖିବ ମୁହିଁ । ।୪୦।

ଦେଖିଲେ ହରିଙ୍କୁ ନେତ୍ରରେ ଘୃଷିବେ ପାଶେ ଛନ୍ତି ନେବେ କୋଳ କରି । ଶଯ୍ୟାରେ ବସାଇ ଚୁମ୍ବ ଦେଲେ ମୁହିଁ ଯେ କାଳରେ ଧରି ଅଧର । ଯାଜ୍ଞେଣ । ମିଳିଲେ ନିଭୃତ କୁଞ୍ଜରେ । ରଖାଇ ଶ୍ରୀମତୀ ଶୀଘ୍ରେ ଚଳେ ଦୂତୀ ଭଣି ଗହନ ଅନ୍ଧକାରେ । ।୪୧।

ଦେଖି ସଙ୍କେତ କୁଞ୍ଜେ ଦୂତୀ ବୁଝିଲ ଯାଇ ଶ୍ରୀକୃଷ୍ଣ ଅନୁରାଗ । ନ ଦେଖି ନାଗର ଦୂତୀ ଖେଦଭର ଶଙ୍ଖଚୂଡ ବଧ ବିଗ୍ରହ । ଛନ୍ଦେ ବାନ୍ଧି । କହିବ ଶ୍ରୀମତୀ ଅଗ୍ରତ । ମୋତେ ପଠାଇ ନିକୁଞ୍ଜେ ପ୍ରାଣପତି ଗଲେଁ ଥିବେ କୃଷ୍ଣ ଅଗତ । ।୪୨।

ଉଲମ୍ଭରୁ ଦୂତୀ ଶୁଣନ୍ତି ଶ୍ରୀମତୀ ବିପ୍ରଲବ୍ଧା ଚିତ୍ର ବିଭ୍ରମ । ମନେ ହୋଇ ଦୁଃଖୀ କହନ୍ତେ ସଖୀ କୁଞ୍ଜରେ ନାହାନ୍ତି ଶ୍ୟାମ । ଏକାନ୍ତ । କୁଞ୍ଜେ ରହି ନବ ନାଗର । ଯଉବନେ ଆଗୀ ସେ ଗୋପ ନାଗରୀ ସଙ୍ଗେ କରୁଥିବେ ବିହାର । ।୪୩।

କଟାକ୍ଷେ ଚାହିଁ ସଲଜ୍ଜ ପୁଣ ହୋଇ ଯୋଡାଉଥିବ ଉର ବାସ । ହତ ସ୍ମରତି ଅଙ୍ଗେ କୋଳ କରନ୍ତେ ନାହିଁ ବୋଲୁଥିବ ବିଶେଷ । ଉରଜେ । କର କ୍ଷତ କଲେ ଶ୍ରୀହରି । କମ୍ପାଇ ତନୁକୁ ନନ୍ଦ-ନନ୍ଦନଙ୍କୁ ଥିବ ସେ ଆଲିଙ୍ଗନ କରି । ।୪୪।

ସେ ନବରଙ୍ଗୀମଣି ସ୍ମରତରେ ଜିଣି ଜିଣିଥିବ କୃଷ୍ଣ ମାନସ । ମୋହରେ ନିରାଶ ହେଲେଣି ଅବଶ୍ୟ କାହ୍ନୁ ପାଇବ ପ୍ରୀତବାସ । ଏକାଳେ । ବିରସ ମନ ହୋଇ ଦୂତୀ । ମଳିନ ବଦନ ସଧୀର ଗମନ ପ୍ରବେଶ ହେଲା ରାଧା କତି । ।୪୫।

ଦୂତୀକି ନିରେଖି କହନ୍ତି ସୁମୁଖୀ ତୋହର ଏଥି କେଉଁ ଦୋଷ । ଅଣାଇ ମୋତେ ଦୁଃଖ ଦେବାନିମନ୍ତେ ନ ଆସିଲେ ସେ ପୀତବାସ । ଯୁବତୀ । ବୃଥା ବସ୍ତ୍ର ନାହିଁ ତାଙ୍କର । ଚାଲୁଡ କାଳେ ପୂତନା ମାରିଲେ ଶଠପଣ ତାଙ୍କ ବେଭାର । ।୪୬।

ଏତେକ କହି ବିଷାଦଭର ହୋଇ ଖର ନିଶ୍ୱାସ ଉର୍ଦ୍ଧ୍ୱ ଛାଡି । ମଦନେ କାତର ନେତ୍ରେ ପୂର୍ଣ୍ଣ ନୀର କିଶଳୟ ଶେଯେ ପଡ଼ୁଛି । ଗୋବିନ୍ଦ । ଏଣେ ଶ୍ରୀମତୀ ଧାଇ ମନ୍ଦ । ବିରହ ଭରେ ତାପିତ ତ୍ୱରଣରେ କୁଞ୍ଜକୁ କଲେ ଆଗମନ । ।୪୭।

କୁଞ୍ଜରେ ମନ ବୁଲନ୍ତ ବନମାଳୀ ଶ୍ରୀମତୀ ଭେଟି ନ ଆସିଲେ । ମେଘେ ନ ଭେଟି ଗଲେ ଅତ୍ୟା ଲୋଭ ଭାଷା ସଙ୍ଗିନୀ ନିବାରିଲେ । ସୁକେଶୀ । ନେବା ଏଠି ଖଣି ଅଭିନବ । ଦଣ୍ଡାଇ ଅଷ୍ଟ ହରଷେ ପୀତ ବାସ ଚନ୍ଦ୍ର ଶ୍ରୀମତୀ ସେହି ଭାବ । ।୪୮।

ଏଣେ ଚନ୍ଦ୍ରାବଳୀ କୃଷ୍ଣ ପ୍ରୀତି ଲୋଭ ପୁରେ ନ ଯାଇ କୁଞ୍ଜେ ରହି । ଶ୍ରୀକୃଷ୍ଣ ଆଗତ ଜାଣିବାକୁ ଚତୁର ସଖୀଙ୍କ ପଥରେ ଚାହିଁ । ଶ୍ରୀକୃଷ୍ଣ । କୁଞ୍ଜେ ପ୍ରବେଶ ହେବା ପରି ହିଁ । ସଙ୍ଗିନୀ କହନ୍ତେ ଅତି ହିଁ ଭୁଷଣେ ପ୍ରବେଶ ଚନ୍ଦ୍ରାବଳୀ ତହିଁ । ।୪୯।

ରାଧା ଛାତ୍ର ମଣି ତହେଁ ବେଳ୍ପାଣି କାମ ଅଙ୍କୁରେ ହୋଇ ହେଲ । ସେଠି ବିଷାଦ ଦେଖି ଅତି ଆନନ୍ଦ ଉଠି ପାଶେଷ୍ଟି କଲେ କୋଳ । ଏମନ୍ତ । ଦେଖି ସଖୀ ଅପସରିଲେ । ଶଯ୍ୟାରେ ବସି ସୁରତ ରସେ ଭିଜି ମଦନ ତାପକୁ ହରିଲେ । ।୫୦।

ସୁରତ ଚାତୁରୀ ବନ୍ଧରେ ଶ୍ରୀହରି ଜାଣିଲେ ଚନ୍ଦ୍ରାବଳୀ ବୋଲି । ଛଳନା ସେ ଶେଷ ମନ ଅତି ହରଷେ ପୁରକୁ ଗଲେ ଚନ୍ଦ୍ରାବଳୀ । ଭଣ୍ଡାଦେ । ଘୁଲନ୍ତ ମନେ ଶ୍ୟାମଘନ । କଉ ଅଷ୍ଟ ମୋତେ ଅଛି ଖେଦଭରେ ଥିବ ମୋ କିଶୋରୀ ରତନ । ।୫୧।

ଏମନ୍ତ ରାଧାଙ୍କ ଭାବ ହୃଦେ ବହି ଗମନ୍ତ କୃଷ୍ଣ କଉ ତନ୍ତ୍ରା । ନଗ୍ର ନିକୁଞ୍ଜେ ସଖୀଙ୍କ ସମାଜେ ଦେଖିଲେ ବୃଷଭାନୁ ସୁତା । ଚମକ । ସ୍ତବ୍ଧ ରହିଲେ ଅଗ୍ରତ । ଗୃହଁ ଚନ୍ଦ୍ରମାନ କିଶୋରୀ ରତନ ଲୋଚନ ପୂର୍ଣ୍ଣ କରି ନେତ୍ରେ । ।୫୨।

ବହି ଅଭିମାନ ଲମ୍ବାଇ ବଦନ ନ ଗ୍ରହାନ୍ତି କୃଷ୍ଣ ଆନନ । ଦେଖି ନାଗର ବୁଝି ଖେଦ ସାଗର ଭାସରେ ଭଣନ୍ତି ବଚନ । ପ୍ରେମପ୍ରାଣ- । -ଈଶ୍ୱରୀ ଚମ୍ପକ ଗଉରୀ । କରନାହିଁ ଦୋଷ କକର ନିରାଶ ଦଣ୍ଡିବ ଦୋଷ ବଗୁର । ।୫୩।

ତୁମ୍ଭଙ୍କୁ ଦେଖି ଗୋପୀଗଣ ଉତ୍ପେକ୍ଷି ଅପନ୍ତେ ଭେଟ ନ ପାଇଲି । ଦୂଷଣ କରି ତୁମ୍ଭଠାରୁ ପଠାଇ ଏକାନ୍ତ କୁଞ୍ଜରେ ରହିଲି । ମୋହର । ଅନ୍ତର ଶଙ୍ଖଚୂଡ଼ ଜାଣି । ବନିତା ହରନ୍ତେ ବହୁ ସ୍ୱବଳ ପଥେ ଓଗାଳ କଲେ ଶିଙ୍ଗା ଧ୍ୱନି । ।୬୪।

ଶଙ୍ଖଚୂଡ ମାରି ବନିତାଙ୍କୁ ଉଦ୍ଧବ ପୁରେ ପ୍ରବେଶ ହେଲୁ ଯାଇ । ବାନ୍ଧବ ଜନ ମନ ତୋଷି ନନ୍ଦନ କୁଞ୍ଜେ ପ୍ରବେଶ ହେଲି ସଖି । କୁଞ୍ଜରେ । ଜଣୀରେ ଅନ୍ତଦ୍ୱାରେ ବସି । ଯେଣିକି ଶୁଣିଲେ ତୋ ରୂପ ଦର୍ଶନ ହନା ଅଜ କେତେ ଜଣି । ।୬୫।

ଏଠାରେ ନରହି ଗଲୁ ବନ୍ଧୁ ବୁଦ୍ଧି କାମ ମୁଖରେ ମୋତେ ଦେଇ । ତର ତୃଷାର୍ତ୍ତ ଶୃଗାଳ ଦୁଃଖୀ ମୁହିଁ ଧନ ତୁ ଧନରସ ଦାସ୍ୟୀ । ଏମନ୍ତ । କହି ନାଗର ଶିରୋମଣି । ପାଶେ ପ୍ରବେଶନ୍ତେ ଶ୍ରୀମତୀ ଲୁହରେ ବସିଲେ ପଞ୍ଚ କର ପୁଣି । ।୬୬।

ଦର୍ପଣ ଧରି ଇନ୍ଦୁଲେଖା ଚତୁରୀ ଶ୍ରୀକୃଷ୍ଣ ଅଗେ ଦେଖାଇଲା । ରତି ସଙ୍କେତ ଚନ୍ଦ୍ରକୁ ଚହ୍ନାଇ ଯେ ନାନା ଚରୁ କଥା କହିଲା । ବୋଇଲା । କାହ୍ନୁଁ ପାଇଲ ଏତେଦଣ୍ଡ । କେଉଁ ନାଗରୀ ସଙ୍ଗରେ ଥିଲ ହରି ଅଧର କଲା ଖଣ୍ଡ ଖଣ୍ଡ । ।୬୭।

ରଜନୀ ଯାକ ସଜନୀ ରସେ ଥିଲ ହୋଇଛ ଘୂର୍ଣ୍ଣିତ ନୟନ । ଅତି ରଙ୍ଗ ଦିଶେ ତାର ପ୍ରେମ ଅଶେଷ କରୁଛୁ ଅନୁରାଗ ପୂର୍ଣ୍ଣ । ନାଗରୀ । ଗାଢ଼େ କରିଛୁ ଅଲିଙ୍ଗନ । ଶ୍ୟାମଳ କୋମଳ ଅଙ୍ଗରେ ପ୍ରକଟ ହୋଏ କଙ୍କଣ ଚିହ୍ନ ମାନ । ।୬୮।

କରଜ କ୍ଷତ ଶ୍ରୀଅଙ୍ଗେ ହୋଏ ଖ୍ୟାତ କୁଚ କୁଙ୍କୁମେ ପୂର୍ଣ୍ଣ ଗାତ୍ର । ଦେବାକୁ ଚୁମ୍ବନ ତା ନେତ୍ର ଅଞ୍ଜନ କାଳିମା ଅଧରେ ଶୋଭିତ ବକ୍ଷରେ । ଅତି ଶୋଭିତ ଲାକ୍ଷା ଚିହ୍ନ । ନୀଳ ସୁନ୍ଦର ପର୍ବତରେ ପ୍ରକାଶ ହୋଇଛୁ ଜବା ବାଳ ମିତ୍ର । ।୬୯।

ଏତେକହି ସଖୀ ଦର୍ପଣକୁ ଚାହିଁ ଶୁଣି ରାଧା କ୍ରୋଧ ପ୍ରବଳ । ଅତି ମାନଭର ନେତ୍ରେ ପୂର୍ଣ୍ଣ ନୀର ଉଠି ଘରକୁ ଗଲେ ଚଳ । ଚଳନ୍ତେ । ଭ୍ରାନ୍ତ ମନେ ବନମାଳୀ । କେବେକ ସ୍ୱଭେ ଚନ୍ଦ୍ରାବଳୀ ସଙ୍ଗତେ ରମିଲି ମୁଁ କି କର୍ମ କଲି । ।୬୦।

ଏ ରତି ଚହ୍ନ ଦେଖନ୍ତେ ମୋ ଚାନ୍ଦବୀ ଅନ୍ତରେ କାମାନଳ ଜ୍ୱଳ । ଏ ମୋହର ଦୋଷ ଦେଖି ବହି ରୋଷ ସଖି ପୁରକୁ ଗଲା ଚଳ । ଅହହ । କେଶୋରୀ ମୋ ପାଶେ ଆସିବ । ପ୍ରେମକୁ ପ୍ରକାଶି ସେ ମଧୁର ଭାଷି ସ୍ୱରରେ ମୋ ମନ ତୋଷିବ । ।୬୧।

ମାଧବ ବିରସ ହୋଇ ଗୋଷ୍ଠ ପାଶ ପ୍ରବେଶ ହେଲେ ପୀତବାସ । ବନ୍ଧୁ ସୁବଳକୁ ଡାକ ସମୀପକୁ କହନ୍ତି ବଚନ ସଶ୍ୱାସ । ଏଥର । ରହିଁ ମୋ ଜୀବନରେ ଆଶ ; ମୋର ଦୋଷ ଦେଖି ସେ ମୋ ପ୍ରାଣସଖୀ ମୋପରେ କଲା ଗୁରୁ ରୋଷ । ।୬୨।

ଶୁଣି ଏ ରୀତି ବେନି ମିତ୍ର କହନ୍ତି ନକର କୃଷ୍ଣ ମନେ ଚନ୍ତା । ଉପାୟେ ବହି ସଖି ବନ୍ଧୁ ବୋଧାଇ ମନାଇଁ ବୃଷଭାନୁସୁତା । ଏମନ୍ତ । ଭାଷି ଶ୍ରୀକୃଷ୍ଣ ମନ ତୋଷି । ଗୋବ ଦୁହାଇ କ୍ଷୀର ମାନ ବୁହାଇ ପୁରେ ପ୍ରବେଶ ହେଲେ ଆସି । ।୬୩।

କୃଷ୍ଣଙ୍କୁ ଚୃହିଁ ଯଶୋଦା ଦୁଃଖ ବହି କ୍ଷୀର ସ୍ରବନ୍ତ ଅଶ୍ରୁ ନେତ୍ର । କୋଳକରି ନେଇଁ ମୁଖେ ଚୁମ୍ବ ଦେଇ ନିରେଖି ଶ୍ୟାମଘନ ଗାତ୍ର । ବୋଲନ୍ତି । ପ୍ରଭାତୁ ତୋ ମୁଖ କମଳ । ଦର୍ଶନ ନ ପାଇ ଆହା ମୋ କନ୍ଦାଇ ହେଉଅଛୁ ଅତି ବିକଳ । ।୬୪।

ରାତ୍ର ଥାଉ ଯାଉ ନଦ୍ରାରେ ଘୂମାଉଥିଲା ତୋ କର୍ମେ ଏତେ ଯୋଗ । ଅତି ସୁନ୍ଦର ସୁକୁମାର ଶରୀର ଏବେ ହୋଇଲା ଦୁଃଖ ଭୋଗ । ଶ୍ରୀମୁଖ । ଦିଶଇ ଅତିହିଁ ବିରସ । ଅତି ଶୀର୍ଣ୍ଣତର ଦିଶଇ ଉଦର ଯେସନ ମାସ ଉପବାସ । ।୬୫।

ମୁଁ ଅତି ଦୁଃଖୀ ଏମନ୍ତ ତୋତେ ଦେଖି ଧନ୍ୟ ପାଉଅଛ ଜୀବନ । ଶରୀର ଯାଚିତ କଣ୍ଟକର ଘାତ କୁମାରଙ୍କୁ ଦୁର୍ଲ୍ଲଭ ଏବନ । କହଇ । ବନ୍ଧୁ ସାକ୍ଷାତ ଛଳ ଶୀର । ତୁମ୍ଭ ତନୁକ ଏ ରଜନୀରେ ଆଜ ଗଲେ ଯମୁନା ନଦୀ ତୀର । ।୬୬।

ହେମ ହରଣୀ କସ୍ତୁରୀ ଏଣୀ ବୃନ୍ଦାବନେ କରୁଥିଲେ ସଞ୍ଚାର । ରାତ୍ରହୁଁ ଯାଇ କୃଷ୍ଣ ଫାନ୍ଦ ପକାଇ ଧରିବାକୁ କଲେ ବିଚାର । ସୁଗନ୍ଧେ । ମାନସ ହୋଇ ଉସ୍ତୁକତ । ଲାଗିଥିଲେ ମୋହେ ଲପଡ଼ିଲା। ଫାନ୍ଦେ ଚେଣ୍ଡ ହରଷ କୃଷ୍ଣ ଚତ୍ତ । ।୬୭।

ହେମ ହରଣୀଏ କ ଯୋଗରେ ପୁଣି ଫାନ୍ଦେ ପଡ଼ନ୍ତେ ଛାଡ଼ି ଦେଲେ । କସ୍ତୁରୀ ଅଶେ ବୃନ୍ଦାବନପ୍ରଦେଶେ ରାତ୍ରେରେ ବନ୍ଧୁତ ଭ୍ରମିଲେ । ଶ୍ରୀକୃଷ୍ଣ । ସଙ୍ଗରେ ଥାଉନିରନ୍ତର । ରାତ୍ରେ ଭୋଜନାର୍ଥେ ପୁରେ ଯାଉଥିଲ ଏବା ଗଲେ ତୁମ୍ଭ କୁମର । ।୬୮।

ଜନନୀ ଶୁଣି ଚକିତ ହୋଇ ପୁଣି ଲୋଚନରେ ପୂର୍ଣ୍ଣି ନୟନ । ବୋଇଲେ ରାତ୍ରେରେ କୃଷ୍ଣଙ୍କ ସଙ୍ଗେ ତୁମ୍ଭେ ମୋପୁରେ କରିବ ଭୋଜନ । ସୁବଳ । ବଟୁ ଶୁଣି ଅତି ହରଷ । ଏଥନ୍ତେ ଯଶୋଦା କୃଷ୍ଣଙ୍କୁ ସ୍ନାନ କରାଇ କଲେ ଦିବ୍ୟ ବେଶ । ।୬୯।

ସଖାଙ୍କ ସଙ୍ଗେ ଶ୍ରୀରାମକୃଷ୍ଣ ରଙ୍ଗେ ଆନନ୍ଦେ ମଣୋହିଁ କରନ୍ତି । ଚନ୍ଦ୍ରପରେ ନେଇ ଅତି ତୋଷରେ ରୋହିଣୀ ମାତା ପରଷନ୍ତି । ସୁବଳ । ବଟୁ ଶ୍ରୀକୃଷ୍ଣ ପାଶେ ବସି । ଭୁଞ୍ଜନ୍ତି ତୋଷେ କୃଷ୍ଣ ମନ ହରସେ ନରୁଚେ ରାଧା ଗୁଣ ଘୋଷି । ।୭୦।

ଜନନୀଙ୍କ ଉଦ୍ଧେ ଭୁଞ୍ଜି ଲାଗଯାଏ ଛାଡ଼ିଲେ ବଟୁ ପଛେ ଦେଇ । ସୁବଳଙ୍କୁ ପୁଣି ଦେନ୍ତି ବେନୁପାଣି ଭୋଜନ ଶେଷ ହେଲା ତହିଁ । ହୁବାସ । ନୀରେ ଆଚମନ ସାରିଲେ । ତାମ୍ବୁଳ ମଣୋହିଁ ସାଉ ସୁଗନ୍ଧ ପଲଙ୍କେ ଯାଇ ପହୁଡ଼ିଲେ । ।୭୧।

ଭରଦରେ ଚନ୍ଦ୍ର ନରହେ ଏମନ୍ତ ଭଣ୍ଠି ଧୂତଳେ କହନ୍ତ ।
ମୋ ପ୍ରାଣଧନ ମୋରେ ଗୁରୁ ମାନନ୍ତି କେବେ ପ୍ରସନ୍ନ ହେବ ମତି ।
ବଶ୍ୟ । ମାନସେ ପାଞ୍ଚି ଏକବୁଦ୍ଧି । ଯିବା ଶୀଘ୍ରତର ବଳମ୍ବ ନକର
ସଖୀଙ୍କି କହିବା ପ୍ରବୋଧ । ।୭୨।

ମନେ ଏହା ପାଞ୍ଚି ଡକାଇ ଦୂତକୁ କହିଲେ ସମସ୍ତ ଚରିତ ।
ରାଧା ପୁରଟେ ଯାଇ ତୁ ଯେ ବୁଝିବୁ ବୃନ୍ଦ ସମାଚାର କେମନ୍ତ ।
ଶୁଣିସେ । ଦୂତୀ ସତ୍ୱରେ ଗଲା ଚଳି । ଶ୍ରୀକୃଷ୍ଣ ବଚନ ଘେନି ନିଜ
ମନ ଶ୍ରୀମତୀ ପାଶେ ଯାଇ ମିଳି । ।୭୩।

ଦେଖିଲେ ଶ୍ରୀମତୀ ବସେ କହୁଛନ୍ତି ବିଷାଦଭରେ ହେଠ ଦୃଷ୍ଟି ।
ଗଣ୍ଡରେ କର ଦେଇଣ ରାମାବର ମଦନ ଶରେ ହୋଇ କଷ୍ଟି ।
ଏକାଳେ । ଚନ୍ଦ୍ରାବଳୀ ସଖୀ ପ୍ରବେଶ । ମୂଳରେ ଛଳ ଦେଲା
ଲଭା ପ୍ରଫୁଲ୍ଲ ପ୍ରାୟେ ତାଙ୍କ ମନ ସରସ । ।୭୪।

ଅବର ଖେଳେ ପଦ୍ମା ସବ୍ୟାଦି ଆଳି ଦିଶନ୍ତି ଅତିହିଁ ସୁଷମ ।
ଉତ୍ସୁକ ମତି ବଢ଼ିମାପଣେ ଅତି କହି ଲୋଡନ୍ତି ଶ୍ୟାମ ପ୍ରେମ ।
ଏମନ୍ତି । ପଚାରନ୍ତି ତାଙ୍କୁ ଲଜ୍ଜା । କେବିଣ ଚରିତ କହ ପ୍ରାଣେମିତ
ଚନ୍ଦ୍ରାବଳୀ ଶୁଭ ବାରତା । ।୭୫।

କହନ୍ତି ଯେ ଆଳି ଆମ୍ଭ ଚନ୍ଦ୍ରାବଳୀ ମାଧବ ସଙ୍ଗେ କେଳି ରଙ୍ଗ ।
ସବୁ କୁଶଳ ଗତ ରାତ୍ର କେବଳ ସମସ୍ତ ସଖୀ ନିଦ୍ରା ଭଙ୍ଗ ।
ଏଘେନି । ଦେଖିଲେ ଘୂର୍ଣ୍ଣିତ ନୟନ । ଶୁଣ ପ୍ରିୟ ସଖୀ ଭିଲେ ଆନେମୁଁ
ଦେଖି ନପାରୁ ତୁମ୍ଭର ବଦନ । ।୭୬।

ଏବଚନ ଶୁଣି ସଙ୍କଳି ତରୁଣୀ ଏକଙ୍କୁ ଆରେକ ଅନାଇଁ ।
ମେଲାଣି ଦେଲେ ପଦ୍ମାସବ୍ୟାଦି ଗଲେ ଶ୍ରୀମତୀ ସଖୀଗଣ ରହିଁ ।
ବୋଲନ୍ତି । ଶୁଣିଲୁ ଯାହା କହିଲେ । ଦୂତୀ ପଠାଇ କୁଞ୍ଜେ ମୋତେ
ରଖାଇ ଚନ୍ଦ୍ରାବଳୀରେ ବଞ୍ଚିଲେ । ।୭୭।

ଯେ ରତିରଙ୍ଗ ଚିହ୍ନରେ ପୂର୍ଣ୍ଣ ଅଙ୍ଗ ତର ଦେଖାନ୍ତି ମୋତେ ଆସି ।
ଯୁବତୀ ହୋଇଛ ସତି ଯାରେ ଦେଖି ଚନ୍ଦ୍ରାବଳୀରେ ଗଲି ଘୁସି ।
ଶୁଣିଲ- । -ହଁ ମିଥ୍ୟା କହିଲେ ଯେତେ । ପ୍ରତ୍ୟକ୍ଷ-ତୁମ୍ଭେ ଜାଣିଲ
ସବେଁ ଏବେ କହିଗଲେ ସଖୀ ଦାଷାରେ । ।୭୮।

ମୋହର ଅଗ ତାଙ୍କ ପୂର୍ବାନୁରାଗ ପ୍ରସଙ୍ଗ ନକହିବ କେହି ।
ଏମନ୍ତ କହି ମଉନ ହୋଇ ହେଟମୁଖେ ନେତ୍ରୁ ନୀର ଝରାଇ ।
ଅନ୍ତରେ । ପୂରନ୍ତ ଶ୍ୟାମ ପ୍ରେମ ରସ । କୃଷ୍ଣରେ ଦୁଃଖ ଅନଧ ସଙ୍ଗ
ହର୍ଷ ଦେଖ ଗତି ଚିହ୍ନ ପ୍ରକାଶ । ।୭୯।

ସ୍ଥିତି ଶୟନ କାନ୍ତି ଅତି ମଳିନ ଜଳ ଅନ୍ତର ପଦ୍ମ ପ୍ରାୟେ । କୃଷ୍ଣ
ପ୍ରେମ ରସେ ଅତି ଉଲ୍ଲସିତ ତା ତନୁ ଶୀର୍ଣ୍ଣ ଏବେ ହୋଏ ।
ହେମନ୍ତ । ହୋଇଛୁ ହାସ ରସ ବେଶ । ଏ ରୀତି ଦେଖି ସକଳ
ପ୍ରିୟସଖୀ ଅତି ଚମତ୍କାରର ମାନସ । ।୮୦।

ଦେଖି ଶ୍ରୀମତୀ ବରନ୍ଦମାନ ଦୂଷ୍ଟ ଶ୍ରୀକୃଷ୍ଣ ସନ୍ନିଧରେ ମିଳି ।
କହିଲା ଶ୍ରୀମତୀ ପୂରେ ଯାଇଥିଲେ ଅଜ ଯେ ଚନ୍ଦ୍ରାବଳୀ ଆଳି ।
କହିଲେ । ଚନ୍ଦ୍ରାବଳୀଙ୍କ ତୁମ୍ଭ ଲୀଳା । ଏମନ୍ତ ଉତ୍ତର ଶୁଣି
ଶ୍ରୀମତୀର ମାନ ଅଧିକ ପ୍ରବଳିଲା । ।୮୧।

ଶୁଣି ମୋହନ ଦୁଃଖିତ ଅତି ମନ ଏକାଳେ ବୃନ୍ଦଲତା କହେ ।
ବାହାରକୁ ମାତ୍ର କର୍କଶ ଶ୍ରୀମତୀ ଅନ୍ତରେ ତୁମ୍ଭ ସ୍ନେହ ବହେ ।
କହିଁତେ । ଶାନ୍ତ୍ଵକ ରଚିଲେ ଶ୍ରୀହରି । ସଖୀଙ୍କୁ ସଙ୍ଗତେ ଘେନି
ଅନୁବ୍ରତେ ରାଧା ସଖୀଙ୍କି ଅନୁସରି । ।୮୨।

ପ୍ରିୟ ବଚନରେ ଅତି ଖେଦବରରେ କୃଷ୍ଣ ଲଳିତାଙ୍କୁ ବଶ୍ୱାସେ ।
କହନ୍ତି ତୁମ୍ଭେତ ଥାଅ ଅନୁବ୍ରତ ମୋହର ପ୍ରାଣେଶ୍ୱରୀ ପାଶେ ।
ମୋହରେ । କିପାଇଁ କଲା ଏତେ ରୋଷ । ତୁମ୍ଭେ ପାଶେ ଥାଅ
ମୋ ସ୍ନେହ ନ କହ ବନ୍ଧୁ ମୋ ନବୁଝିଲା ଦୋଷ । ।୮୩।

ଲଳିତା ଭଣି ଶୁଣିମା ବେନୁପାଣି ଗୁରୁ ମାନନୀ ନୃପସୁତା ।
ବିସ୍ମୟ କରାଇ କହିଛନ୍ତି ଯହିଁ ନକହିବାକୁ ତୁମ୍ଭ କଥା । ଯେତେକ ।
ଶ୍ୟାମ ବର୍ଣ୍ଣେ ଚନ୍ଦ୍ର ପ୍ରତିମ । ଅତି ମାନଭରେ ହୋଇ ସେ ଦୂର
ଲେପାଉ ଚନ୍ଦନ କୁଙ୍କୁମ । ।୮୪।

ନ ଯେନନ୍ତି ତନୁ ଅଙ୍ଗେ ମୃଗ ମଦ ନୀଳ ପୁଷ୍ପ ବାସେ ବସନ ।
ପଦକୁ ନୀଳ ନାୟକ ମାନ କାଢ଼ି ବସାଇ ମାଣିକ୍ୟରତନ । ନୟନରେ ।
ନଯତନେ ଅଞ୍ଜନ ରଞ୍ଜନ । ନ ଦେଖନ୍ତି ଶ୍ୟାମ ସ୍ୱରୂପ ମାନଙ୍କୁ
କୃଷ୍ଣ ବର୍ଣ୍ଣରେ ଯେ ବସନ । ।୮୫।

ବଜିଅ ଲାଗି ମୁ କହନ୍ତେ ନ ବୁଝନ୍ତି ଶ୍ୟାମବର୍ଣ୍ଣ ବୋଲି ଖଦିର ।
ତଥାପି ତୁମ୍ଭ ନାମକେ ଜଣାଇବ ଚତୁର ଜାଣି ତାଙ୍କ ଛମ୍ଭ । ଏମନ୍ତ ।
ଶୁଣି ଲଳିତାର ଉତ୍ତର । ଯାଇ ବହନ ମିଳଲେ ଶ୍ୟାମଘନ ବେଶ,ଖା
ସଖୀ ପୁରତର । ।୮୬।

କହନ୍ତି ହର ମୁରଲି କରେ ଧର ଧନରେ କହନାହିଁ ଦୋଷ ।
ବାଉଳ ଅଳ ପଦ୍ମ ବୋଲି କୁମୁଦେ ଚୁମ୍ବିବା ଧନ୍ଦ ଅଛୁ ରୋଷ ।
ବକ୍ଷାଖା । ବୋଲେ କହିଲ ଭଲ ହର । ମେରୁ ସମାନ ଅନଳ
ଜଳୁଥିଲେ ତୁଷାର ବନ୍ଦୁ କି ନବାର । ।୮୭।

ପୁସ୍ତକ ବର୍ଣ୍ଣ କଳାକ୍ଷର ଲେଖନ ନ ଗୃହିଁ ନ ପଢ଼ନ୍ତି ନାମ ।
କସ୍ତୁରି ଗୋରୋ ଚନ୍ଦନ ବୋଳଦେଲେ ଜାଣି ହୁଅନ୍ତି ମୋରେ ବାମ ।
ସାକ୍ଷାତ । କହ ମୁ କହିତ ନ ପାର । ସେ ରମଣୀ ମଣି ସମସ୍ତଙ୍କୁ
ଜାଣି କହିବ ଏ କଥା ହେତୁର । ।୮୮।

ଏମନ୍ତ ଶୁଣି ସଖୀଙ୍କ ସଙ୍ଗେ ଯେନ ହେଲେ ଚନ୍ଦ୍ରା ପାଶେ
ପ୍ରବେଶ । ଦେଖନ୍ତୁ ଭଣି ଗୋକୁଳ ଶିରୋମଣି ଧନରେ କହ ମୋ
ସନ୍ଦେଶ । ବୋଲନ୍ତି । ଚନ୍ଦ୍ରା ଶୁଣ ହେ ପଦ୍ମନେତ୍ର । ଅପ୍ରମିତମାନ
ଗଗନ ସମାନ ମୋର ହୋଇଥିବ ନବ ବାଢ଼ିତ । ।୮୯।

ନୀଳ ବସନ ଦେଖି ହୋଏ ସମନ ଜବସନ୍ତକୁ ଦେଖି ଦୁଃଖୀ । କାଳମା ଚନ୍ଦ୍ର ପ୍ରତିମାକୁ ନ ଗ୍ରହେଁ ଅଛି ବିମୁଖ ଦେଖି ହେଙ୍କୀ । ସମସ୍ତ । ଯାଉ କହିବ ବନମାଳୀ । ଶୁଣି ନାଗରବର ଚନ୍ଦ୍ରଂ ସଖିର ଚମ୍ପକଲତା ପାଶେ ମିଳ । । ୧୦ ।

ବୋଲନ୍ତିରେ ସଖୀ ହେ ଚନ୍ଦ୍ରମା ମୁଖୀ ସୁନ୍ଦରେ ମୋର ଦୁଃଖ କହି । ଭେଟାଇବୁ ମୋତେ ମୋର ଦୋଷ ଯେତେ କ୍ଷମା କରୁବ ଅମ୍ଭ ସଖି । ସଜନୀ । ବୋଲଇ ଅହେ ବନମାଳୀ । ଅମହତଭୃଙ୍ଗ ଯାଇଲେ ବାସଙ୍ଗ ପଦ୍ମକୁ ଛେକି କରେ କେଳ । । ୧୧ ।

କୃଷ୍ଣ ଗୃମଗ୍ର ସେବା କରି ମୋହର ତୁମ୍ଭେ ଯେନ ହେଲା ଅନ୍ତର । ସଖୀଙ୍କ ସଙ୍ଗେ ନାନା କଥା ପ୍ରସଙ୍ଗେ ଜଣାଇବ ରାଧା ସୁନ୍ଦର ଏବାଣୀ । ଶୁଣି ଚଳିଲେ କୃଷ୍ଣ ବେଗେ । ମଦନେ ଅବେଶ ହୋଇ ପୀତବାସ ମିଳିଲେ ରଙ୍ଗଦେବୀ ଅଗେ । । ୧୨ ।

ଶ୍ରୀକୃଷ୍ଣ ବୋଲନ୍ତି ଶୁଣରେ ସୁମତି ତୁମ୍ଭେ ରାଧାଙ୍କ ସହଚରୀ ମାନଘ ଯେନାଇ ନକହ କପାଇଁ ଏ ମୋ ସବ ଦୋଷ ନବାରୁ ଅଧରୁ । ଅମୃତ ଦେଇ ଯାଉରେ ପ୍ରୋଷି । କମ୍ପିତ ଦୋଷରେ ଦଗ୍ଧ ଛେକି ତାରେ ସରହସ୍ତେ କବ କନାଣି । । ୧୩ ।

ସଖୀ କହେ ଶୀର ହେ କବ ନାଗର ଗୁରୁ ମାନନୀ ଅମ୍ଭ ସହି । କୃଷ୍ଣ ନାମ ଯେତେ କର୍ଣ୍ଣେଇଁ ଶ୍ରୁତେ କହି ବରଷା କ ଅଛଇ । ସମସ୍ତ । କଗି କହିବ ତୁମ୍ଭ ଦୁଃଖ । ଶୁଣି ଏକ୍ଷ ହ୍ରଷ ସୁଦେବୀଙ୍କ ପାଶ ମିଳିଲେ ଯାଇ ପଦ୍ମମୁଖ । । ୧୪ ।

କୃଷ୍ଣ ତାଙ୍କୁ ଦେଖି ବୋଲନ୍ତିରେ ସଖୀ ତନ୍ମକୁ କହ ମୋ କଥିତ । ନାନା ପୁଷ୍ପ ସଙ୍ଗ ରଙ୍ଗ ମତ୍ତ ଭୃଙ୍ଗ ଦେଖି ପଦ୍ମିନୀକ ବାରନ୍ତି । ସୁଦେବୀ । ବୋଲନ୍ତି ଯେଉଂ ପ୍ରିୟବଧ । ଅନାଦ ସୁମୁଖୀ ସଙ୍ଗମ ଚହ୍ନ ଦେଖି ଧଇର୍ଯ୍ୟ ଧର କ ପାରନ୍ତି । । ୧୫ ।

ପରକୀୟ ରସ ନୃବଇପେ ଶେଷ ବେନମନ ନୋହେ ଭୂପତି ।
ସ୍ତୁତି ଅନ୍ତେ ବର୍ଣ୍ଣି ସ୍ନେହଚତ୍ରେ ମଧୁର ବଚନ ଭାଷନ୍ତ ।
ଚନ୍ଦ୍ରିଯେ । ବେନଜନ ହେଲେ ଲଜ୍ଜିତ । ବୋଲେ ଚତୁରୀ କାନ୍ତକୁ
ତୁମ୍ଭେ ପରା ନୃପ ଅନ୍ୟନାରୀରେ ରତ । ।୧୦୮।
ଜାଣିବା ପାଇଁ ଅଇଲି ସିନା ମୁହିଁ ଏତେ ରାତି କର ଅନରେ ।
ଏତେକ କହି ସଙ୍କୋଚ ଧୀରବର୍ଦ୍ଧି ଯାଇ ପ୍ରବେଶ ନିଜପୁରରେ ।
କଷ୍ଟ'ଶା । ହସିଣ ବୋଲନ୍ତ ବଚନ । ଏହିଭାବଟି ଅଜଅପି କହିଲେ
ଚନ୍ଦ୍ରାବଳୀଙ୍କ ସଖୀଗଣ । ।୧୦୯।
ଶୁଣି ଶ୍ରୀମତି ହୋଇଲେ ତୋଷମତି କୃଷ୍ଣରେ ବଢ଼େ ଅନୁରାଗ ।
ଚନ୍ଦ୍ରାମୁଖ ଗୃହେ ତୁଳସୀ କହଇ ତୁମ୍ଭେ କଥାଯେ କହ ବେଗ ।
ପ୍ରହରେ । ହେଲାନି ଏବେ ଗାଢ଼ ଅସି । ବୃଷଭାନୁ ସୁତା ବୋଲନ୍ତି
ଗୋ ଚନ୍ଦ୍ରା କହମୁ ଶୁଣ ଅଛୁ ବସି । ।୧୧୦।
କହନ୍ତ ଚନ୍ଦ୍ରା ଶୁଣ ଚମ୍ପକ ଲତା ରମଣ ବୋଲି ଏକପୁର ।
ସୁରଙ୍ଗ ନାମେ ଚର୍ଦ୍ଦିଂର ନୃପବର ତାସୁତ ମଦନୁ ସୁନ୍ଦର । ତାହାର ।
ନାମଅଟଇ ସୁକୁମାର ! ମନ୍ତ୍ରିରନାମ ଖ୍ୟାତ ଗୁଣାନୁପମ ସୁଶୀଳା
କୁମାରୀ ତାହାର । ।୧୧୧।
ବସନ୍ତ ଉତ୍ସବେ ନୃପତି ନନ୍ଦନ ଦେଖିଲା ମନ୍ତ୍ରୀସୁତାମୁଖ ।
କୁମାରର ମୁଖ କନ୍ୟା ପୁଣି ଦେଖି ଲଭିଲେ ହୁହେଁ ସ୍ମରଦୁଃଖ ।
ମାଲୁଣୀ । ଗାଇ ନୃପସୁତ ବସ୍ତାପେ । ପତ୍ରକୁ ଲିହି କରେ ଦେଇ
ବୋଇଲା ଦେବୁ ଏ ମନ୍ତ୍ରୀସୁତା ପାଶେ । ।୧୧୨।
ଘେନି ମାଳତୀ ମାଲୁଣୀ ପତ୍ର ଘେନି ମିଳିଲା ମନ୍ତ୍ରୀସୁତା ପାଶେ ।
ସେ ମନ୍ତ୍ରୀସୁତା କୁମରେ କର ଚନ୍ଦ୍ରା ଭରିହ ବେଦନା ହରଷେ ।
ଭରଳ । ତନୁ ଛନ ଛନ୍ନ ମାନସ । ଏକାଳେ କୁସୁମ ଗନ୍ଧ ଘେନି
ମିଳେ ମାଲୁଣୀ ମନ୍ତ୍ରୀସୁତା ପାଶ । ।୧୧୩।

ଖଞ୍ଜନ ଦୃଶୀ ଗନ୍ଧର୍ବିଙ୍କି ପ୍ରଶଂସି ଚିତ୍ରାଙ୍କ ଦେଖି ପ୍ରେମସ୍ଫୁରି ।
ଲିଖିତ ହେମବରଣୀ ପଙ୍କଜାକ୍ଷୀ ଚନ୍ଦ୍ରଆନନୀ ମନ୍ଦାଳସୀ । କଣ୍ଠାକ୍ଷେ ।
ମୋହନ ହରନେଲୁ ବୁଦ୍ଧି । ତନୁଅସ୍ଥିର ଭୋର ହନୁମୋହର ସଦୟ
ହୃଥ ପ୍ରାଣସମ୍ମା । ॥ ୧୧୪ ।

ନବ ରସିକା ଲେଖି ପ୍ରୀତି ପତ୍ରିକା ମାଳୁଣୀକରେ ସମର୍ପିଲା ।
ପତ୍ରିକାକୁ ଘେନି ମାଳତୀ ମାଳୁଣୀ କୁମର କରେ ନେଇଦେଲା ।
ପତ୍ରିକା । ଧରାଇ ତୋଷେ ନୃପସୁତ । କନ୍ଦର୍ପ ସୁନ୍ଦର ସ୍ମରତାପ ହର
ଦେଲେ ମୁଦ୍ରୁମ୍ଭ ଅନୁଗତ । ୧୧୫ ।

କମଳ କଳି ଜଳରେ ଯିମା ବଢି ତପନ କରେ ପ୍ରକାଶିତ ।
ଗନ୍ଧା ମକରନ୍ଦ ଶୋଷି ଆସ୍ୱାଦନେ ଭ୍ରମର ଯିମା ତାରକାନ୍ତ ।
ଭୁମ୍ଭର । ମନସନ୍ଧି ତନ୍ଧି ବଢର । ପଢି ପତ୍ର ନୃପସୁତ ହରଷିତ
ଉତ୍ସୁକ ସେ କଳ ମନର । ୧୧୬ ।

ସଙ୍କେତ ପ୍ରକାରେ ରେବାନଦୀ ଖରେ ବେତସ ଲତାତଳେ ମିଳ ।
କଦମ୍ବ ସୁବାସ ଘେନି ବନ୍ଦେ ବାତ ଆନନ୍ଦେ ଚଢି କଲେ କେଳ ।
ଏମନ୍ତ । କହାର ପତିଦିନେ କର । ସୁରତି ଅନ୍ତେ ଏକଦିନ
ଏକାନ୍ତେ କୁମରକୁ କହେ କୁମାରୀ । ୧୧୭ ।

ହେବ ଅତିକଷ୍ଟ ଏନଶିରେ ଭେଟ ଦୁରଅବଟେ ଆସିନୋହେ ।
ପିତାଙ୍କୁ କହମୋତେ ହୃଥ କବାହ ସ୍ୱତେ ବଞ୍ଚିବା ଅମ୍ଭେଦୁହେଁ ।
ପୁରରେ । ପ୍ରବେଶିସେ କୁମରମଣି । ବଦନମାଜି ଅବନୀରେ ପଡୁଛି
ନଭୁଞ୍ଜି ସେଜେ ଅନ୍ନପାଣି । ୧୧୮ ।

ଯେବଳ କହନ୍ତେ ନୃପତି ବୃଦ୍ଧରେ ପୁଚ୍ଛେ କୁମରକୁ ଏମନ୍ତ ।
ଛ ଅପମାନେ ଏବେ ଭୂମି ଶୟନେ କହ କରହ ମୁଦ୍ରୁରତ । କୁମର ।
କହଇ ଏବଚନ ଶୁଣି । ବଜିଲା ମୋହନ ନକରଏ ଅଳ ହସ୍ତ
କର ମନ୍ତ୍ରୀ ଦୁଲୁଣି । ୧୧୯ ।

ଯମୁନା ଜଳରେ ସ୍ନାନ ନ କରେ ତୁମ୍ଭ ଶ୍ରୀଅଙ୍ଗ ସମ ସ୍ୱତ । ଗୁଳ୍ମ ମାନଙ୍କ ଅମୃ ଘ୍ରାଣଯଷ୍ଟିକା ସମସ୍ତ ଛାଡ଼ି ମୁଁ କହିବ । ଏମନ୍ତ । ବଚନ ଶୁଣି ଶ୍ୟାମଘନ । ଅତି ଅଶକତ ସ୍ୱରୂପରେ ଚଉ ଭୃଙ୍ଗବଧୂ ପାଶେ ଗମନ । ।୯୬।

ବୋଲନ୍ତି ଗୋ ସଖି ଚନ୍ଦ୍ରକୁ ନପାଇ ଚକୋର ଆକୁଳ ଯେମନ୍ତ । ଦୋଷ ମୋ କ୍ଷମିତ ଦଣ୍ଡିତ ବନ୍ଧୁତ ଶିରୀଷ ପୁଷ୍ପେ ବଳୁ ଘାତ । ସଖୀରେ । ତୁମ୍ଭେମାନେ ଗୁଣରେ ଗରିଷ୍ଠ । ଏ ମୋ ଦୁଃଖ ଶୁଣି ଶ୍ରୀମତୀଙ୍କି କହି ଫେଡ଼ ଏ ମୁରଶର କଷ୍ଟ । ।୯୭।

ଭୃଙ୍ଗବଧୂ ସ୍ୱରେ ତୁମ୍ଭ ପ୍ରୀତେ ଅଶେଷ କରେ ଯେବେ ଅମ୍ଭେ କହନ୍ତି । କେଦାର ରାଗ ଆଳାପ କରି ଧୀରେ ସ୍ନେହେ କହିଲୁ ଏହା ପାନ୍ଥି । ଦେଖ ଗୋ । ସରୋଧ ଏହୁ ଶୁକ୍ଳପକ୍ଷ । କେବଳ ଅଭିସାରିକା ଆନନ୍ଦକୁ ବଢ଼ାଇ ପିନ୍ଧା କୃଷ୍ଣପକ୍ଷ । ।୯୮।

ଶୁଣି ଏହିବାଣୀ କର୍ଣ୍ଣେ ଦେଇ ପାଣି ଶ୍ରବେ ଉଚ୍ଚାରେ ଛନ୍ଦମୁନି । ବୀଣା କରଗୁଣି ଭଟି ଅତି ସଭୁରେ ବଜ୍ର ପଡ଼ିଲା ପ୍ରାୟ ମଣି । ପ୍ରସଙ୍ଗ । ଦେଖାଇ କହିବ ଯେଣାଇଁ । ପିଷ୍ଟ ହେବ ଯେବେ ବସନ୍ତ ଉତ୍ସବେ ବହେ କରିବେ ଅମ୍ଭ ସଖୀ । ।୯୯।

ବ୍ରଜମୋହନ ଶୁଣି ତହୁଁ ଗମନ କଲେ ଇନ୍ଦୁଲେଖା ପାଶରେ । ବନ୍ଦନା ଭାଷି କହନ୍ତି ରସବତୀ ଶ୍ରୀମତୀମାନଙ୍କ ମୋହରେ । ସେ ମାନ- -ଙ୍କେ ଗଲିନ୍ତି କଷ୍ଟେ ଭାଷି । କର୍ଣ୍ଣଧାର ଭୂମି ବନ୍ଧୁ ତୋଳ ଦେଇ ମୋତେ ଭଣ୍ଡାର ମହାଳସୀ । ।୧୦୦।

ଶୁଣି ସେ ଚତୁରୀ ବଚନ ଗଢ଼ୁରୀ କହଇ ଶୁଣନ୍ତେ ମୋହନ । ଗୁରୁମାନଙ୍କ ଅନୃପ୍ରାଣସଜ୍ଜନୀ ମୁକୁଟେ ଗନ୍ଧାନ୍ତେ ଅଜନ । କୃଷ୍ଣେ ତୁମ୍ଭ ସ୍ୱରୂପ ଅଗ୍ରପରି । ଅତି କ୍ରୋଧଭରେ ଭୂମିରେ ପରେ ମୁକୁର କରରୁ ପକାଇ । ।୧୦୧।

ଅତି ମାନବତୀ ହୋଇଛୁ ଶ୍ରୀମତୀ ମୋର କହିଲେ ନ ଘେନଇଁ ।
ଏ ଦୁଃଖରୁ ପାର ହୋଇବ ସଖୀର ପଦ କମଳ ଧର ଯାଇ ।
ତୋ ବିନୁ । ନାହିଁ ଟି ଆନ ପ୍ରତିକାର । ସମସ୍ତ ଜାଣି କହିବୁ ତେଣୁପାଣି
ତୁମ୍ଭଙ୍କୁ ଘେନ ସଙ୍ଗତର । ।୧୦୨।

ନନ୍ଦନନ୍ଦନ ଶୁଣି ସଖୀବଚନ ନିଜ ପୁରକୁ ଗଲେ ଚଳି ।
ସଖୀ ଏଥନ୍ତେ ଯାଇଣସେ ଦିନାନ୍ତେ ଶ୍ରୀମତୀ ସନ୍ନିଧରେ ମିଳି ।
ସେବନ୍ତି । ଶ୍ରୀମତିଙ୍କ ମନକରସ । ନାହିଁ ସୁଖଲେଶ ରଜନୀ ଦିବସ
ମୂର୍ଚ୍ଛରେ ଅତି ଅବଶ । ।୧୦୩।

ଶ୍ରୀକୃଷ୍ଣ ବିଚ୍ଛେଦ ନଆସଇ ହଦ ଅତିଅବୁଝ ହୋଇ ସହି ।
ଜଗିଣ ପାଶରେ ପ୍ରଥମ ପ୍ରହରେ ଚୁଳସା ସଖୀଗଣ ରହି ।
ବୋଲଇ । କହଗୋ ତୁମ୍ଭେ ଏକକଥା । ଯେଣେ ତେମା ମନ
ହୋଇବ ପ୍ରସନ୍ନ ତୁଟିବ ମୂରଣର ବ୍ୟଥା । ।୧୦୪।

କହେ ଲଳିତା ବିଶାଖା ତହିଁ ଶ୍ରୋତା ହୁଁ ହୁଁ କରନ୍ତି ପାଶେବସି ।
କାମ ପୁରବୋଲି ଏକଇ ନଗର ତହିଁ ନୃପ କାଳୀ ଉପାଧି ।
କହିନ୍ତେ । ପାଳଇ ସେ ନଗର ଜନ । ସ୍ତୁତି ଗୃହଜାତି ଅଳପ ସମ୍ପତ୍ତି
କଏ ବାରସ୍ପତୀ ସମାନ । ।୧୦୫।

ମାଧବ ଧନକ ନାମେକ ବଣିକ କଳାବତୀ ତାର ରମଣୀ ।
ଅନ୍ୟ କାନ୍ତାରେ ଆସକ୍ତ ନିରନ୍ତରେ ଭ୍ରମଇଁ ସେନାଗର ଜାଣି ।
କାମିନୀ । ତାରେ ହୋଇ ଗୁରୁ ମାନିନୀ । କାନ୍ତ ଅନାସକ୍ତ ଜାଣି
ନିଜଚିତ୍ତ ଅନ୍ୟପୁରୁଷ ଇଚ୍ଛେ ପୁଣି । ।୧୦୬।

ସଙ୍କେତ ପାଇ ହୋଇଲେ ଅଭିସାର ଗାଢ଼ାନ୍ଧକାରେ ଏକାକିନୀ ।
ଅନ୍ୟ ନାୟକ ଅନ୍ୟ କାନ୍ତା ନରିଲେ ଦୁହେଁହୋଇଲେ ମିଶାମିଶି ।
କରନ୍ତି । ବିବିଧ ବନରେ ସୁରତି । ଗାଢ଼ାଲିଙ୍ଗନ ଚୁମ୍ବନ ନଖ କ୍ଷତ
ସବେ ଅତିହିଁ ପ୍ରେମମତି । ।୧୦୭।

ଶୁଣି ରାଜନ ଅତିହିଁ ତୋଷମନ ମନ୍ତ୍ରୀଙ୍କ ରାଇ ଆଜ୍ଞାଦେଲେ ।
ଅମ୍ଭ କୁମରଙ୍କୁ ତୁମ୍ଭ ଦୁହିତାକୁ ବିବାହ କରିବା ବୋଇଲେ ।
ଏବାଣୀ । ଶୁଣି ମନ୍ତ୍ରୀ ଅତି ସମ୍ମତେ । ଉତ୍ସବ ମଣ୍ଡି ବିବାହ କଲେ
କନ୍ୟା ଦାନ ଦେଇ ସେ ନୃପ ସୁତେ । ।୧୬୦।
ସେ କନ୍ୟାର ସଙ୍ଗେ ନୃପସୁତ ରଙ୍ଗେ ଅଟ୍ଟାଳରେ ଚନ୍ଦ୍ର କିରଣେ ।
ବିହାର କରନ୍ତି ମନ କୌତୁକେ ଶାନ୍ତ ଗତ ଲୀଳା ମନେ ଭାବନେ ।
ନାୟକ । କହଇ କାନ୍ତା ମୁଖ ଚାହିଁ । ଚଇତ୍ର ଜାଣି ସେହି ଶଶି
ପ୍ରକାଶି ମୁହିଁ ସେ କାନ୍ତ ଯେହ୍ନି ତୁହି । ।୧୬୧।
ରେବା ନଦୀ ତୀରେ ବେତ୍ର ଲତା ତଳେ ବହେ ଯା କଦମ୍ବ
ପବନ । ଚିତ୍ତ ଉତ୍କଣ୍ଠିତ ହୋଇ ପ୍ରାଣମିତ ଯେହ୍ନି ଲୀଳାରେ ବସିଲ
ମନ । ସେପରି- । -କୀଡ଼ା ରସ ସୁଖ ବିଶେଷ । ଚତୁରା କହେ ତୋଷ
କଥା ହେଲା ଶେଷ ସଜନୀ ଗଣ ହସ ହସ । ।୧୬୨।
ସଖୀ ଏ କହନ୍ତି ପରକୀୟ ପ୍ରୀତି ସଙ୍ଗେ କିସ କିସ ସମାନ । ସ
-ବୁଝି ଶ୍ରୀମତୀ ମାନ କହୁଛନ୍ତି କୃଷ୍ଣ ବିହନେ ରାତ୍ର ଦିନ । ପ୍ରବେଶ ।
ହୋଇଛି ଏ ବସନ୍ତ କାଳ । ମଧୁପ ଝଙ୍କାର ପିକ କୋଳାହଳ ଜାଣ
ଏ ବିରହୀଙ୍କ କାଳ । ।୧୬୩।
ଶୁଣି ଶ୍ରୀମତୀ ମାନସେ କହୁଛନ୍ତି କେ ଦେବ କୃଷ୍ଣ ଆଣି ମୋତେ ।
ରଙ୍ଗଦେବୀ ଚାହିଁ ତୁଙ୍ଗସୀ ବୋଲଇ ଜାଣି ଦ୍ୱିତୀୟ ଯାମ ଅନ୍ତେ ।
ସେ ରଙ୍ଗ- । -ଦେବୀ ମାନସେ ତୋଷ କଲେ । ସଖୀଙ୍କ ବଦନ
ଚାହିଁ ସେ ବୋଲଇ ଶୁଣ ମୁଁ ପ୍ରସଙ୍ଗ କହିବ । ।୧୬୪।
ସେ ରଙ୍ଗଦେବୀ କହନ୍ତି କଥା ଭାବ ସୁଦେବୀ ଚାହିଁ ହୁଁ ହୁଁ
କରେ । ଅବନ୍ତୀ ରାଜ୍ୟେ ରସାନନ୍ଦ ବୋଲି ସେ ଥିଲା ଏକଇ ଦ୍ୱିଜ
ବରେ । ଅଟେହିଁ । ସୁନ୍ଦର ସମ୍ପୂର୍ଣ୍ଣ ଯୌବନ । ତାର ରମଣୀ କମଳ
ଲତା ନାମ ଅତି ସ୍ନେହରେ ହରେ ଦିନ । ।୧୬୫।

ଏକ ଦିନେ ଦେବ ପୂଜନେ ନୃପତି ସଦନେ ଗଲେ ଦ୍ୱିଜବର । ଗଣିକା ନୃତ୍ୟ ଦେଖି ହୋଇ ମୋହିତ ମାନସ ବଳିଲା ତାହାର । ତାସଙ୍ଗେ । ରମଣ କଲା ଧନ ଦେଇ । ଯାଇ ତାର ଗୃହ ପୁରେ ଥିଲା ଦ୍ରବ୍ୟ ସମସ୍ତ ଦେଲା ତାକୁନେଇଁ । ।୧୨୬।

ଧନ ସରିଲା ଦରିଦ୍ର ବିପ୍ର ହେଲା ଗଣିକା ନ ଦେଲା ସୁରତ । ବେଶ୍ୟା ଅନୁରାଗେ ପ୍ରିୟଙ୍କୁ ମାଗିଲା ଅଙ୍ଗ ଭୂଷଣ ଦିଅ ମିତ । ନ ଦେଇ । ରମଣୀ ଗଲା ପିତା ପୁର । ଦ୍ୱିଜ ନିରାଶ ଦରିଦ୍ର ହୋଇ ଝାସ ଦେଲା ଯେ ସମୁଦ୍ର ମଧର । ।୧୨୭।

ପ୍ରାଣ ବଳକେ ଗୋବିନ୍ଦ ରଖ ବୋଇଲେ ମିଳିଲା ଏକ ନାବ ଆସି । ତହିଁ ବସନ୍ତେ ଇଚ୍ଛାରେ କଷ୍ଟେ କଷ୍ଟେ ତ୍ରିକୂଟାଚଳେ ଲାଗେ ଅସି । ଓହ୍ଲାଇ । ବ୍ରାହ୍ମଣ କ୍ଷୁଧାତୁର ହୋଇ । ଅତି ଅଶକତ ହୋଇ ସେ ଶୋଇଲା ଶାଳ ତରୁର ମୂଳେ ଯାଇ । ।୧୨୮।

ମେଘ ରାକ୍ଷସ ତହିଁ କରେ ନିବାସ ମନୁଷ୍ୟ ମାଂସ ଖାଏ ନିତି । ସେ ରାତ୍ରିରେ ରାଜ୍ୟେ ଯାଇ ହରିଲା କାଶୀ ନୃପତିର ଦୁହିତି । ତାହାର । ନାମ ଚନ୍ଦ୍ରକାନ୍ତ ଅଟଇ । ଅବସ୍ଥିବନ୍ତୀ କିଶୋରୀମତି କୃଷ୍ଣ ଯ ବୋଲି ପଲଙ୍କରେ ଶୋଇ । ।୧୨୯।

ଏହି ଛନ୍ଦ ଦେଖି ନୃପ ନନ୍ଦିନୀକି ପଲଙ୍କ ସହିତେ ଆଣିଲା । ଘେନି ହରଷରେ ପବନ ସଦୃରେ ତ୍ରିକୂଟାଚଳେ ପ୍ରବେଶିଲା । ଦେଖିଲା । ବିପ୍ରକୁ ଶାଳ ତରୁ ତଳେ । ବିଗୃରେ ମନ ସୁଦିନ ଅଜ ବିପ୍ର ଭୋଜନ କରିବା ଲାଭ ମିଳେ । ।୧୩୦।

ନୃପ ଦୁହିତା ସଚେତ ହୋଇ ଭୟେ ଅଚେତେ କରେ ମନେ ଚିନ୍ତା । ରାକ୍ଷସ ପୁରର ପ୍ରବେଶ ଦେଖି କୋପରେ କହେ ତାର ବନିତା । ଏହାକୁ । ରଖି କ ଉପେକ୍ଷିବୁ ମୋତେ । ରାକ୍ଷସ ବୋଲେ ବେନିଙ୍କ ବେନି ଗ୍ରାସ ମିଳିଛି ଖାଇବା ନିଶ୍ଚିନ୍ତେ । ।୧୩୧।

ଏହାକୁ ମୁହିଁ ଖାଇବ ଖାଅ ତୁହି ଶାଳ ତଳେ ଯେ ଅଛୁ ଶୋଇ । ଏମନ୍ତ ଶୁଣି ରାକ୍ଷସୀ ଅତି ଶୀଘ୍ର ବିପ୍ରକୁ ଦେଖିଲାକ ଯାଇ । ଅପ୍ସରୀ । ଶୁଣି ପ୍ରଶଂସେ ନିଜ ମତି । ବୋଇଲା ସେ ଯେବେ ଅନ୍ୟ ପତ୍ନୀ କଲା ଏହାକୁ କରିବ ମୁଁ ପତି । । ୧୩୨ ।

ଏମନ୍ତ ଭାଳ ବିପ୍ରର ପାଦ ଗୃହ ଜେଗନା କର ପ୍ରୀତି ବଶେ । ମୋହିନୀ ରୂପ ଧରି ଯେସନ୍ତ ଅପ୍ସରୀ ସ୍ୱଗତ ଭଷରେ ହସେ । ରାକ୍ଷସ । କନ୍ୟାକୁ ଭର୍ତ୍ସନା ମାନସ । ବୋଲେ କୁମାରୀ ଅବବାହି କନ୍ୟା ମୁଁ ବିପ୍ରକୁ ଯାଇ ଦେବ ଅଯ । । ୧୩୩ ।

ବିପ୍ର ଥାଇ ବର୍ଷ କରାଇଲା ପଛେ ଖାଅ ବା ଭଖ ତୁମ୍ଭ ମନ । କୁମାରୀ ବାଣୀ ରାକ୍ଷସ ଶୁଣି ଶୀଘ୍ରେ ବିପ୍ର ଅଣିବାରେ ଗମନ । ଦେଖିଲା । ନିଜ ପ୍ରିୟର କେବଳ ରୂପ । ଦେଖି ରାକ୍ଷସ ଭୟଙ୍କର ସ୍ୱରୂପେ ଧାଇଁଲା ବହି ବୃତ୍ତ ରୋଷ । । ୧୩୪ ।

ତାର ରମଣୀ ପୂର୍ବରୁ ଥିଲା ଜାଣି ରାକ୍ଷସ ମୃତ୍ୟୁ ଭେଦ ସୂତ୍ର । ବିପ୍ର କରେ ଦେଇଣ ମାରନ୍ତେ ତୁରତେ ଫୁଟିଲା ତାର ବକ୍ଷସ୍ଥଳ । ତକ୍ଷଣେ । ପ୍ରାଣେ ନାଶ ହେଲା ରାକ୍ଷସ । ବିପ୍ର ଅପ୍ସରୀ ଅତିହିଁ ହୃଦରରେ ମାନସେ ହୋଇଲେ ହରଷ । । ୧୩୫ ।

ବେନିଜଣ ମିଳି କନ୍ୟା ପାଶେ ଚଳ ନିର୍ଭୟ କହଣ କହନ୍ତି । ତୁମ୍ଭ ବାଲ୍ୟପୁରେ ଛାଡ଼ିବୁ ସନ୍ଧ୍ୟାରେ ବଧୂ ନୁହ ରାଜ ଦୁହିତା । ରାକ୍ଷସୀ । ହସ୍ତିନୀ ସ୍ୱରୂପକୁ ବହି । କାଶୀ ଦେଶରେ ପରବେଶ ହୋଇଲା ବେନିଙ୍କି କଟରେ ବସାଇ । । ୧୩୬ ।

ଯେ ରାଜ୍ୟ ଲୋକ ହୋଇ ଅତିଉତ୍ସୁକ କହିଲେ ନୃପତିଙ୍କ ଛାମୁରେ । ଶୁଣି ନୃପତି ହୋଇଣ ତୋଷ ମତି ପ୍ରବେଶିଲା କନ୍ୟା ଅଗାରେ । କୁମାରୀ । କହିଲା ସକଳ ବଚନ । ଯେଅପ୍ସରୀ ଭଣି ଶୁଣ ନୃପମଣି ବିପ୍ରେ କର କନ୍ୟା ପ୍ରଦାନ । । ୧୩୭ ।

ଚନ୍ଦ୍ରା ତତ୍ତ୍ୱ କହ ତୋତେ ଦଣ୍ଡଧାରୀ ଦେଲେ ଅନେକ ଧନ
ରାଶି । ମେଘ ରାକ୍ଷସ ସଞ୍ଚିତ ଧନ ମାନ ଦେଇ ଅସୁରୀ ହେଲା
ତୋଷ । ପ୍ରବୋଧ । ଏହନ୍ତେ ଚଳିଲା ରାକ୍ଷସୀ । ଚନ୍ଦ୍ରାକୁ ଘେନି
ତ୍ୱରଷେ ରତ୍ନମଣି ଅବନ୍ତୀପୁରେ ପରବେଶି । ।୧୩୮।
ଦେଖି ଚନ୍ଦ୍ରାନନ ଅତି ତୋଷମନ ପୂର୍ବ ଘ୍ରାଦଯା ଚନ୍ଦ୍ର ମନ ।
ମୁ ଞ କର୍ମ କଲି ମାଗିଲେ ନ ଦେଲି କାନ୍ତଙ୍କୁ ଆଭରଣ ମାନ ।
ପିତାର । ଘରେ ଏ ଦିନ ମୋର ସରେ । ମୁ ଅତି କ୍ରୋଧିନୀ କାନ୍ତ
କରୋଧିନୀ ମୋତେ ଯେ ଏ ନେତେ ଆଦରେ । ।୧୩୯।
ଏମନ୍ତେ ବସ୍ତ୍ର ବେଢେ ଦିନେ ଭଗିନୀ ପେଷି ଘେନାଇ ଗଲେ
ବାଳୀ । ବଧୂଙ୍କୁ ନୋଷେ ବ୍ରାତ ପୁରେ ପ୍ରବେଶି ଭଗିନୀ ତାର ପୁରେ
ଚଳ । ତା କାନ୍ତ । ଦେଖିକଲା ଅତି ଆଦର । ଏହାର ପୂର୍ବ
ଚରିତ ମାନ ନତି କହେ ନୃପସୁତା ଆଗର । ।୧୪୦ :
ଏମନ୍ତ କଟୁ ବାଣୀ ଶୁଣି ବ୍ରାହ୍ମଣୀ ତେଜିଲା ତାର ନିଜ ପ୍ରାଣ ।
ପତି କରୋଧକୁ ଦେଖ ଏତେ ଦଶା କାନ୍ତ କ୍ରୀଡା ହେଲା ଲକ୍ଷଣ ।
ପତିରେ । ଭଗତି ହୋଇ ସନ୍ଧ୍ୟାବାଳୀ । ଛୁଅଁନ୍ତେ ପୁଣଯେ ହୋଇଲା
ଯୁବତୀ ଶୁଣି ସାନନ୍ଦ ସର୍ବ ଆଳ । ।୧୪୧ :
ଶୁଣି ପ୍ରସଙ୍ଗ ଶ୍ରୀମତୀ ମାନଭଙ୍ଗ କୃଷ୍ଣରେ ବଢେ଼ ଅନୁରାଗ ।
ଏମନ୍ତେ ଜଣି ଛିଯାମ ଅନ୍ତେ କହେ ଭୂଳସା ଭୃଙ୍ଗବଦ୍ୟା ଅଗ ।
ଏତେଷ । ପ୍ରହର ଯେ ଭୁମ୍ଭ ଭ୍ରାଗର । କହ ତୁ କଥା ଶ୍ରୀମତୀ ମନ
ତୋଷ ସ୍ଥିତି ହୁଅନ୍ତୁ ତୋଷଭର । ।୧୪୨।
ଶ୍ରୀମତୀ ଆଦେଶ ଜାଣି ଭୃଙ୍ଗବଦ୍ୟା କହନ୍ତି ତହିଁ ହରଷରେ ।
ପାଶରେ ବସି ଇନ୍ଦୁଲେଖା ଅଛନ୍ତି ଆନନ୍ଦରେ ହୁଁ ହୁଁ କରେ ।
ଶୁଣଗୋ । କାଞ୍ଚି ବୋଲି ଏକ ନଗର । ତହିଁର ନୃପତି ଧର୍ମ
ପରାୟଣ ଧର୍ମକେତନ ନାମ ତାର । ।୧୪୩।

ତାର ଦୁହିତା ନାମ ସତ୍ତ୍ୱ ସାବତ୍ରୀ ସ୍ୱମତି ଗର୍ଭୁ ଉତପତି । ସୁରୂ ସ୍ୱଦରୀ ହେମ ଚମ୍ପକଗୋରୀ ଚତୁରୀ ଅତି ଗୁଣବନ୍ତ । ମାନସ । ବର ନ ପାଇଣ ବଢ଼ଲା ; ଗଳ ଅବଁଳା ସୁକୁମ ଗୋଳ ତିନ ଧାର ବୃନ୍ଦାଇ ନବ ବାଳା । ।୧୪୪।

ଯେ ଅବା କେଉଁ କଳମିଶିବ ତାକୁ କାନ୍ତ କଷ୍ଟେ କରବ ମୂର୍ତ୍ତି । ସତ୍ୟ ତ୍ରିବାର ବୋଲି ଯେ ରାମାବର ତିନଧାର ଅଛୁ ବୃନ୍ଦାଇ । ଦେଖିଣ । ନୃପସ୍ୱତେ ଋଷ୍ଟ କରନ୍ତ । ଏ ଯେ ଗମ୍ଭୀର ଅଟେ ଅତି ବସ୍ତାର କେ କେଉଁ ସିବ ପାଦ ଗତି ! ୧୪୫ ।

ଏମନ୍ତେ ପୁଣି କେତେ ଦିନ ଅନ୍ତରେ ଜ୍ୟେଷ୍ଠ ଗୋଟାଏ ଯାନ୍ତେ ପଥେ ତଟରେ ଥାଇ ସୈରଇ ମନରେ କେଉଁବ ମୁ ଏହା କେମନ୍ତେ । ହୋଇଛୁ । ପୁଣି ଅତିଶସ୍ୱ ଗଭୀର । ଜେନ ପାଦ ନାହିଁ ଆଶୁକ ପାର୍ଶରେ ବୁଡ଼ଣା ହୁଅଇ ମୋହର । ।୧୪୬।

ଏମନ୍ତ ଚନ୍ତ ଅକୁଳ ହୋଇ ମତି ବହିଲାକ ଚକ୍ର ପବନ । ତେଣି କୂଳେ କେଉଁ ପକାଇ ଦିଅନ୍ତେ ଦେଖିଲେ ତହିଁ ସବ ଜନ । ମେଢ଼ରେ । ଥାଇ ସାବତ୍ରୀ ଦେଖୁଥିଲା । ପିତାକୁ କହି ଅଷ୍ଟାଙ୍ଗରୁ ଓହ୍ଲାଇ କଣ୍ଠେ ମାଳା ଦେଇ ବରିଲା । ।୧୪୭।

ଦେଖି ତାତ ମାତ ଅତିହିଁ ଦୁଃଖିତ କର୍ମର ଯୋଗ ବୋଲି କୋଇଲା । ସତ୍ୟ ପାଙ୍ଗ ବସ୍ଥ ହେବାରୁ ଯେ ଦିନୁ ସତ୍ତ୍ୱ ସାବତ୍ରୀ ନାମ ହେଲା । ଅନ୍ତର । ଭକ୍ତ ପୁରେ ଭଲେ ରଚନ । କର୍ମ ଅଦର ପତ୍ନୁକୁ ସେବା କରଇ ନୃପ କୁମାରୀ ବାଞ୍ଛ ଦିନ । ।୧୪୮।

ଏମନ୍ତେ ଏକ ଦିନେ ବେଶ୍ୟା ଅସନ୍ତେ ପତ୍ନୁ ଦେଖିଲା ତାଙ୍କ ମୁଖ । ମଦନ ଅତୁରେ ବଷାଦ ମନରେ ନ ବୁଚେ ତାକୁ ସବ ସୁଖ । ଯେ ପତି- । -ବ୍ରତା ଦେଖିଲା କାନ୍ତ ଚକ୍ତା । କପାଇଁ ଏତେ ଦୁଃଖ ବୋଲି କାନ୍ତକୁ ପୁଚ୍ଛଇ ଏକାନ୍ତେ ବାରତା । ।୧୪୯।

ସେ ପଙ୍କ୍ତୁ କହଇ ଶୁଣ ପ୍ରାଣସଖି ବେଶ୍ୟା ହରିଲା ମୋର ମନ । ଏବେଳ କହି ମରନ ହେଲା ଉହିଁ ଯାଇଣ ମଦନ ବଦନ । ସାବିତ୍ରୀ । ବୋଲେ ମୁ ତୁମ୍ଭ ପ୍ରିୟବନ୍ଧୁ । କହିବ ଯାହା ମୁ କରିବଇ ତାହା ବଚନ ନୃପ ତୁମ୍ଭ ମତି । ।୧୫୦।

ମନେ ଏହା ଧାର ଗାତ୍ର ଆଉଁ ଯାଇ ବେଶ୍ୟାର ଦୁଆର ପର୍ବରେ । ଚନ୍ଦନ ଛଡା ପଢାଇଣ ପଡ଼ିରେ ପୁଣି ଅସଇ ଝାଢ ପୁରେ । ସେ ବେଶ୍ୟା । ଦେଖି ମାନସରେ ବଗ୍ରଇ । ଛାଣିବା ପାଇଁ ଜଗି ଦିନେ ଭୋଇଲା ସଖି ସାବିତ୍ରୀ କର ଯଉ । ।୧୫୧।

ବୋଲେ ଏ ତୁମ୍ଭର ନୃପଇ ବେଷ୍ଟର କ କାର୍ଯ୍ୟ କହ ମୋ ଆଗର । ସାବିତ୍ରୀ ବୋଲେ ତୋତେ ଦେଖି ମୋ ପତି ମାନସ ମଦନେ ଅତୁର । ଏବେନ । ସେବଇ ନିତି ଅସି ତୋତେ । ଧନ ବସନ ଅଣିଛୁ ଯେନ ପତି ଦାନ ତୁ ଦିଅ ଏବେ ମୋତେ । ୧୫୨ ।

ଯେ ବେଶ୍ୟା ଭଣି ହୋଇଛୁ ତୁମ୍ଭ ଲୁଣୀ ସୁହିଡ ଅଙ୍ଗରାତ୍ର ମୂର୍ତ୍ତି । ବେଶ୍ୟାକୁ ମଣାଇଁ ପତିକ ଛଣାଇଁ କର୍ଣରେ କାନେ କେଲା ବର୍ତ୍ତି । ବେଶ୍ୟାର । ପୁରରେ କଲା ପରବେଶ । ମିଳନ କରାଇ ଦ୍ୱାରେ ଛଗି ରହି ପୁଣ ବଗ୍ରଇ ମାନସ । ।୧୫୩।

ଗଣିତେରେ ପ୍ରୀତି ମୋର ନାଥ ପତି ଏକ କର୍ଣରେ କୋହେ ତୋଷ । ସପ୍ତ ରାତ୍ର ଏକ ରାତ୍ର ହେବ ମୁହିଁ ପତିବ୍ରତା ଯେବେ ଅବଶ୍ୟ । ସେ ସତୀ । ସାବିତ୍ରି ବୋଲନ୍ତେ ଏମନ୍ତ । ସପତ ରାତ୍ର ଏକ ରାତ୍ର ହୋଇଲା ପଙ୍କ୍ତୁ ଅତିହିଁ ତୋଷ ଚିତ୍ତ । ।୧୫୪।

ପତିକ ଯେନ ପୁରେ ଗଲା କାମିନୀ ହୋଇ ଅତିହିଁ ମନ ତୋଷ । କାନ୍ତ କାମନା ପୂର୍ଣ୍ଣ କଲା କାନ୍ତାକୁ ହୁଅଇ ସୁକୃତ ବିଶେଷ । ଏକଥା । ପୁରାଣେ ହୋଇଛୁ ପ୍ରକାଶ । ସନ୍ତୋଷେ ଶ୍ରୀମତି ମୁଖ ନ ତୋଳନ୍ତି ଶ୍ରୀକୃଷ୍ଣରେ ଏକା ମାନସ । ।୧୫୫।

ଶ୍ରୀମତୀ କହନ୍ତି ଅପରାଧରୁ ହୋଇଲା ମୋ ନବ ଗଞ୍ଜନ । କାଲି କେମନ୍ତ ବସନ୍ତ ଉତ୍ସବରେ କୃଷ୍ଣ ସଙ୍ଗେ ହେବ ମିଳନ । ସଖୀଏ । ଶ୍ରୀମୁଖ ପ୍ରସନ୍ନରୁ ଜାଣି । ତେଜିଲାକ ରାଗ କୃଷ୍ଣେ ଅନୁରାଗ ବଢ଼ିଲାକ ଏ ରାମାମଣି । ।୧୫୬।

ଏଥନ୍ତେ ରଜନୀ ହୋଇଲା ବିନାଶ ପ୍ରକାଶ ହେଲେ ଦିନମଣି । ମାନସ ପୂରଣା ଶଯ୍ୟା ତେଜି ବେଗେ ବସନ୍ତେ କଲେ ଠାକୁରାଣୀ । ସଭୁରେ । ନୀତ ବସ୍ତ୍ରାଭ ହେଲେ ବେଶ । ଅତି ତୋଷ ଭାବେ ବସନ୍ତ ଉତ୍ସବେ ବୃନ୍ଦାବନେ ହେଲେ ପ୍ରବେଶ । ।୧୫୭।

ଧୀରସମୀରେ ଯମୁନାତଟରେ ସଖୀଗଣ ସଙ୍ଗେ ଯାଇ ମିଳି । ମଦନ ମତ୍ତେ ଉତ୍ସୁକ ଚିତ୍ତେ ଛଳ କହନ୍ତି ପୁଷ୍ପ ମାଳ ତୋଳି । ଏକାନ୍ତେ । ବୃନ୍ଦା କହିଲେ କୃଷ୍ଣ ପାଶେ । ଶୀଘ୍ରେ ଚଳେକର ରାଧା ପ୍ରେମବର କୁଞ୍ଜେ ଅଛନ୍ତି ତୁମ୍ଭ ଅପେ । ।୧୫୮।

ଏ ବାଣୀ ଶୁଣି ରସିକ ଶିରୋମଣି ପ୍ରବେଶି ଶ୍ରୀମତୀ ପାଶରେ । ମାଧବୀ କୁଞ୍ଜେ ସଖୀଙ୍କ ମଧ୍ୟେ ବସି ସଙ୍ଗ୍ରା ତରନ୍ତି କରଙ୍ଗରେ । ଏକାନ୍ତେ । କୃଷ୍ଣଙ୍କୁ ଦେଖି ଲଜ୍ଜାମନ । ଉର ଚମକ ଶ୍ରୀଅଙ୍ଗୁ ସ୍ୱେଦ ଗଳ ଲଜ୍ଜାରେ ନ ଟେକ ବଦନ । ।୧୫୯।

ସଖୀଙ୍କ ସମ୍ମୁଖେ ଶ୍ରୀମତୀ ଅଗ୍ରତେ ଗୃହୁ କହନ୍ତି ବଂଶୀଧର । ମୋ ବଚନ ଘେନ ହୃଅ ସୁପ୍ରସନ୍ନ ମନୁ ଏ ମାନ ପରିହର । ଦିଅ ଶ୍ରୀ- । ମୁଖ କମଳୁ ମଧୁ ପାନ । କହିତ ଋଷି ଦନ୍ତ ଯେଜାଣି ପ୍ରକାଶି କାମାନଳ ହର ଧନ । ।୧୬୦।

ତୋ ଚନ୍ଦ୍ର ବଦନ ଦେଖି ମୋ ନୟନ ଚକୋର ହେଉ ଅତି ତୋଷ । ଭୃଯେ ମାନିନୀ ମୋହର ବାଣୀ ଘେନ ଦିଅ ଭ୍ରୁ ଦଣ୍ଡ ବୁଝି ଦୋଷ । ଅତିକି । ତୀକ୍ଷ୍ଣ ତୋହର ନେତ୍ର ଶର । ଭୁରୁ ଧନୁରେ ସଂଯୋଗ କରି ବେଗ ମୋର ଅଙ୍ଗରେ ପାତ କର । ।୧୬୧।

ବାହୁ ପାଶରେ ବନ୍ଧନ କର ବନ୍ଧୁ ରଦନେ ଫେଡ଼ିଦିଅ ଦୁଃଖ ।
ଅଧିକ ଭୟ କହିବ ପ୍ରାଣବନ୍ଧୁ ଯେଣେ ତୋ ଜାତ ହେବ ସୁଖ ।
ତୁ ମୋର । ଜୀବନ ମୋ ଅଙ୍ଗ ଭୂଷଣ । ସମସ୍ତ ସୁଖଦାୟିନୀ ତୁ
ମୋହର ଏ ଭବ ଜଳଧି ତରଣି । । ୧୬୨ ।

ନୀଳ ଇନ୍ଦୀବର ବେନି ନେତ୍ର ତୋର ଧରନ୍ତୁ କୋକନଦ ଛବି ।
କୁସୁମ ବାଣ ସମାନ ହେଲେ ମୋର ଅନୁରୂପ ହେବ ହାନ୍ଦବୀ ।
ମଣ୍ଡନ । କର ଉରଜେ ମୋତି ହାର । । ଘନ ଜଘନେ ରସନା
ଖଞ୍ଜି ମୁର ଅଦେଶ ଘୋଷଣ ପ୍ରଚୁର । । ୧୬୩ ।

ସ୍ଥଳ କମଳ ଗଞ୍ଜନ ମୋ ହୃଦସ୍ଥ ରଞ୍ଜନ ଚୋପଦ ଯୁଗଳ ।
ସୁରତି ରଙ୍ଗେ ଅନୁରାଗେ ଅଳତା ଦେବ ମୁଁ ତୋ ପଦ କମଳ ।
ମୋହର । ମୁର ଗରଳ ଦୁଃଖ ହର । ମୃଦୁ ପଲ୍ଲବ ମଞ୍ଜୁଳ ପଦ
ଦେଇ ମଣ୍ଡନକର ମୋର ଶିର । । ୧୬୪ ।

ଦାରୁଣ ମଦନ କଦନ ଅନଳ ମୋ ତନୁରେ ହୋଏ ଦଳନ ।
ବହି ମନେ ତୋଷ ଦେଇ ଗତି ରସ ଶୀତଳ କର ପ୍ରାଣଧନ ।
ଚରଣେ । ଶରଣ ହେଲି କର ଛାଡ଼ି । ଏମନ୍ତ ବୋଲି ଶ୍ରୀବନମାଳୀ
ପଦ ପଦ୍ମକୁ ଶୀକର ବଢ଼ାଇ । । ୧୬୫ ।

ପାଦକୁ ଘଞ୍ଚାଇ ବସନେ ଲୁଚାଇ ମନ ମୁର୍ଛି ହାସ ପ୍ରକାଶ ।
କାନ୍ତ ବଦନ କର ଅବଲୋକନ ମଦନେ ଅବେଶ ମାନସ ।
ଶ୍ରୀମତୀ ! ସଖୀଙ୍କି କ୍ୟାଜେ ଏହା କହି । ଚଳମ୍ଭ ନାହର ମନ ମୋ
ଅସ୍ଥିର ସଦନେ ଯିବା ପ୍ରାଣସଖୀ । । ୧୬୬ ।

ଶ୍ରୀମତୀଙ୍କ ମନ ଜାଣି ସଖୀଗଣ କୃଷ୍ଣଙ୍କୁ ଏମନ୍ତ କହନ୍ତି ।
କୁଞ୍ଜ ସଙ୍କେତେ ତୁମ୍ଭେ ଯାଅ ରୂପତେ ସନ୍ଧ୍ୟାରେ ଭେଟିବେ ଶ୍ରୀମତୀ ।
ଜେମାଙ୍କୁ । ଚହିଁ ପ୍ରଜାମୀ ଏହା କହି । କହୁଛୁ ଏଣିକ ଏ ବେନୁ-
ପାଣିଙ୍କି ମାନ ନାହିଁ ପ୍ରାଣସହି । । ୧୬୭ ।

ଏହି ଯୁବା ତନୁ ଶ୍ୟାମଘନ ବନ୍ଧୁ ବିଅର୍ଥେ ନିନ୍ଦଇ ମଦନ ।
ଏ ମୁଖ ମେଘ ଭୂଷଣ ମେଖଳାଦି ହୋଇବଟି ତଷ ସମାନ ।
ବଦନ । ଟେକି କହନ୍ତି ହସି କଥା । ଯେଣେ ସେ ହରି ମନରୁ
ଦୁଃଖ ହର ତୁଠି ଏ ଚରନ୍ତାଳ ବ୍ୟଥା । ।୧୬୮।

ସଖୀଙ୍କ ବଚନେ ନେତ୍ର କୋଣେ ଚାହିଁ ମନ୍ଦହାସ କଲେ ପ୍ରକାଶ ।
କାମାତୁରେ ରାଧା କର ଧରି କୃଷ୍ଣ କଳ୍ପଲତା କୁଞ୍ଜେ ପ୍ରବେଶ ।
ଦେଖିଲେ । କୁସୁମ ଶଯ୍ୟା ଶୋଭୁ ଅଛି । ଚିର ବିରହ ତାପରୁ
ବିନାଶିଲେ ବିରତ ନାନା ବନ୍ଧେ ରତି । ।୧୬୯।

ଲୀଳାଅନ୍ତେ ମନ ଅଚିହ୍ନି ଆନନ୍ଦେ ରାଧାକୃଷ୍ଣ ପୁରେ ପ୍ରବେଶ ।
ଏରସ ଗୀତଗୋବିନ୍ଦରେ ପ୍ରକାଶ ସୁଜନେ ନ ଧରିବ ଦୋଷ ।
ଶ୍ରୀକୃଷ୍ଣ । ପଦ୍ମ ପାଦେ ରଖି ମାନସ । ଜଗନ୍ନାଥ ନାରାୟଣ ଦେବ
କହେ ଅଷ୍ଟମେ ଦ୍ୱିତୀୟ ପ୍ରକାଶ । ।୧୭୦।



## ଏକାଦଶ ପ୍ରକାଶ ।

### ରାଗ କଲ୍ୟାଣ ଅହାର ।

ନାରଦ ଭଲ କୁବେରଙ୍କୁ କହନ୍ତି ଶୁଣ ଶ୍ରୀକୃଷ୍ଣ ଲୀଳା ରସ । ଏଅନ୍ତେ ବସନ୍ତ ଅନ୍ତର ହୋଇଲା ନିଦାଘକାଳ ପରବେଶ । ପ୍ରଚଣ୍ଡ । କରେ ତାପିତ ସର୍ବଜନ । ଜଳ ବର୍ଜନେ ବନ ଜୀବ ମାନଙ୍କ ଆକୁଳ ହୋଇଲା ଜୀବନ । ।୧।

ଏକାଳେ କୃଷ୍ଣ ଗୋପୀଗଣ ସଙ୍ଗତେ ଯେବେ ଯମୁନାରେ ବହାର । ଗ୍ରୀଷ୍ମ ପିଢ଼ ତାଡ଼ ଅତି ମନୋହର ଜଳଯନ୍ତ୍ର ଚନ୍ଦ୍ର ମନ୍ଦିର । ଦିନାନ୍ତ । ହୋଇ ଅତିଶୟ ଆନନ୍ଦ । ସଙ୍ଗୀତ ଆଳାପେ ଶ୍ରୀଅଙ୍ଗରେ ଲେପି କର୍ପୂର ମଳୟଜ ଗନ୍ଧ । ।୨।

ରାଧାଙ୍କୁ ଯେବେ ରାଧାକୁଣ୍ଡରେ ଗ୍ରୀଷ୍ମ ମଣ୍ଡପ ପଲଙ୍କେ ବଜାୟେ । କେତେ ଘଡ଼ି ଅନ୍ତେ ସଖୀଙ୍କ ସଙ୍ଗତେ ବହାର ନଟବର ରାୟେ । ଶ୍ରୀକୃଷ୍ଣ । ମାନସରେ କଲେ ବସ୍ତ୍ରର । ଅଜ ମୁ ବର୍ଷ ଭାମିନୀଙ୍କୁ ଦର୍ଶନ ଦେଇ କରିବଇ ଉଦ୍ଧାର । ।୩।

ବଇଶାଖ ଶୁକ୍ଳ ଦ୍ୱାଦଶୀରେ କରି ଆଉ ଯାଉଲେ ଗୋଦୋହନ । ସଙ୍ଗେ ଗୋରୁ ଗୋପାଳଙ୍କୁ ଯେବେ ବୃନ୍ଦାବନେ ବଢ଼ାୟେ ଶ୍ୟାମଘନ । ଅଦିତ୍ୟ । ତାପ କଳାଗୁ ବୋଲି ଅଙ୍ଗେ । ତର ତର ହୋଇ ପଛରେ ଅତାଇ ପଶିଲେ ଗହନରେ ରଙ୍ଗେ । ।୪।

କାଳନ୍ଦୀ ତୀରେ ଉତ୍ତରଭାଗେ ଘନ ଅଶୋକ ବନିକରେ ଯାଇ । ଜଳ ଶୀତଳ ତୃଣ ଦେଖି ଅତିହିଁ ଆନନ୍ଦରେ ଗୋରୁ ଚରାଇ । ସୁବାସ । ଲୁସୁମ ଗୋପସ୍ୱେ ତୋଳ । ନାନା ପଲ୍ଲବକେ ଅତିହିଁ ଆନନ୍ଦେ ଗୁନ୍ଥିଲେ ଯେସ୍ନାମତେ ମାଳୀ । ।୫।

ଯେବେ ମାନେମାନେ ଅତି ସ୍ନେହରେ ରାମ କୃଷ୍ଣଙ୍କ ଆଗେଦେଇ ।
ଅତି ତୋଷରେ କୁସୁମ ଅଳଙ୍କାରେ ଗୋପ କୁମରେ ବେଶ ହୋଇ ।
ସୁନ୍ଦର । ନଟବର ବେଶ କାଛେଣି । ଗାଇବା ଲଳଚ ଆଳାପ
ନୃତ୍ୟରେ ଏକ ଅରକେ ଯାନ୍ତି ଛିଣି । ।୬।

ତାଳ ମୃଦଙ୍ଗେ ଅମୃତ ବୀଣା ଭଙ୍ଗେ ଏକକୁ ଅରକେ ଅଧିକ ।
ବନ ପୂରିତ ମଧୁର ସ୍ୱନ ଶୁଣି ବନ ଜୀବଗଣ ଉତ୍ସୁକ । ସୁରଭି-
-ଗଣ ବଦନେ ଧର ତୃଣ । କର୍ଣ୍ଣ ଡେରି ଅତି ସ୍ତବଧେ ରହିଲେ
ପୁଷ୍ପିତ ତରୁ ଲତା ଗଣ । ।୭।

ଯମୁନା ନଦୀ ଉଚ୍ଛୁଳ ବହେ ବନେ ରାମକୃଷ୍ଣ ପାଦେ ଲାଗଇ ।
ସବେ ସୁଖେ ଜଳ ପାନ କଲେ ତୃଷା ନାଶି ଆନନ୍ଦମନ ହୋଇ ।
ଏମନ୍ତେ । ମଧ୍ୟାହ୍ନ ହୋଇଲେ ଦିନେଶ । ହେଳକୁ ହେଳ ପ୍ରଚଣ୍ଡ
ଚଣ୍ଡକର ଘୋଟି ଭୂମି ଦିଶ ଆକାଶ । ।୮।

କ୍ଷୁଧାରେ ଆକୁଳ ହୋଇ ଗୋପସୁତେ ରାମକୃଷ୍ଣ ଆଗେ ଜଣାଇ ।
ଆଜ ଭଜନୀ ଥାଉ ସବେ ଆସିଲୁ ଅନ୍ନ ଆଣିଲୁ ନାହିଁ କେହି ।
ଅତିହିଁ । କ୍ଷୁଧାରେ ନ ଚଳଇ ପାଦ । ଏବେ ଜବୁଦ୍ଧି କରବୁ କହ
ଅନ୍ନ ଦିଅଇ ଆମ୍ଭ ଜୀବ ବୋଧ । ।୯।

ପୁର ନିକଟ ନୁହଇ ଯିବୁ କ୍ଷୁଧା ସହିଣ ରହିବୁ କେମନ୍ତ । ଆଜ
ଆଣିଲ ଅଶୋକ ବନେ ଶୋକ ଜାତ ହେଉଛୁ ଆମ୍ଭ ଚିନ୍ତ ।
ବହାର । କରଯା କଲ୍ପତରୁ ମୂଳେ । ଗୋପ କୁମାରଙ୍କ ସନ୍ତାପ
ଜାଣି ଆନନ୍ଦ କରହେ ବୋଇଲେ । ।୧୦।

ଶୁଣି ରାମକୃଷ୍ଣ ମନେ ହୋଇ ତୁଷ୍ଟ ଦମ୍ଭାଧରେ ହାସ ପ୍ରକାଶ ।
ରାମ ବୋଲନ୍ତି ଅସ୍ଥିର ନୁହ ମତି କ୍ଷଣେ ସ୍ଥିରକର ମାନସ । ସୁରଭି ।
ରଖିବାରେ ହେଲେ ବାହାର । ଲୋଡ଼ି ଯେ ଯାହା ଅନୁରୂପେ ତା-
ନନେ ଫଳ ମୂଳ କର ଅହାର । ।୧୧।

ଯୋଏ ବୋଲନ୍ତି କୋହେ ଚାଲ କପିଥ ବନ ଫଳ ମୂଳ ମିଳିବ ।
ପୁଷ୍ଟେ ମନୋହର ପଲ୍ଲବେ ମଞ୍ଜୁଳ ସ୍ୱାଦୁ ଫଳ ଏଥି କେ ଦେବ ।
କେବଳ । ଶୁଣି ତୁମ୍ଭ ଗୀତ ଗାୟନ । ନଦୀ ଉଜାଣି ବହନ୍ତେ
ଗୋପ ସ୍ୱନେ ପିଇ ସନ୍ତୋଷ ହେଲା ମନ । ।୧୨।

ଏତେ ଅଚମ୍ଭିତ କଥା କଲା ଯେଉଁ ତାହା ଅଙ୍ଗେରେ ଅନ୍ନ
ଅସ୍ଥ । ଜଳ ପିଅଇ ଆନନ୍ଦ କରାଇଲା ଅନ୍ନ ଭୁଞ୍ଜାଇ ମନ ତୋଷୁ ।
କେ ବୋଲେ । ଖାଇବ ମୁଁ ଅନ୍ନ ବ୍ୟଞ୍ଜନ । କେ ବୋଲଇ ଘୃତ
କେ ବୋଲେ ମୁଁ ପୂତ ପାୟସ ଦିବ୍ୟଶାଳୀଅନ୍ନ । ।୧୩।

କେ ବୋଲେ ମୋତେ ସନ୍ତରପ ଦିଅଅ ଶୁଣି ହରଷ କୃପାସିନ୍ଧୁ ।
ମନ୍ଦ ମନ୍ଦ ହାସ ଅଧିକେ ପ୍ରକାଶ କଲେ ଶ୍ରୀମୁଖ ପୂର୍ଣ୍ଣଚନ୍ଦ୍ର । ଉଜଇ ।
ଭୃତ୍ୟ ବତ୍ସଳ ଯାର ବାନା । ଗୋପ କୁମରଙ୍କ ଆକୁଳକୁ ଶୁଦ୍ଧି
ସମ୍ପୂର୍ଣ୍ଣ କରନ୍ତେ କାମନା । ।୧୪।

ପୁଣି ଶ୍ରୀକୃଷ୍ଣ କୁମରଙ୍କୁ ବୋଲନ୍ତି ତୁମ୍ଭେ ସମସ୍ତେ ଯାଅ ବେଗ ।
ଏ ବନ ଉତ୍ତର ଭାଗେ ବିପ୍ରଗଣ କରୁଅଛନ୍ତି ମହା ଯାଗ । ସମ୍ପୂର୍ଣ୍ଣ ।
ଆହୁତି ହୋଏ ଆଜ ଦିନ । ଅତି ଉଚ୍ଚରେ ଉଚ୍ଚାରନ୍ତି ଶୁଭନ୍ତି ଅଛଇ
ବେଦ ଅଧ୍ୟୟନ । ।୧୫।

ତୁମ୍ଭେ ଯେଠାକୁ ତୁରିତେ ଯାଇ ମୋର ମାଗିଲା ବୋଲି ଅନ୍ନ
ଆଣ । ଯାଗ କର୍ମ ମତି ନ ଦେଲେ ଅତିଥି ଧର୍ମ ନାଶନ ହୋଏ
ପୁଣ । କୁମରେ । ଶୁଣି ଶ୍ରୀକୃଷ୍ଣଙ୍କ ବଚନ । ଗୋପ କୁମରେ ତହୁଁ
ଚଳ ସତ୍ୱର ମିଳିଲେ ଯହିଁ ଯାଗସ୍ଥାନ ।୧୬।

ଉତ୍ତମ ଯଜ୍ଞସ୍ଥଳ ତହିଁ ବ୍ରାହ୍ମଣେ ହୋଇ ଅଧିକେ ଶୁଚିବନ୍ତ ।
ବେଦ ଉଚ୍ଚାର ଆହୁତିକ ଡାଲନ୍ତି ଅଗ୍ନି ମୁଖରେ ତୋଷଚିତ୍ତ ।
ଏମନ୍ତ । ଉତ୍ସବ ଗୋପସ୍ୱନେ ଶୁଦ୍ଧି । ସମସ୍ତ ପରିପୂର୍ଣ୍ଣ ଏକା
ଶ୍ରୀକୃଷ୍ଣ ନାମ ତହିଁରେ ଶୁଭୁନାହିଁ । ।୧୭।

ହସ୍ତ କୋଦଣ୍ଡ ମଣ୍ଡି ଉଚ୍ଚରେ କହନ୍ତି ବିପ୍ରଙ୍କୁ ଗୋପବୃନ୍ଦ ମାନେ । ରାମକୃଷ୍ଣ ଅଜ୍ଞାପରମାଣେ ଆମ୍ଭେ ଏଥକୁ ଅଇଲୁ ବହନେ । ରଜନୀ । ଥାଉ ଅଇଲୁ ଆମ୍ଭେ ବନ । ସଙ୍ଗତେ ଅନ୍ନଅଣିନାହୁଁ ଯିବାକୁ ଅଛି ଦୂର ଗୋପ ଭୁବନ । ।୧୮।

ବିପ୍ରଙ୍କ କଥାଶୁଣି ସେ ବ୍ରାହ୍ମଣେ ଦେବା ନ ଦେବା ନ ବୋଇଲେ । ନିରାଶ ପାଇ ବିପ୍ରରେ ଚଳିଁ ଯାଇ ଶ୍ରୀକୃଷ୍ଣ ପାଶେ ଜଣାଇଲେ । ଯେ ଯଜ୍ଞ- । -ଶାଳେ ପ୍ରବେଶ ହେଲୁ ଯାଇ । ଅନ୍ନ ମାଗିଲୁ ବିପ୍ରଙ୍କୁ ତୁମ୍ଭ ଦୁଇ ଭାଇଙ୍କ ନାମ ଅମ୍ଭେ କହି । ।୧୯।

ଦେବା ନଦେବା ଜଣେହେଁ ନ ବୋଇଲେ ଯାଗ ଆରମ୍ଭ ହୋଇ ଥିଲ । ଗୋପାଳଙ୍କ ମୁଖୁ ଏବଚନ ଶୁଣି ବଳରାମ କ୍ରୋଧ ପ୍ରବଳ । ଶ୍ରୀକୃଷ୍ଣ । ମନ୍ଦହାସ କରି ପ୍ରକାଶ । ବୋଲନ୍ତି ସର୍ବେ ଯାଅ ତୁମ୍ଭେ ଏଥର ସେ ଯଜ୍ଞ ପତ୍ନୀଙ୍କର ପାଶ । ।୨୦।

ଯେବେ ଜାଣନ୍ତି ଆମ୍ଭଙ୍କୁ ତୁମ୍ଭେ ଯାଇ ଅନ୍ନ ମାଗିଅଣ ସତ୍ୱରେ । ବିପ୍ରେ ଛନ୍ତି ଯାଗ କର୍ମାରମ୍ଭେ ଜ୍ଞାନ ହତ ସ୍ୱର୍ଗସୁଖ ଭ୍ରମରେ । କର୍ଣ୍ଣରେ । ଶୁଣନ୍ତେ ସେ ବ୍ରାହ୍ମଣୀ ଗଣେ । ଅନ୍ନ ଘେନି ତୁମ୍ଭପାଙ୍ଗରେ ଆସିବେ ବିଳମ୍ବ ନ କରିବେ କ୍ଷଣେ । ।୨୧।

ଅଗେ ଉଦ୍ୟାନସ୍ଥ ଶଙ୍ଖଚଳ ଉଜେ ଯାଅ ଏ ଶୁଭ ଅନୁକୂଳ । କୃଷ୍ଣ ବଚନେ ବିପ୍ରରେ ଗଲେ ଅତି ଆନନ୍ଦେ ହୋଇ ଏକମେଳ । ପ୍ରବେଶ । ହୋଇଲେ ବିପ୍ର ଶାସନରେ । ଉଗ୍ରସେନ ରାଜନର ଦାନ ଗ୍ରାମ ଦେଖନ୍ତି ଆନନ୍ଦ ମନରେ । ।୨୨।

ଅତି ରୁଚିର ସଦନ ମାନ ସମ ସୁପଥ ହୋଇ ଏକ ପନ୍ତି । ଚିତ୍ର ଲେଖନ ବାଡମାନ ଅଛିଟି ଶୋଭନ ପ୍ରାଙ୍ଗଣ ଜଗତୀ । ଉଚ୍ଚ । ନାନା ଚିତ୍ର ବାସ କେତନ । ହାଣ୍ଡି ଧୂମରୁ ଅତି ପରିମଳ ପଡ଼ିଅଛି ଛଡା ଚନ୍ଦନ । ।୨୩।

ପୂର୍ଣ୍ଣିକୁମ୍ଭେ ଚୂତ ପତ୍ର ଦେଇ ରମ୍ଭା ସ୍ଥାପି ବାନ୍ଧିଣ ତୋରଣମାନେ । ଚିତ୍ର ରମଣୀଏ ଶୁଚିବସ୍ତ୍ର ହୋଇ କ୍ଷୌମପଟେ ବେଷ୍ଟ ମଣ୍ଡପେ । ସମସ୍ତେ । ଅର୍ଘ୍ୟସ୍ଥାଳୀକ କରେ ଘେନ । ପୂର୍ଣ୍ଣ ଅଛନ୍ତି ଉତ୍ସବ ଯଜ୍ଞସ୍ଥାନେ ଯିବାକୁ ସକଳ କାମିନୀ । ।୧୪।

ବାହାରିଅଛନ୍ତି ସମସ୍ତେ ଶ୍ରୀକୃଷ୍ଣ ଚରିତ ଗାନ କରି ମୁଖେ । ଏକାଳେ ଗୋପ ସୁତଙ୍କୁ ଦେଖି ନାରୀଗଣ ମାନସେ ଅତି ସୁଖେ । ପୁଛନ୍ତି । କାହୁଁ ଆଇଲ ତୁମ୍ଭେ କହ । ଅତି ଆନନ୍ଦେ ଗୋପସୁତେ କହନ୍ତି ଦେଖି ବ୍ରାହ୍ମଣୀଙ୍କର ସ୍ନେହ । ।୧୫।

ନନ୍ଦରାଜାଙ୍କ ନନ୍ଦନ ରାମକୃଷ୍ଣ ସଙ୍ଗେ ବନସ୍ତେ ରଖୁ ଧେନୁ । ଆମ୍ଭଙ୍କୁ ପେଶିଅଛନ୍ତି କ୍ଷୁଧାବଶରେ ଅତି ଅସ୍ଥିର ହୋଇ ତନୁ । ବାଳକ । ସମସ୍ତେ ଅଟୁ ଗୋପସୁତେ । ପାକାନ୍ତିକୁ ଆଜ ଆସିଲୁ କହି ଯେ ଅଣି ନାହୁଁ ଅନ୍ନ ସଙ୍ଗତେ । ।୧୬।

ଶ୍ୟାମସୁନ୍ଦର ଲାବଣ୍ୟ କଳେବର ଅନ୍ନ ତୁମ୍ଭଙ୍କୁ ମାଗିଛନ୍ତି । ସେ ଲବଣୀ ନ ରୁଚଇ ଯାହାକୁ ବସି ଭୁଞ୍ଜାଉ ଯଶୋବସ୍ଥ । ମାଗିଲୁ ଯଜ୍ଞଶାଳରେ ଅନ୍ନ ଯାଇ । ନଦେଲେ ବ୍ରାହ୍ମଣେ ଲେଉଟି ସମ୍ମୁଖେ ଆମ୍ଭେ କହିଲୁ କୃଷ୍ଣ ତହିଁ । ।୧୭।

ମୋତେ ଜାଣନ୍ତି ବୋଲି ଏବେ ତୁମ୍ଭର ପାଶକୁ ପେଶି ଯେ ଅଛନ୍ତି । ଅତି ସୁକୁମାର ଯଶୋଦା କୁମର କ୍ଷୁଧାରେ ଆକୁଳିତମତି । ସତ୍ୱରେ । ଅନ୍ନ ପ୍ରଭାଏ ଦିଅ ମାତ । ବସନ୍ତରେ ରାମକୃଷ୍ଣ ଭୁଞ୍ଜିବେ ଯେ ହୋଇଣ ଅତି ତୋଷ ଚିତ୍ତ । ।୧୮।

ଗୋପ ସୁତଙ୍କ ବଚନ ଶୁଣି ଅତି ହରଷରେ ସର୍ବ ବ୍ରାହ୍ମଣୀ । ବହନ୍ତି ନେତ୍ର ପୁରାଇ ଦେଖିବା ଶୁଣିବା କର୍ଣ୍ଣେ କୃଷ୍ଣ ବାଣୀ । ଗୋପାଳଙ୍କ ପୁଅଙ୍କୁ କୋମଳରେ କହି । ଅନ୍ନ ବ୍ୟଞ୍ଜନ ଯୋଗାଇ ଆଣୁ ବାବୁ କ୍ଷଣେ ମାତ୍ରକ ଥାଅ ରହି । ।୧୯।

ଏମନ୍ତ କହି ପୁରେ ଯାଇ ସମସ୍ତେ ସଯୋଗିଲେ ଅନ୍ନ ବ୍ୟଞ୍ଜନ ।
ଖିର ଖିରସା ସର ପୋଡ଼ କାକରା ବଡ଼ା କାନ୍ତି ଲଡ଼ୁ ଯତନ ।
ପଖାଳ । ଠଲ୍ଲ ଅଦା ଦଧି ମିଶ୍ରିତ । ଲକ୍ଷ୍ମୀବିଳାସ ଚଣ୍ଡୁଳେ ସଜ୍ଜ ଅନ୍ନ
ଘୃତ ଲବଣେ ସମକୃତ । ।୩୦।

କେ ଦଧି ଦୁଗ୍ଧ ସଯୋଗ କରି କେହୁଛିଲ୍ଲି ଯତ୍ନେ ପାରିଜାତକ ।
କେ ଷପାମାଳୁ କୋରାଖଣ୍ଡ ମିଶ୍ରିତ ଶିଖରିଣୀ ସର ଅନେକ ।
କେ ଛେନା । ଗାଗଡ଼ା କ୍ଷୀରୀ ସଯତନ । ଘୃତ ନବୀନ ଯେଣେ
ତୋଷ ହୋଇବ ରାମକୃଷ୍ଣ ଦୁହିଁଙ୍କ ମନ ।୩୧।

ଦ୍ରବ୍ୟ ମାନଙ୍କୁ ସଯୋଗି ବାହାରିଲେ ଦେଇଅନନ୍ଦେ ହୁଳହୁଳି ।
ଭସ୍ନୁକତେ ସର୍ବେ ଏକରଙ୍ଗେ ଗୃଲି କରରେ ଘେନି ଅର୍ଘ୍ୟସ୍ଥାଳୀ ।
ସେଗୋପ- । -ସ୍ତ୍ରୀ ଚଳାନ୍ତି ପଥ ଅଗେ । ଗାଅନ୍ତି ପଥେ ରାମକୃଷ୍ଣ
ଚରିତ ମାନଙ୍କୁ ଅତି ଉଚ୍ଚରାଗେ । ।୩୨।

ଯାଗଶାଳେ ଥିଲା ବ୍ରାହ୍ମଣେ ସବୁରେ ଅସି ଅଗରେ ଓଗାଳିଲେ ।
କର କପାଳେ ମାର ଥିକାର କରେ । ଏମନ୍ତ କରୁଛ ବୋଇଲେ ।
ତୁମ୍ଭଙ୍କୁ । କେବଳ ଉଚ୍ଛାଠ ଏମନ୍ତ । ନୀଚନାରୀପ୍ରାୟେ ଅନ୍ନବଢ଼ିନିଅ
କୋକେନଦାନ୍ତେ ବନ୍ଧୁତ । ।୩୩।

କହନ୍ତି ତରୁଣୀ ରାମକୃଷ୍ଣ ବେନି ବନେ ଧେନୁଗଣ ଚରାନ୍ତି ।
ଅତି କ୍ଷୁଧାତୁରେ ବସି ରହୁଛନ୍ତି ଅନ୍ନ କମନ୍ତେ ପେଶିଛନ୍ତି ।
ମାଗନ୍ତେ । ନଦେଲ ଯଜ୍ଞଶାଳେ ଅନ୍ନ । ଘେନିଗଲେ ତୁମ୍ଭ ପୁର୍ବେ ଅନ୍ନ
ଦେଇ ଅଣିବୁ ସେ ଧର୍ମ ବହନ । ।୩୪।

କହେ କୋଲନ୍ତି ନଜାଣ ତୁମ୍ଭେ ଅନ୍ନ ନଦେଲୁ ଏହା ମନେ ଚିନ୍ତ ।
ଗୋରୁ ପାଳକ ଅହିର ପୁଣି ମାରଛନ୍ତି କଂସର ସେନାମାନ । ବଳରେ
ହରନ୍ତି ପୁଣି ପରନାରୀ । ସେହି ରାଜଦ୍ରୋହୀ ତାପାଷ ନଯାଇଲେଉଠ
ଅମ୍ଭ ବୋଲକର । ।୩୫।

ତପଙ୍କ ଅବାଠ ଜମାନ ବ୍ରାହ୍ମଣୀଗଣ ଶତମୂଖେ ଚଳିଲେ ।
ଏକବ୍ରାହ୍ମଣୀ ଦୁର୍ବଳ ହେଇଁ ତାର କାନ୍ତ ରଖିଲାଯର ତଳେ ।
ବ୍ରାହ୍ମଣେ ! ମିଳିଲେ ଯଜ୍ଞଶାଳେ ଯାଇ । ପୁରେ ବ୍ରାହ୍ମଣୀ ବସିନେ
ମୁଣ୍ଡ ହେଜି ବସିଲେ ରୋଦନ କରି । ।୩୬।

ମନ ପେଶିଲା ଶ୍ରୀକୃଷ୍ଣ ପାଶେ ଅନ୍ନବ୍ୟଞ୍ଜନ କରେ ଘେଚ ତୋଷେ ।
ମାନସିକେ କୃଷ୍ଣ ପାଦପଦ୍ମ ଧୋଇ ପୋଛି ଯତନେ ଦିବ୍ୟ ବାସେ ।
ବଚକ୍ର । ଆସନେ କରାଇଣ ତଳେ । ବସ୍ତ୍ର ଅଳଙ୍କାର ସୁବାସ
ଚନ୍ଦନ କୁଙ୍କୁମ ଅତି ଯତ୍ନେ ପୂଜେ । ।୩୭।

ଷଡରସରେ ଅନ୍ନ ବ୍ୟଞ୍ଜନ ମାନସିକେ ପରସେ ତୋଷରର ।
ଅତିଦ୍ୱରଷେ ଘଜଗ ହ୍ମୀ ମଶୋଦ୍ଧି ଅନ୍ତରେ ଅଚମନପାର ! ତାମ୍ବୂଳ ।
ଭୂଞ୍ଜି ପଲଙ୍କେ ବସେଛକର । ବ୍ୟଜନ ଧରି ପାଶରେ ବସ୍ୱାସରେ
ମାନସେ ସେବେ ବପ୍ରନାରୀ । ।୩୮।

ବଳିନେ ଥାଇ ସ୍ୱଷର ଉଚ୍ଛ କୃଷ୍ଣ ପଦ୍ମପାଦେ ମନ ନବେଶି ।
ଯେମାନେ ( ଯାଉଁ ଅନେଗ ଯାଇ କୃଷ୍ଣ ମନ ପୂଜା ଫଳେ ସନ୍ତୋଷି ।
ଏମନ୍ତେ । ବ୍ରାହ୍ମଣୀ ଗଣ ପ୍ରବେଶିଲେ । ମନ୍ଦାର ମୂଳେ ସଙ୍ଗେ
ଗୋପ୍ତ ଗୋପାଳେ ରାମକୃଷ୍ଣଙ୍କୁ ନିରେଖିଲେ । ।୩୯।

କାମ ଅଭିରାମ ନବଘନଶ୍ୟାମ ଅଙ୍ଗ ତ୍ରିଭଙ୍ଗି ଛନ୍ଦେ ଉଭା ।
ସବ୍ୟ ଲାବଣ୍ୟ ଅଶ୍ରିତ ସ୍କନ୍ଧ ତଳୁ ଅବଲମ୍ବନେ ଅତି ଶୋଭା ।
ଗୋପାଳ । ଗୋଧନ ଗଣ ବେଢ଼ିଛନ୍ତି । ଖଗ ମୃଗ ଆଦି ବନ
ଜୀବେ ଗ୍ରହିଁ ଅତିଶୟେ ଆନନ୍ଦମତି । ।୪୦।

ଅନେକ ଚକ୍ଷୁ ଚକୋର ଆନନ୍ଦିତ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ନିରେଖି ।
ବପ୍ର କାମିନୀଏ କୃଷ୍ଣପାଶେ ମିଳ କରରୁ ଅନ୍ନଥାଳ ରଖି । ଶ୍ରୀକୃଷ୍ଣ ।
ଜନ୍ମାଦ୍ୟ ଲୀଳା କଥା ଶୁଣି । ତୋଷ ହେଉଥାନ୍ତି ତାହାଙ୍କୁ ସାକ୍ଷାତ
ଦର୍ଶନ କଲେ ଏବେ ପୁଣି । ।୪୧।

ସ୍ତମ୍ଭୀଭୂତେ ରହି କୃଷ୍ଣ ଶୋଭା ଗୃହିଁ ନେତ୍ର ପଲକ ନ ପଡ଼ଇ ।
ନେତ୍ର ଅଳ ପଦ୍ମମୁଖେ ପଡ଼ି ଲୋଭେ ବାନ୍ଧୁଛି ଆସି ନ ପାରଇ ।
ଯାହାଙ୍କୁ । ଇଚ୍ଛା କରୁଥାନ୍ତି କଣ୍ଠେରେ । କେମନ୍ତେ ଉଦ୍ଧାର ହେବୁ
ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ଅମ୍ଭେ ବାରେ । ।୪୨।

ଭାବଗ୍ରାହୀ ପୁଣି ତାଙ୍କ ମନ ଜାଣି ଅନ୍ନ ମାଗିଦେଲେ ଦର୍ଶନ ।
ଏମନ୍ତେ ବିପ୍ର ନାରୀଙ୍କି ଦେଖି ମନ୍ଦେହାସି କହନ୍ତି ଶ୍ୟାମଘନ ।
ମାଏଗୋ । ଅଇଲ ମୋର ଦୁଃଖ ଶୁଣି । ପର ଅରଥ ନପାଇ
ତୁମ୍ଭେ ସହି ବନେ ଅଇଲ ଅନ୍ନ ଘେନି । ।୪୩।

ପରେ ଉପକାର କରେ ଯେଉଁ ନର ସମସ୍ତ ଲୋକେ ସେ
ପ୍ରଧାନ । କ୍ଷୁଧା ସମୟେ ଅନ୍ନ ଯେନ୍ହୁଦିଅଇ କହ କହିବା ତାର ପୁଣ୍ୟ ।
ପ୍ରକାଶ । ଏ ମହା ବଇଶାଖ ମାସ । କ୍ଷୁଧାର ଆକୁଳେ ବନେ ଏ
ଗୋପାଳେ ଅନ୍ନ ଦେଇ କଲ ସନ୍ତୋଷ । ।୪୪।

ତୁମଗଙ୍କୁ ଯାହା ତୋଷିଲ କେ କହି ପାରବ ତୁମ୍ଭ ପୁଣ୍ୟ ପୁଣି ।
ତୁମ୍ଭେ ଜଗତ ଜନନୀ ତୁମ୍ଭ ଧର୍ମ ସକାଶୁଁ ଅଛୁ ଏ ଧରଣୀ ।
ତୁମ୍ଭେତ । ସତ୍ତ୍ୱ ଗଣଙ୍କ ମଧେ ସାର । ପ୍ରତି ଉପକାରକୁ କ ସର
ହେବ ଋଣୀ ହୋଇଲି ମୁଁ ତୁମ୍ଭର । ।୪୫।

ଏମନ୍ତ ସତ୍ୟ କଳ୍ପଦ୍ରୁମ ଯେବେ ସବେ ଧର୍ମ ପରାପତି ହୋଇବ ।
ବଡ଼େ କଷ୍ଟେ ଧନ ଅର୍ଜିବେ ତୁମ୍ଭେ ଯେ ବସି ସୁଖେ ଭୋଗ କରିବ ।
ମୋତେତ । ଅନ୍ନ ଦେଇ କଲ ସନ୍ତୋଷ । ନିଜ ମନ୍ଦିରେ ପ୍ରବେଶ
ହୋଇ କାନ୍ତ ମାନସ କରାଅ ଉଲ୍ଲାସ । ।୪୬।

କୃଷ୍ଣ ମଧୁର ବଚନ ଶୁଣି ସ୍ନେହେ ଆକୁଳ ସମସ୍ତ ବ୍ରାହ୍ମଣୀ । ପଦ
ଅଙ୍ଗୁଳ ଅବନୀରେ ଘଷିଣ ଶୋକେ କହନ୍ତି ଏମନ୍ତ ବାଣୀ । ପୁରକୁ ।
ଯିବାରେ କ କାର୍ଯ୍ୟ ଅମ୍ଭର । ବନେ ଅଇଲୁ ତୁମ୍ଭଙ୍କୁ ଭଜି ଭେଟି
ପତି ସୁତ କୁଳ ବେଭାର । ।୪୭।

କୃଷ୍ଣ ବୋଲନ୍ତି ଗୋ ନୃପଇ ଏ ମତି ଲୋକେ କହିବେ ଅପ
ବାଦ । ମୋର ବୋଲ ଘେନ ଯାଅଗୋ ଜନନୀ ତେଜ ମାଳପରୁ
ବିଷାଦ । ମନରେ । ଥିଲେ ଅଛୁ ମୁଁ ତୁମ୍ଭ ପାଶ । ସ୍ୱାମି ସେବାକର
ସୁଖେ ଦିନ ହର ଦେଖି ସେ ନ କରିବେ ରୋଷ । । ୪୮ ।

ଭୃତ୍ୟବତ୍ସଳ ମଧୁର ବାଣୀ ଶୁଣି ପୁରେ ଚଳିଲେ ନାରୀଗଣେ ।
ହୁଳହୁଳି ଦେଇ କୃଷ୍ଣ ଗୁଣ ଗାଇ ଯାନ୍ତେ ଦେଖିଲେ ସେ ବ୍ରାହ୍ମଣେ ।
ବିସ୍ମୟ । କରନ୍ତି ସମସ୍ତେ ମନର । ପୁରାଣରେ ଶୁଣା ଅଛୁ ଗୋପେ
ଜନ୍ମେ ହୋଇବେ କୃଷ୍ଣ ଅବତାର । । ୪୯ ।

କୃଷ୍ଣ ହଳଧାରୀ ଚଳିତ ନପାରି ଯଜ୍ଞ କର୍ମରେ ହୋଇ ଭୋଳ ।
କନ୍ୟାଙ୍କ ସମାନ ନୋହିଲାର ଅମ୍ଭେ ବୋଲିଣ ଉତ୍ସାହୀ ସକଳ ।
ଏବେତ । ନନ୍ଦରାଜାର ଧନ ବଳେ । ଯାଗକରୁଛୁଇ ତାହାଙ୍କ
ପୁତ୍ରଙ୍କୁ ନଚିହ୍ନିଲାଉ ଅମ୍ଭେ ହେଲେ । । ୫୦ ।

ଦେଖିବା ଗୁଲ ଏବେ ଅମ୍ଭେ ବହନ ବୋଲିଣ ହୁଅନ୍ତି ବାହାର ।
ବୃଦ୍ଧ ବୃଦ୍ଧ ଏକ କହେ କଂସ ଡରେ ଲୁଚି ସେ ଅଛନ୍ତି ଗୋପର ।
ଅଟନ୍ତି । ଯିବାର ନୁହଇ ଉଚିତ । ଶୁଣି ବ୍ରାହ୍ମଣେ ବାହୁଡି
କନ୍ୟାଗଣେ ଗଉରବ କଲେ ବହୁତ । । ୫୧ ।

ଏଅନ୍ତେ ଗୋପାଳଙ୍କୁ ଗୃହିଂ ଗୋବନ୍ଦ କହନ୍ତି ଅତି ତୋଷଭର ।
ଠୁଳ ହୋଇଛୁ ବ୍ୟଞ୍ଜନ ଅନ୍ନ ସର୍ବେ ଭୁଞ୍ଜି ପୂର୍ଣ୍ଣକର ଉଦର ।
ଗୋପାଳେ । ଶୁଣି ହରଷେ କୃଷ୍ଣ ବାଣୀ । ଯେଯାହା ମତେ ଅଚିହ୍ନିଂ
ଉଦ୍ୟାନରେ ଯାଇ ପଳାଶ ତୋଳି ଅଣି । । ୫୨ ।

ରାମକୃଷ୍ଣଙ୍କୁ ସର୍ବେ ବେଢ଼ି ବସିଲେ କୃଷ୍ଣ ପରସନ୍ତି ହରଷେ
ବିପ୍ର ନାରୀଗଣ ଦେବାରୁ ମଧୁର ଶତେ ଗୁଣ ହେଲା କରୋଷେ
କୁମରେ । ବୋଲନ୍ତି ଅହେ ପଦ୍ମମୁଖ । ତୁମ୍ଭ ସଙ୍ଗେ ବାଉ ଏଥର
ସମସ୍ତେ ଭୁଞ୍ଜିବା ଅଛି ମନ ସୁଖ । । ୫୩ ।

କୃଷ୍ଣ ନନ୍ଦ ପତ୍ରେବାଜି ଭୁଞ୍ଜି ବସି ସମସ୍ତ ମାନସ ଆନନ୍ଦ ।
ଜାହ୍ନଁ ଧାନ୍ନ ବନ କୁଳାଗ୍ରେର ଧର୍ମ ସ୍ୱର୍ଗେ ଦେଖନ୍ତି ଦେବ ବୃନ୍ଦ ।
ଭୁଞ୍ଜିଣ । ସକଳେ ହୋଇଲେ ସନ୍ତୋଷ । ଅଚମନ ନଦୀଜଳେ
କଲେ ବନ ଛୀବେ ଭୁଞ୍ଜିଲେ ଅବଶେଷ । ।୫୪।

ତରୁ ଛାୟା ତଳେ ମାନସ ନଷ୍ଟଲେ ଘଡ଼ିଏ କରଣ ବିଶ୍ରାମ ।
ଗୋପାଳେ ବୋଲନ୍ତି ଅମୃତ ଭୋଜନ ଦେଲହେ ରାମ ଘନଶ୍ୟାମ ।
ଏମନ୍ତେ । ଅସ୍ତ ହୋଇଲେ ଦିନ ଈଶ । ଗୋରୁ ଗୋପାଳସଙ୍ଗତେ
ଘେନ ରାମକୃଷ୍ଣ ପୁରେ ହେଲେ ପ୍ରବେଶ । ।୫୫।

ସ୍ନାନ ଭୋଜନ ସାରଲେ ଅତି ସୁଖେ ସମସ୍ତେ ରାତ୍ରେ ସମ୍ଭ ବସି ।
ଅନ୍ନ ମାଗି ଭୁଞ୍ଜିବାର ତଉତକୁ କହନ୍ତେ ହେଲେ ସନ୍ତୋଷେ ।
ନିଦ୍ରାରେ । ଆଳସ୍ୟ ରାମ କୃଷ୍ଣ ଚନ୍ଦ୍ରେ । ସର ନବନୀତ ଭୁଞ୍ଜାଇ
ଯଶୋଦା ନେଇଣ ପଲଙ୍କେ ଶୁଆଇ । ।୫୬।

ଶ୍ରୀ ରାଧାକୃଷ୍ଣ ପଦ୍ମପାଦ ବନ୍ଦନୋଅନେ ନ ରସେ ମୋ ମାନସ ।
ଯେହି ମହିମାରୁ ବୃନ୍ଦାବନଚନ୍ଦ୍ରବିହାର କଲି ମୁ ପ୍ରକାଶ । ସୁଜନେ ।
ଶୁଣ ସୁସ୍ଥିର କର ମନ । ଏକାଦଶ ପ୍ରକାଶ ଭଣେ ଜଗନ୍ନାଥ
ନାରାୟଣ ଦେବ ରାଣ । ।୫୭।



## ଦ୍ୱାଦଶ ପ୍ରକାଶ ।

---

### ରାଗ କୌଶିକ ।

ଜୟ ବୃନ୍ଦାବନ ଜୟ ଗୋବର୍ଦ୍ଧନ ଶ୍ରୀକୃଷ୍ଣ ଲୀଳା ସବର୍ଦ୍ଧନ । ସମସ୍ତ ଗିରି ମାନଙ୍କରେ ପ୍ରଶସ୍ତ କୃଷ୍ଣ କଲେ ଯେଣୁ ପୂଜନ । ଚଉ ପାଶରେ । ଦ୍ୱାଦଶ ବନ ଅବରଣ । ବାସବ ଗର୍ବ ଗଞ୍ଜନ ଗୋପ କୁଳ ବିପତ୍ତି ନାଶନେ କାରଣ । ।୧।

ଯାହାର ମହିମା ନୁହଇ ଗୋଚର ବ୍ରହ୍ମା ଆଦି ଶେଷ ଶଙ୍କରେ । ଯେ କୃଷ୍ଣଚନ୍ଦ୍ର ଧାରୀନ୍ଦ୍ର ହସ୍ତ ଗୋବର୍ଦ୍ଧନ ଗିରି ଶିଖରେ । ଅତି ସୁଗମ । ଦିଗନ୍ତ ତରୁ ଲତା ଗଣ । ସଦା ପୁଷ୍ପିତ ଫଳଭରେ ଶୋଭିତ ସଦା ବସନ୍ତ ପରସ୍ପର୍ଶି । ।୨।

କୁଞ୍ଜ କୁଟୀର ଶିଳା ପୀଢ଼ ସୁନ୍ଦର ମେଢ଼ ମଣ୍ଡପ ମନୋହର । ମନ୍ଦ ଗନ୍ଧଯୁତ ବହଇ ମରୁତ ରାଧାକୃଷ୍ଣ ଯହିଁ ବିହାର । ଅତି ଶୋଭନ । ଧନ୍ୟ ଏ ଗିରି ଗୋବର୍ଦ୍ଧନ । ପ୍ରଦକ୍ଷିଣ କରି ପ୍ରଣାମି ନାରଦେ କରୁଅଛୁ ମୁ ଯେ ବନ୍ଦନ । ।୩।

ଏଅନ୍ତେ ନଳ କୁବେର କରଯୋଡ଼ି ପଡ଼ି ନାରଦମୁନି ପାଦେ । ଭାବେ ଲୋତକ ନୟନରୁ ବୁହାଇ ହୋଇ ପୁଲକ ଗଦଗଦେ । ଧୀରେ ପୁଛନ୍ତି । ମୁନିବର କହ ସନ୍ଦେଶ । ଗ୍ରୀଷମ ଅନ୍ତେ ବରଷାରେ କିରୂପେ ବିହାର କଲେ ପୀତବାସ । ।୪।

ଅତି ଆନନ୍ଦେ କହନ୍ତି ମୁନିବର ଶୁଣନ୍ତେ କୁବେର ନନ୍ଦନ । ବହୁ ବହୁକେ ଲୀଳା ମାନ ଅନେକ ରୂପେ କଲେ ନନ୍ଦ ନନ୍ଦନ । ଗ୍ରୀଷମ ଅନ୍ତେ । ହୋଇଲା ବରଷା ପ୍ରବେଶ । ଦିଗ ଅକାଶ ଘନ ଘୋଟି ରହିଲା ଶଶି ତପନ ନୋହି ଦୃଶ । ।୫।

ଅତି ଘନ ଘୋର ପୂର୍ଣ୍ଣ ଦଶ ଦିଗ ବିଦ୍ୟୁତ କାନ୍ତି ପ୍ରକାଶିତ ।
ଅବିଚ୍ଛିନ୍ନ ଜଳ ଧାରା ପତନ ବନ ଅଞ୍ଚଳେ ହେଲେ ହତ ।
ଚାତ୍ରକ ଭେକ । ଧ୍ୱନି ହେଲା ଅତି ପ୍ରବଳ । କଦମ୍ବ ଜାତି ମାଳତି
କଞ୍ଚଶିଳ ମଉନ ହେଲେ ପିକ କୁଳ । । ୬ ।

ନଦୀ ତଡ଼ାଗ ଜଳରେ ପୂର୍ଣ୍ଣ ହେଲେ ତୃଣ ଅଙ୍କୁର ପଥ ରୁନ୍ଧି ।
ଜଳ ପ୍ରଭାବେ ଅବନୀ ପୂର୍ଣ୍ଣ ହେଲା ପଥିକମାନେ ହେଲେ ଯଦି ।
ଏମନ୍ତ କାଳ । ଦେଖିଣ ମଦନଗୋପାଳ । ଗାଈ ଚରାଇ
ଗୋବର୍ଦ୍ଧନେ ବିହାର କରନ୍ତି ଯେନ ଯଥାକୁଳ । । ୭ ।

ଶାଶୁ ନଣନ୍ଦ ଅକଟରେ ଶ୍ରୀମତୀ ସଙ୍ଗ ନପାଇ ଶ୍ୟାମଘନ ।
ମଦନ ଶରେ ଅଶକତ ରାଧିକା ରୂପ କରନ୍ତେ କରି ଧ୍ୟାନ । ବୁଲି
ଦେଖନ୍ତି । ଗୋବର୍ଦ୍ଧନ ଗିରି ଶିଖରେ । ପୀଢ଼ା ମଣ୍ଡପ ଅଟ୍ଟାଳ କୁଞ୍ଜ
ମାନ ଦିଶନ୍ତି ଅତି ମନୋହର । । ୮ ।

ବରଷା ବେଳେ କ୍ଷେମ ରହି କରି ଖେଳନ୍ତି ଅତି କଉତୁକେ ।
ବଟ ପଲାଶ ତରୁ ତଳେ ସୁରଭିଗଣ ମେଳ କରି କାଂଶକେ । ସୁଖେ
ରହି ଯେ । ନ ଚିନ୍ତି ବର୍ଷାରେ କେହି । ଅତି ରମ୍ୟ ସ୍ଥ ନ ଦେଖି
ଶ୍ୟାମଘନ ଶ୍ରୀମତୀ ବିନୁ ଦୁଃଖ ବହି । । ୯ ।

ବିଚରନ୍ତି ତହିଁ ରାଧାଙ୍କୁ ପଛେ ଯେମ କରୁଥାନ୍ତି ବିହାର ।
ନ ଦେଖୁଥାନ୍ତି ଦିଗ ମାନ ମାନସେ ହୋଇ ଅତିହିଁ କାତର । ପକ୍ଷୀ
ସଙ୍ଗତି । ପାଚିଲେ ଗଛ ମୂ ପକ୍ଷୀବ । ଉଚ୍ଚ ଶିଳାରେ ଉଭା ହୋଇ
ଚାହାନ୍ତି ଶ୍ରୀମତୀ ଦରଶନ ଲୋଭ । । ୧୦ ।

ଯୁବତୀ ଯୂଥ ଯୂଥ ପଥେ ଆସନ୍ତେ ମଣନ୍ତି ରାଧା ଆସେ ଏଥେ ।
ସ୍ୱଭାବ ରୂପ ଉପଲକ୍ଷେ ଉତ୍ସୁକେ ଚାହାନ୍ତି ନୟନ ସୁଖତେ । ପୁଣି
ମାନସେ । ଧାବନ୍ତି ଅହା ପ୍ରାଣେଶ୍ୱରୀ । ଛଟକ ଶୋଭା ଭାଳି ନ
ଦେଖି ମୁଖ ହଲାଇ ନୋହେ ବୋଲି କରି । । ୧୧ ।

ଦୋହଲି ମକରକୁଣ୍ଡଳ ଗଣ୍ଡରେ ଅତିମଞ୍ଜୁଳେ ଝଟକଇ ।
କାମଜୟୀନ ଧନୁକାଇ ଗରବେ ଚନ୍ଦ୍ରହାସକୁ ଝମକାଇ । ନମି ସଖୀ ଏ ।
କହନ୍ତି ତହିଁ ଛକଗୀର । ଦେଖ ସୁନାରୀ ପେଣ୍ଠି ପେଣ୍ଠି କନକ
କୁସୁମେ ଅଛି ଶେଖର ।୧୨।
ଭୃଙ୍ଗ ଏହାଙ୍କୁ ଦେଖିକରେ ଅନ୍ତର ଏକା ଚନ୍ଦ୍ରିମା ସଙ୍ଗ ଥୋଇ ।
ଭୁବନ ମଧ୍ୟେ ପଦ୍ମିନୀ ଅଛୁ ଏଥି ଲୁବ୍ଧଲ ଏତେ କିବ କହିଁ ।
ମଧୁମଙ୍ଗଳ । ବୋଲନ୍ତି ମଧୁର ବାଣୀ । ଯହିଁ ଦେଖନ୍ତି ପୁଷ୍ପବାଟ
ସବୁରି ଯେଠାରେ ଦେବ ଏ ଯାଇ ମେଳ ।୧୩।
ଚମ୍ପା କେତକୀ ପକ୍ଷାକୁ ପଦ୍ମବନ୍ଧୁ ବାଧଙ୍କ ବହିଁ ଭିତରେ ରହି ।
ଶୁଣି ସୁବଳ ଛଳ କହେ ମଞ୍ଜୁଳ ଦକ୍ଷ ନାୟକ ମଧୁ ଚୁଡ । ସବୁ
କୁସୁମେ । ପୀରିତି କରଇ ସମାନ । ସମସ୍ତ କୁସୁମ ରସ ପେନ
ତଳେ ରହୁ ପଦ୍ମ କୋଳେ ଶଯ୍ୟନ ।୧୪।
ପୁଣ ଏମନ୍ତ ଦେଖ ମୋହ ପଦ୍ମିନୀ ସଦା ଭ୍ରମର ଗଦଗଦ ।
ସୁଦାମ କହେ ଏ ଗୋବର୍ଦ୍ଧନ ଶିଖେ ପଦ୍ମିନୀ ହେବ ବକ୍ଷୀତ ।
କୃଷ୍ଣ ଭ୍ରମର । ତୁମ୍ଭେ ହୋଇବେ ଶୋଷମନ । ଇଷତ୍ ହସିବ
ସୁଦାମ କହଇ ବକ୍ଷୀତ ନାନା ସୁମନ ।୧୫।
ମଧୁ ସମନ୍ତ ଏମନ୍ତ ଭଣେ ବୃନ୍ଦା କି ଦ୍ରବ ନାହିଁ ନାହିଁ କରେ ।
କୃଷ୍ଣ ଦୃଷ୍ଟ୍ୟାସ୍ୟ ମୁଖ ଦେଖି କହନ୍ତି କହେ ଏ ବଚନ ଭଙ୍ଗୀରେ ।
ଗୋକୁଳଚନ୍ଦ୍ର । ଉଦୟ ଗିରି ଶିଖେ ଦେଖି । ହାମାର୍ତ୍ତେ ମୃଗାକ୍ଷୀ
ରମନ୍ତି ଅମୃତ ଲୋଭରେ ହୋଇ ଅତି ସୁଖୀ ।୧୬।
ଅଶ୍ରିତ ଲୋକେ ଅନାଶ୍ରିତ କରିବାସନା ଫୁଟେ ଏ ବେଳର ।
ଅନୁରାଗରେ ନିବାରଣ କହି ସନ୍ଧ୍ୟା ଏତ ଅ.ବନ୍ଧିର । ସ୍ୱଚ୍ଛ
ମୁଖ । ଚନ୍ଦ୍ର ଭି ଦୋଷଁ ନାହି କରେ । କୋଇଲ ପକ୍ଷୀ କହେ ଧୁଣି
ଶ୍ରୀକୃଷ୍ଣ ସ୍ତବ ପରମାଣି ହୃଦରେ ।୧୭।

ଦେଖ ଏ ଚନ୍ଦ୍ରମାବଦନା ସକଳ ନିକୁଞ୍ଜ ସୁଖ ସଦନ । ଜ୍ୟେଷ୍ଠା ଧନିଷ୍ଠା ଚିତ୍ରା ରାଧା ବିଶାଖା ସମସ୍ତଙ୍କର ତୋଷମନ । ମୁଖ ସୁଧାଂଶୁ । ଚଳନ୍ତେ କୁଣ୍ଡଳ ଚଳନ । ବେଣୀ ଗୁରୁ ଚଳନରେ ହାସ ସୁଧା ବୃଷ୍ଟି କରଇ ନବଘନ । ।୧୮।

ଏସନ ଅଷ୍ଟ ସଖୀଙ୍କର ବଚନ ଶୁଣି ଶ୍ରୀକୃଷ୍ଣ ତୋଷମତି । ହସି ମିତ୍ରଙ୍କୁ ଆଲିଙ୍ଗନ କରଣ ଗୋବର୍ଦ୍ଧନରେ ବିହରନ୍ତି । ନବୀନଭୂଷଣ । ସୁରଭିଗଣେ ଚରାଇଲେ । ଦିନାନ୍ତେ ପର୍ବତୁଁ ଓହ୍ଲାଇ ହରଷେ ପୁରରେ ପ୍ରବେଶ ହୋଇଲେ । ।୧୯।

ଏବାଲେ ରାଧା ଅଟ୍ଟାଳରେ ଆରୋହି ଶ୍ରୀକୃଷ୍ଣଙ୍କୁ କରି ଦର୍ଶନ । କଥା ପ୍ରସ୍ତାବେ ସଖୀଗଣେ କହନ୍ତି କୃଷ୍ଣ ଅନୁରାଗ ବଚନ । ଦେଖ ସଜନି । ଅତି ନବଜ ଜଳଧର । ଜଣି ଦିବସ ଗଗନ ଦିଗ ଦେଶ ଦିଶଇ ଅତି ଭୟଙ୍କର । ।୨୦।

ବିଦ୍ୟୁତ ଛଟାକ ଘଡଘଡି ପ୍ରକଟନଦିଶେ ରବି ଶଶୀ ତାରା । ଦେଖ ଦେଖ ସନ୍ଧି ଅବଚ୍ଛିନ୍ନ ହୋଇ ବରଷୁ ଅଛି ଜଳ ଧାରା । ଏଥିରେ ପାଳେ । ବନ କନ୍ଦରେ ଗାବ ରଖି । ଚିନ୍ତି ବସନ ଜରଜ୍ଜର ଶୀତରେ କମ୍ପିଣ ଥରଥରେ ଦୁଃଖୀ । ।୨୧।

ଏଥି କେମନ୍ତେ ଶ୍ରୀକୃଷ୍ଣ ବିହରନ୍ତି ଗୋପାଳଙ୍କ ସଙ୍ଗ ମେଳରେ । ସଦନ ପୂର୍ଣ୍ଣ ଖେଳ ଛାଡି ବନସ୍ତେ ବଞ୍ଚନ୍ତି ବରଷା କାଳରେ । ଶୁଣି ଏମନ୍ତ । କହନ୍ତି ତହିଁ କୁନ୍ଦଲତା । ବର୍ଷାରେ ସୁଖେ ଗୋବର୍ଦ୍ଧନେ କ୍ରୀଡନ୍ତି ତୁମ୍ଭ ଖେଳନେ ବଲବନ୍ତା । ।୨୨।

ସେ ଗିରି ଅତି ମନୋହର ସମାନ ହୋଇବ କେଉଁ ସୁରପୁର । ପଲ୍ଲବ କୁଟୀର ତଳେ ରହି ସୁଖେ ଚରାନ୍ତି ସୁରଭି ନିକର । ଯେବେ ଶରଧା । ଦେଖିବା ଶୈଳ ଗୋବର୍ଦ୍ଧନ । ତୁମ୍ଭ ସଙ୍ଗ ରଙ୍ଗ ଇଚ୍ଛା କରି ତହିଁ ଦିନ ବଞ୍ଚନ୍ତି ଶ୍ୟାମଘନ । ।୨୩।

ଭରତ ଖାତରେ ନରହନ୍ତି ପୁରେ ରତୀଙ୍କ ପ୍ରାଏ ଦୁଃଖ ସହି । ଶ୍ରୀମତୀ ଇଙ୍ଗିତେ ଧ୍ୱସନ୍ତି ହିଅର ମନେ ପଡ଼ିଲେ ଭ ଗୋ ସଖି । କହୁଛ ଯେବେ । ତୁମ୍ଭେ ତାଙ୍କର କଥା କିତେ । ବରହ ଦୁଃଖହର ସୁଖେ ବହାର କର ତାଙ୍କ ସଙ୍ଗେ ପର୍ବତେ । ।୨୪।

ଏହି ସମୟେ ପୌର୍ଣ୍ଣମାସୀ ଯାବଟେ ପ୍ରବେଶ ହୋଇଲେକ ଅଧି । କଟିଳା ପାଦେ ପ୍ରଣମନ୍ତେ କଲ୍ୟାଣ କରଣ ଦେବୀ ଏହା ଭଣି । କହ କହଗୋ । ତୁମ୍ଭ ସବ ଶୁଭ ବିଧାନ । କଟିଳା କହେ ଗୋସ୍ୱ ମୋର ଯେ ଦିନୁ ଅନ୍ତର ହେଲା ବୃନ୍ଦାବନ । ।୨୫।

ଯେହି ଦିନୁ କ୍ଷୀର ଅଧିକ ନୁହଇ ଘୃତ ନସ୍ୟନେ ଦେଖା ନାହିଁ । ଏପୋଜ କର୍ଯ୍ୟନି ହୋଇଲିଗୋ ମାଏ ସଞ୍ଚିତ ଧନ ନୃପେ ଦେଇ । ଶୁଣି ଏ ବାଣୀ । ତୋଷେ କହନ୍ତି ପୌର୍ଣ୍ଣମାସୀ । କହିବା ଯେନ ଏକ ଦୀକ୍ଷା ତୁମ୍ଭର ଧନ ବୃଦ୍ଧି ହେବ ବଶେଷି । ।୨୬।

ଗୋବର୍ଦ୍ଧନ ଗିରି କିଷ୍ଟୟେ ଗୁପତେ ଶିଳାରୂପେଣ ହୋଇ ସ୍ଥିତି । ଲକ୍ଷ୍ମୀ ନାରାୟଣ ସାକ୍ଷାତ ଭର୍ଦ୍ଦିରେ ବଇସ୍ୱେ କରଣ ଅଛନ୍ତି । ତୁମ୍ଭ ବଧୂକୁ । ଏ ଚତୁର୍ଦ୍ଦଶୀ ଗୁରୁବାର । ପୂଜା କରାଅ ଧନ ବୃଦ୍ଧି ହୋଇବ ନିଷ୍ଟୟେ ମୋର ବୋଲ କର । ।୨୭।

ଏ ନାନ୍ଦୀମୁଖୀ ସଙ୍ଗେ ଥାଇ ସବଧି ମତେ କରାଇବେ ପୂଜନ । ଶୁଣି କଟିଳା ନାନ୍ଦୀମୁଖୀ ସଙ୍ଗତେ ରାଧା ପାଶେ ମିଳ ବଦନ । କହେ ଏମନ । ପୌର୍ଣ୍ଣମାସୀଙ୍କ ଅଜ୍ଞା ଘେନ । ଏ ଚତୁର୍ଦ୍ଦଶୀ ଗୁରୁବାରେ ତୁମ୍ଭେଗୋ ଗୋବର୍ଦ୍ଧନ କର ପୂଜନ । ।୨୮।

ଶୁଣି ଶ୍ରୀମତୀ ବୋଲନ୍ତି ମ ନ ମଧ୍ୟରେ ପୂଜଇ ଯାଇ ଦିବାକର । ଘୋର ବରଷା ପୁଣି ଅତି ଦୁର୍ଘଟ ଏ ଗୋବର୍ଦ୍ଧନ ଗିରବର । ଏ କଷ୍ଟରେ । କତି ମୁଁ ଯାଇ ନ ପାରଇ । ଏ ଗୋବର୍ଦ୍ଧନ ପୂଜନ କରନ୍ତୁ ତୁମ୍ଭ ସୁତା ଯାଇ । ।

ଛଟିଲା ଶୁଣି ବୋଇଲା ଶୁଣ ମାଏ କୁଟିଳା ପରର ଯୁବତୀ । ଯେ ପୂଜିବ ସେକୁ ଅତିହିଁ ଅନନ୍ଦେ ହୋଇବ ଧନ ପୁତ୍ରବତୀ । ଏବେ ତୁମ୍ଭେ ଗୋ । ହରଷ କରିଣ ମାନସ । ନାନ୍ଦିମୁଖୀ ସଙ୍ଗେ ଥାଇ ବଧୂମତେ ପୂଜା କରାଇବ ଅବଶ୍ୟ । । ୩୦ ।

ଶୁଣି ମଉନ ହୋଇଲେ ରାଧା ମନେ ମନେ ହରଷ ଅତିଶୟ । କୃଷ୍ଣ ଦର୍ଶନ ଲାଳସା କରୁଥିଲେ ମିଳିଲା ତହିଁର ସଂଶୟ । କୁନ୍ଦଲ-ତାଙ୍କୁ । ଶୁଦ୍ଧି ଶ୍ରୀମତୀ ମନ୍ଦେ ହସି । ବୋଇଲେ ଭଲାମନାସିଲ ତୁମ୍ଭେତ ଯେ କଥା ଘଟିଲା ଟିଂଗୋ ଅସି । । ୩୧ ।

ସଙ୍ଗିନୀଗଣ ହରଷରେ ବୋଲନ୍ତି ଯିବାଗୋ ଶୁଳ ଗୋବର୍ଦ୍ଧନ । ଗିରି ବହାର ଅତି ସୁବେଶ କରିବ ଶ୍ରୀରାଧାମାଧବ ଦର୍ଶନ । ହେଲା ଆଷାଢ଼- । -ଶୁକ୍ଳ ଦଶମୀ ଗୁରୁବାର । ପ୍ରଭାତୁ ନିତ୍ୟକର୍ମ ସାରି ଶ୍ରୀମତୀ ସଖୀସଙ୍ଗେ ହେଲେ ବାହାର । । ୩୨ ।

କୁସୁମ ଚନ୍ଦନ ପୂଜାବିଧି ମାନ ଘେନାଇ ସମସ୍ତ ସଙ୍ଗତେ । ନାନ୍ଦୀମୁଖୀଙ୍କ ସଙ୍ଗତେ ଘେନି ଗୋବର୍ଦ୍ଧନକୁ ଯାନ୍ତି ତୋଷଚିତ୍ତେ । ନିଜ ଗଣଙ୍କୁ । ସଙ୍ଗତେ ଘେନି ବୃନ୍ଦାବତୀ । ଫଳ ପୁଷ୍ପ ଅତିଅନନ୍ଦରେ ଘେନି ଯାଇ ଭେଟିଲେକ ଶ୍ରୀମତୀ । । ୩୩ ।

ପଥ ମଣାଇଁ ନିଅନ୍ତି ବୃନ୍ଦାବତୀ ହରଷେ ରାଧା କୁଣ୍ଡେ ମିଳ । ମୁଖ ପଖାଳ ପୁଣ ଶ୍ୟାମକୁଣ୍ଡରୁ ଜଳ ଦିଅନ୍ତି ଶିରେ ତୋଳ । ଯାଇ ଗହନେ । ମିଳଲେ ଗୋବର୍ଦ୍ଧନ ତଟେ । ଅତି ଆଶ୍ଚର୍ଯ୍ୟ ହୋଇ ରାଧା ପୁଛନ୍ତି ଅପା ଅସ୍ତିକ ଦେଖି ବାଟେ । । ୩୪ ।

ନାନ୍ଦୀମୁଖୀ ପୁଣ କହନ୍ତି ଏ ଅଘାସୁରକୁ ମାରିଥିଲେ ହରି । ବଯା ସମସ୍ତ ଗୋପାଳ ଗିଳିଥିଲା ମସ୍ତକ ଫୁଟିଣ ବାହାର । ଶୁଣି ଶ୍ରୀମତୀ । ଶ୍ରୀକୃଷ୍ଣ ଗୁଣ କର୍ମ ଯେତେ । ହରଷ ହୋଇ ଚଳନ୍ତି ଯାନ୍ତେ ଶବର ପତ୍ନୀ ଦେଖିଲେ ପୁଣି ପଥେ । । ୩୫ ॥

ତାହାର ସୁନନ୍ଦନନ୍ଦିନୀ ଭୃଙ୍ଗୀ ମଲ୍ଲିକା ନାମ ଦେହଙ୍କର । ସୁସ୍ୱାଦୁ ଫଳ ଯେତେ ଉଠି ଆନନ୍ଦେ ଭେଟିଲେ ଶ୍ରୀମତୀ ଛାମୁର । ପଡି ଚରଣ- । ଧୂଳି ମସ୍ତକେ ନେଇ ବୋଇଲେ । ନିସ୍ତରିଲୁ ନିସ୍ତରିଲୁ ଅତି ସୌଭାଗ୍ୟେ ତୁମ୍ଭ ଦର୍ଶନ ହେଲା ବୋଲି । ।୩୬।

ପୁଳିନ୍ଦ କନ୍ୟା ସ୍ତବ ଦେଖି ଶ୍ରୀମତୀ ପୁଚ୍ଛନ୍ତି ଅତି ଶରଧାରେ । କିରୂପରେ ବଞ୍ଚି ରହୁଛ ନପାଅ ତୁମ୍ଭେ ଏ ଘୋର ବନସ୍ତରେ । ତୁମ୍ଭେ କେଉଁଠାଇଁ । ନରବର ନଗର ପାଶରେ । ସ୍ନେହ ଜାଣି ଶୁଣି ଭୃଙ୍ଗୀ ମଲ୍ଲିକା କହନ୍ତି ଅତି ହରଷରେ । ।୩୭।

ଅମ୍ଭର ବଂଶ ଅନୁସାରେ ଏ ବନ କନ୍ଦରେ ଥାଉ ଅଛେ କର । କାଷ୍ଠ ପତ୍ର ଫଳ ମୂଳ ଖାଇ ପିଇ ଏ ଗିରି ଝର ବାରି । ସ୍ୱର୍ଗ ଭୋଗର । ଅମ୍ଭ ମନକୁ ନ ରୁଚଇ । ଲଜ୍ଜିତା ଛନ୍ଦି ବୋଲନ୍ତି କହ ଏବେ ତୁମ୍ଭ ଦେବତା ଛନ୍ତି କାହିଁ । ।୩୮।

ଶରଧା କରି ଅଛନ୍ତି ଜେମାଦେଇ ଆଗେ ତୁମ୍ଭେ ପଥ କହାଅ । ଏ ବୃଷଭାନୁ ନନ୍ଦିନୀଙ୍କି ତୁମ୍ଭର ଦେବଙ୍କୁ ପ୍ରସନ୍ନ କରାଅ । ଶୁଣି ଭୃଙ୍ଗୀ । ମଲ୍ଲିକା କହଇ ଉତ୍ତର । ବ୍ରହ୍ମାଦି ନିତ୍ୟେ ସ୍ତବନ୍ତି ଦରଶନେ ଅନ୍ତହି ନ ପାନ୍ତି ଯାହାର । ।୩୯।

ଭାବରେ ବଶ ହୁଅନ୍ତି ଅଭାବରେ ଅଦୃଶ୍ୟ ହୁଅନ୍ତି ଜାଣ । ଅମ୍ଭ ପିତାମହ ପୂର୍ବେ ଯାହା କହିଛନ୍ତି କହୁଛୁ ଏବେ ଶୁଣ । ଥିଲା ଶବର । ବିଶ୍ୱାବସୁ ଯେ ଦ୍ୱୀପରେ । ନୀଳମାଧବ ନୀଳଗିରି ସେବନ ପୂଜା କରୁଥାଇ ସୁଖରେ । ।୪୦।

ଏକ ବିପ୍ରକୁ ପ୍ରୀତିପଣେ ଦେଖାଇଲେ ତକ୍ଷଣେ ସେ ଗୋପ୍ୟ ହୋଇଲେ । ଏନ୍ତୁ ପର୍ବତେ ସେନ୍ତୁ ଆସି ରହିଲେ ଲୋଡ଼ି ଏଥି ଭେଟ ପାଇଲେ । ପରମଂଗାରେ । ପୁଚ୍ଛନ୍ତୁ ଅମ୍ଭେ ଗିରିବର । ନନ୍ଦ ନନ୍ଦନ ଶିଳା ବୋଲି ଏଥିରେ ଭଜି କରୁଥାନ୍ତି ତାହାର । ।୪୧।

ଶ୍ରୀକୃଷ୍ଣ ଶୋଭା ରୂପ ଗୁଣେ ମୋହିତ ହୋଇଲେ ଦେଖି ତେଜେ ଦେହ । ଗୁପତେ ରହେ ଯଶୋଧିବେ ତାହାଙ୍କୁ ତୁମ୍ଭେ କାହିଁ ଏବେ ଦେଖିବ । ନନ୍ଦ ନନ୍ଦନ । ପ୍ରଯତ୍ନ କୋଇବେଟି ଯେବେ । ପୂର୍ଣ୍ଣ ସ୍ୱରୂପେ ତେବେ ସେ ସିଦ୍ଧ ଶିଳା ତାହାଙ୍କ ଦର୍ଶନ ହୋଇବେ ।୪୨।

ଶୁଣି ବୃନ୍ଦାବଣ୍ଡ କଣ୍ଠାଙ୍କେ ଗୁହାଁନ୍ତେ ପଛକୁ ଓହରେ ଶବରୀ । ହସ୍ତ ଠାରି ଯେ ନାନ୍ଦୀମୁଖୀ କହନ୍ତି ସମ୍ମୁଖେ ଅପବୋଲି କରି । ପୌର୍ଣ୍ଣମାସୀଙ୍କ । ଅଜ୍ଞାକୁ ଅବଜ୍ଞା ନକର । ରାଧିକା ଶ୍ରୀକୃଷ୍ଣ ବିହାର କରିବେ ବରଷା କାଳେ ଗିରିବର । ।୪୩।

ଭଗବତୀଙ୍କ ଅଜ୍ଞା ଶୁଣି ଅତିହିଁ ଆନନ୍ଦ ପୁଲକ ହୁଲୁଣି । ଆଗେ ପଥକୁ ଦେଖାଇ ସେ ଚଳାଇ କହେ ସକଳ ପୁଣପୁଣି । ଅତି ଧୀରେ । ବଳଦ୍ଦେ କରନ୍ତି ଶ୍ରୀମତୀ । ପାଇ ଶ୍ରୀରାଧା ପଦ୍ମପାଦ ଅତଳ ପରମ ଆନନ୍ଦିତ ମତି । ।୪୪।

ପାଦ ଧଉତ କରଇ ମଧୁ ଧାରେ କୁସୁମ ଛତ୍ର ଦ୍ରୁମ ଧରି । କୁସୁମ ପରାଗେ ମାର୍ଗ ଶୋଭିବନ ପାହାଡ଼ା କରନ୍ତି ବସ୍ତାର । କୁସୁମ ଗନ୍ଧେ । ବହଇ ଧୀରେ ସମୀର । ଅତି ରମଣୀୟ ହୋଇ ସେ ଅଛନ୍ତି ପଲ୍ଲବ ବକୁଳ ଭ୍ରମର । ।୪୫।

ଲତାଏ କୁସୁମ ବୃଷ୍ଟି କରୁଛନ୍ତି ଲୋଟନ୍ତି ତରୁ ଫଳ ଭରେ । ଅତି ହରଷରେ ପ୍ରଣାମ କରୁ କ ଅଛନ୍ତି ଶ୍ରୀମତୀ ପାଦରେ । ଶୁକ ଶାରିକା । ଦ୍ୱିଜେ ଉଚ୍ଚାରନ୍ତି ମଙ୍ଗଳ । କୁମ୍ଭ ଶ୍ରୀଫଳ ରୂତ ଡ଼ାଳ ତୋରଣୀ ପଲ୍ଲବ ଯହିଁ ମାଳ ମାଳ । ।୪୬।

ତକୁଣ ପୀଠ ସ୍ଥାନେ ସ୍ଥାନେ ଅତିହିଁ ବଚତ୍ର ଅମୂଲ୍ୟ ଆସନେ । ଅଗରୁ ଚନ୍ଦନ ଧୂପ ସ୍ୱାଦୁ ଜଳ ଏମନ୍ତ ଅନେକ ବିଧାନେ । ଅତି ଆନନ୍ଦେ । ପୂଜା କରଇ ଗିରିବର । ପାବନ୍ତି ଚନ୍ଦ୍ରାମଣି ଶିଳା ସକଳ ନବେଷି ଆନନ୍ଦ ପ୍ରବଳ । ।୪୭।

ଅଗେ ଭୃଙ୍ଗୀ ମଲ୍ଲିକା ସ୍ଥାନେ ସ୍ଥାନେ ମଣ୍ଡଳୀଂ କରରେ ଦେଖାଇ । ଏଯେ ପଲାଶ ତରୁ ଅତି ରୁଚିର ହୋଇଛୁ ଦେଖି ଚେମାଦେଇ । ଏଥି ଗନ୍ଧନ୍ତ । ବରଷା କାଳେ ଶ୍ୟାମଘନ । ଏ ଯେ ମାଧବୀ ପର୍ଣ୍ଣଶାଳା ସମସ୍ତେ ବସି ଯେଁ କରନ୍ତ ଭୋଜନ । ୪୮ ।

ଦେଖ ଏ ଶାଳ ତରୁ ମୂଳେ ଅଛିଟି ଉଚ୍ଚ ପାଷାଣ ମନୋରମ । ଏଥି ଉପରେ ଉଠି ହରି ଡାକନ୍ତ ଧଉ ସୁରଭ ଗଣ ନାମ । ଅତି ସୁସ୍ୱରେ ଶୁଣି ଶ୍ରୀକୃଷ୍ଣ ବେଣୁନାଦ । ଉତ୍ସୁକିତ ମନ ହୋଇଣ ବହଳ ବେଢ଼ନ୍ତ ଆସି ଗାବବୃନ୍ଦ । । ୪୯ ।

ଏଉଚ୍ଚ ଶୃଙ୍ଗ ପରେ ଉଠି ଶ୍ରୀକୃଷ୍ଣ ଚଉଦିଗକୁ ଦେନ୍ତ ଦୃଷ୍ଟି । ଚାହିଁ ରହିଛୁ ଦେବଦାରୁ ନିର୍ମିତ କଲା ପରାପ୍ୟେ ପରମେଷ୍ଟି । ଅତିଚକ୍କଣ । ଦେଖ ଏଚଉ ସମସ୍ତାନ । ଷଣେ ପଦ୍ମଜନ୍ତ ସଖା ଜଗିଥାନ୍ତ ଏଯେ ମାଧବ ସୁଖାସନ । । ୫୦ ।

ଆକାଶ ଗଙ୍ଗା କୁଣ୍ଡ ଦେଖ ଶ୍ରୀକୃଷ୍ଣ ସ୍ନାନେ ଲଭନ୍ତ ସୁଖ ଅତି । ଏରୂପେ ସମସ୍ତ ସ୍ଥାନ ଚହ୍ନାଇ ସେ ଭୃଙ୍ଗୀ ମଲ୍ଲିକା ଦେଖାନ୍ତ । ପାଷାଣ ପିଢ଼ । ବୁଲି ଦେଖନ୍ତ ସବୁବାଳ । ଶକଟା ପାଲି ପଞ୍ଚପାହି କାହିଁରେ ଚକ୍ରିତ ହୋଏ ପଶା ପାଲି । । ୫୧ ।

କାହିଁ ନ୍ୟାସ୍ତ ବଳ କୁସୁମ ତାମ୍ବୂଳ କେଉଁ ସ୍ଥାନେ ଗନ୍ଧ ଚନ୍ଦନ । ଶ୍ରୀମଞ୍ଚଙ୍କ ଚତ୍ର ଅଛିଟି ଲୋଭିତ ଗୃହିଁ ଶ୍ରୀକୃଷ୍ଣ ଚତ୍ର ମାନ । ଅତି ଆନନ୍ଦେ । ବସନ୍ତ ତହିଁ ଭ୍ରମରରେ । ଅଙ୍ଗ ଉଲାଗି ଦ୍ରବ୍ୟ ଯେନ ଉତ୍ସାହ ଗତ ଲୀଳା ଚନ୍ତ ମନରେ । । ୫୨ ।

ସିଦ୍ଧ ଶିଳା ଯହିଁ ପ୍ରବେଶିଲେ ତହିଁ ଦେଖି ଅଗରୁ ତରୁତଳେ । ଶ୍ରୀ ନାରାୟଣ ଜ୍ୟୋତିର୍ମୟ ଶୋଭନ ଶାମଳ ରମଣୀୟ ଶିଳେ । ଦେଖି ଆନନ୍ଦେ । କଲେ ସମସ୍ତେ ନମସ୍କାର । ସୁଦଶା ବ୍ରତ ବଧିରେ ନାନ୍ଦୀମୁଖୀ ପୂଜା କହିଲେକ ସତ୍ୱର । । ୫୩ ।

ସଯୋଗୀ ନୃପତି ଦୁଲ୍ଲାଳ ଆନନ୍ଦେ ଦେଲେକ କୁସୁମ ଅଞ୍ଜଳ ।
ପୂଜା ବଢ଼ାଇ ବିପ୍ରନାରୀ ପ୍ରସାଦ ଦେଲେ ଶ୍ରୀମନ୍ତ ହସ୍ତେ ଭୋଜନ ।
ଓଳଗ ବର । ମାଗନ୍ତି କୃଷ୍ଣ ସଙ୍ଗ ଯୋଗ । କୃଷ୍ଣ ନଦେଖି ମାନସ
ଛିନ୍ନ ଛିନ ହୋଇଲେ ଅତି ଉଦବେଗ । ।୫୪।

ଶିଖରେ ସୁଖରେ ଆରୋହି ଦେଖନ୍ତି ପୁଣ ନାଗର ପୁର ଜନ ।
ପୁରେ କଳଶ ପନ୍ତି ପନ୍ତି ଶୋଭିତ ଉଡନ୍ତି ଯା ନୀଳକେତନ ।
କୃଷ୍ଣ ଠାରନ୍ତି । କଥିବା ଶ୍ରୀହସ୍ତ ବଢ଼ାଇ । ଅମ୍ଭେ ଯିବାଯାଏ ଅରେ
ପ୍ରାଣବନ୍ଧୁ ସେଠାରେ ମାତ୍ର ଥାଅ ରହି । ।୫୫।

ଏମନ୍ତେ କୃଷ୍ଣ ବନେ ବଜେ ଶୁଣଇ ଶିଙ୍ଗା ମୁରଲୀ ବେଣୁନାଦ ।
ଗୋଧନ ଚରାଇ ଅଗ ପଛେ ରହି ଗୋପାଳେ ଅତିହିଁ ଆନନ୍ଦ ।
ଅତି ସହୃରେ । ମିଳିଲେ ଗିରିବର ତଳେ । କୃଷ୍ଣଙ୍କ ଲୋଚନେ
ଆନନ୍ଦେ ଦେଖନ୍ତି ଶ୍ରୀମନ୍ତ ରହି ସଖିମାନେ । ।୫୬।

କନ୍ଦଳା କଳଡ଼ ବନ୍ଦନ୍ତି ଇଙ୍ଗିତ ଗୋକୁଳ ଶ୍ୟାମଘନ ଘୋଷ ।
ନେତ୍ର ଚାତକଙ୍କୁ ଆନନ୍ଦ କରଇ ଲାବଣ୍ୟଜଳ କର ବୃଷ୍ଟି ।
ପାଉ କରେ ଗୋ । କୁଚ ମୟୂର ନୃତ୍ୟ କରେ । ରୋମାଞ୍ଚ ନୀପ
ପୁଷ୍ପ ଜାତ ନୟନୁ ଲୋତକ ତଟିନୀ ପ୍ରସରେ । ।୫୭।

ବିଶାଖା ବୋଲନ୍ତି ଏ ଗୋ ଧେନୁ ପତି ସାକ୍ଷାତ କ୍ଷୀରନିଧି ପ୍ରାଣେ ।
ନେତ୍ର ଚକୋର ଆନନ୍ଦକ ଦେଖଗୋ ଗୋକୁଳ ଚନ୍ଦ୍ରମା ଉଦୟେ ।
ପୂର୍ଣ୍ଣ ଆନନ୍ଦ- । -ସାଗର ହୋଏ ଉଚ୍ଛୁଳିତ । ମାନସ କୁମୁଦ
ପ୍ରଫୁଲ୍ଲିତ ହୋଏ ତନୁ ଚନ୍ଦ୍ରକାନ୍ତ ଦ୍ରବତ । ।୫୮।

ଚନ୍ଦ୍ରା ହାସ୍ୟରେ ସେ କହଇ ଦେଖ ଗୋ ମଦନମୋହନ ସ୍ୱରୂପ ।
ଦର୍ଶନ ମାତ୍ରକେ ହୃଦୟେ ଭେଦଇ କରେ କଥାଉଁ ଫୁଲ ଗୃପ ।
ବୋଲେ ଚମ୍ପକ- । ଲତା ଏ ବଚନ ଚାତୁରୀ । ଅଚଳ କ୍ଷିତି ଚଞ୍ଚଳା
ହନୁ ନବଘନ କର୍ପୂର ବନେ ପ୍ରକର । ।୫୯।

ରଙ୍ଗଦେବୀ କହି କୃଷ୍ଣ ଯାର ଗୃହିଁ ବରଣୀ ନେତ୍ର କଷ୍ଟକରେ ।
ତନୁ କମ୍ପାଇ ଅଶ୍ରୁ ମୂର୍ଚ୍ଛେ ମିଳନେ ହୋଇ ଅଚିହ୍ନି ପ୍ରସାଦରେ ।
ପୁଣି ସୁଦେବୀ । କହନ୍ତି ବଚନ ଇଙ୍ଗିତେ । କୃଷ୍ଣ ଭଗୀରଥ ଯେସନ
ଆସେ ଏଥି ସୁରଭି ଏ ସୁର ସରିତେ । ।୬୦।

ଅତିପ୍ରଜ୍ୱଳନ୍ତ କାମାନଳ ଭୁତ ଗୋପୀଙ୍କୁ ଶୀତଳ କରବ । ତର
କାଳ ତାପ ହୋଇଚ ଅମାପ ହର ଆଜନ୍ଧେ ବହୁଦବ । ରାଧା
ସାତ୍ତ୍ୱିକ । ଧ୍ୱବଲୁ ତୁଙ୍ଗବଦ୍ୟା ଗୃହିଁ । ବୋଲେ ନବ ମଦନାକୁ
ଦେଖି ଭୁତ ଶମ୍ଭୁ ଷ କ୍ରୋଧରେ କମ୍ପଇ । ।୬୧।

ହୋଇ ପୁଷ୍ପ ଚଞ୍ଚ ବେଣୀ ଫଣିରାଜ ମଳୟଜ ଚନ୍ଦ୍ର ଗମନ ।
କପାଳ ଖଣ୍ଡ ସୁଧାକର ଜମ୍ବୁ କଣ୍ଠ ଭଙ୍ଗିଣି ପଞ୍ଚା ସ୍ତନ । ଭୂରୁ
ପିନାକ । ଶରାଶନ କର ଯତନ । ଗୃହୁ ଅଞ୍ଜନେ ଚର୍ଣ୍ଣ ବିଗାର
ହନେ ନୟନ ମନଭେଦି ବାଣ । ।୬୨।

କାମକୁ ଅଭ୍ର ସଙ୍ଗ୍ରାମେ ଜିଣି ରତି ରମଣୀରେ ଅଜ୍ଞା ଯୌବନେ ।
ବୋଲନ୍ତି ଇନ୍ଦୁଲେଖା ଏ ବୃନ୍ଦାବନ ରାଜାଙ୍କୁ ଦେଖି ଲକ୍ଷ ଭବେ ।
ଦେଶ କମ୍ପନ୍ତି । ହୁଅନ୍ତି ଅତି ପୁରବାସୀ । କହି ମଧୁର ଅତି
କର୍କଶ କର ପୀଡ଼ାକୁ ଦେବ ଏ ବଂଶଷି । ।୬୩।

ଅଷ୍ଟ ସଖୀଙ୍କ ଭ୍ରଳ ଶୁଣି ତୁଳସୀ ସ୍ୱରୂପରେ କହେ ଏମନ୍ତ ।
ଏ ଆଷାଢ଼ ଶୁକ୍ଳ ଦଶମୀରେ ଫିଅଁ ବଳଭଦ୍ର ସ୍ୱାମୀ ଚନ୍ଦ୍ରା ଭଦ୍ରେ ।
ଶ୍ୟାମସୁନ୍ଦର । ଭ ନୀଳଗିରି ଭ ବନପେ । ଦେଖି ମାଧବ ଘୋର
ଯାତ୍ରା ଉତ୍ସବ ସମସ୍ତ ଜନ ତୋଷମୟେ । ।୬୪।

ଏମନ୍ତେ ସଖୀ ସତ୍ତ୍ୱାସେ ଉତ୍ସୁକେ ଶ୍ରୀକୃଷ୍ଣ ଶିବତଳେ ରହି ।
ସୁସ୍ୱର ନାଦେ ହୁଳହୁଳି ମଙ୍ଗଳ ଉତ୍ସବ ଶୁଣିଲେକ ତହିଁ । କୃଷ୍ଣ
ପୁଛନ୍ତେ । କହନ୍ତି ବଦ୍ୟନ ସୁବଳ । ଯାହା ବାଞ୍ଛା କରୁଥିଲ ତୁମ୍ଭ
ମନେ ସୁଲଭେ ଏବେ ତା ପାଇଲ । ।୬୫।

ଚତୁର୍ମାସ୍ୟା ଗୁରୁବାରେ ସିଦ୍ଧଶିଳା ଶ୍ରୀମତୀ କରିବେ ପୂଜନ ।
ତୁମ୍ଭେ ମିଳନ ହୋଇବେ ଅବଶ୍ୟ ଏପୌର୍ଣ୍ଣମାସୀଙ୍କ ବଚନ ।
ଶୁଣି ଆନନ୍ଦେ । ବଟୁକରକୁ ଧରି ହରି । ଶପଥ ଦେଇ ଉତ୍ସାହରେ
ସତେକି ବୋଲି ପୁଣ ପୁଣ ପଚାରି । ।୬୬।

ବଟୁ ବୋଲନ୍ତି ଅପ୍ରତେ ଯେବେ ହରି ଗିରିଶିଖରେ ଯାଇ ଦେଖ ।
ଏବଚନ ଶୁଣି କୁମାରମାନଙ୍କୁ ପ୍ରବୋଧ କରି ପଦ୍ମମୁଖ । କହନ୍ତି ତୁମ୍ଭେ ।
ତଳେ ରଖି ଥାଅ ଗୋଧନ । କନ୍ୟାଏ ଗିରିପୂଜନ୍ତି ଉପହାର ମାଗି
ମୁ ଆଣିବ ବହନ । ।୬୭।

ପୁଷ୍ପଙ୍କୁ ବୁଝାଇ ତୋଷେ ସ୍ୱବଶ୍ରାନ୍ତ ବେଣିମିତ୍ରଙ୍କୁ ଘେନ ସଙ୍ଗେ ।
ଉଠିଲେ ଗୋବର୍ଦ୍ଧନରେ ରାଧା ଅଙ୍ଗ ସଙ୍ଗମ ଇଚ୍ଛାକରି ରଙ୍ଗେ ।
ରାଧା ଗମନ । ପଥରେ ଯାନ୍ତି ଅନୁସରି । ଶ୍ରୀମତୀ ଅଙ୍ଗ ସଉରଭେ ।
ଭ୍ରମର ସମୂହ ଧାବନ୍ତି ଝଙ୍କାରି । ।୬୮।

ତରଳ ପାଷାଣ ଶ୍ରୀମତୀଙ୍କ ପଦ ଚହ୍ନ ପଡିଅଛି ଦେଖିଲେ ।
ଶ୍ରୀମତୀ ସେସମୟେ ତୁଳସୀ ବୃକ୍ଷତେ ଶ୍ରୀକୃଷ୍ଣଙ୍କୁ ଅସି ଦେଖିଲେ ।
ଉନବଂଶତି । ଚହ୍ନକୁ ଚାହିଁ ଯେ ଶ୍ରୀହରି । ପ୍ରଦକ୍ଷିଣ କରୁ ତୁଳସୀକି
ଦେଖି ଇଙ୍ଗିତେ ବଚନ ପଚାରି । ।୬୯।

ଗିରି ଶିଖରେ ତୁଳସୀକି ବୋଲିଣ ଶ୍ରୀକୃଷ୍ଣ ଆନନ୍ଦରେ ହସି ।
ତୁଳସୀ ବୋଲେ ପରିକ୍ରମା କରୁଛ ସଙ୍ଗତରେଟି ଅଛୁ ମୁହିଁ ।
କୃଷ୍ଣ ବୋଲନ୍ତି । ତୁହି ମୋର ଶିର ଭୂଷଣ । କୃଷ୍ଣ ତୁଳସୀବୋଲି
ଲୋକେ ପ୍ରଶଂସା ହୋଇବ ଏ ନିଷ୍ଟେ ଜାଣ । ।୭୦।

ଶ୍ରୀକୃଷ୍ଣ ବୋଲନ୍ତି ଯେଉଁ ପାଦପଦ୍ମ ମାଗିଲେ ନପାଇଲି ମୁହିଁ ।
ସେ ପାଦ ଏବେ ଗିରିଶିଖେ ଜାହ୍ନବୀ ଦେଇଛ ଅଛି ସ୍ନେହ ବହି ।
ପୁଣ୍ୟବନ୍ତ ଏ । ଅଟଇ ଧନ୍ୟ ଗରିବର । ନିଷ୍ଟେ ମୁହିଁ ଏବେ
ଗୋବର୍ଦ୍ଧନକୁ ଧରିବ ନେଇଁ ଶିରପର । ।୭୧।

କୋମଳ ପାଦପଦ୍ମ ବଥାଉଥିବ ଏ ଗିରିବରେ ଉଠିବାରେ । କ୍ଷଣେ ମୁ ବସି ମଞ୍ଜାଳିବ ତୁଳସୀ ମିଳାଥ ବନ୍ଧୁଙ୍କ ସନ୍ନିରେ । ବହି ଏମନ୍ତ । ଶ୍ରୀମଣ୍ଡ ପାଶେ ଯାଇ ଦେଲେ । ନିକଟେ ଦୋଳେ ମଦେ ବସି ସଖେମେ ଦୁହେଁ କଣ୍ଠାକ୍ଷରେ ଗୁହିଁଲେ । । ୭୨ ।

ଶର ବଚ୍ଛେଦ ସନ୍ତାପ ମନୁ ତେଜି ଜଳରେ ଜଳଥିଲେ ମିଣି । ସ୍ୱର୍ଣ୍ଣ ମଧେ ମରକତ ନାୟିକ ପ୍ରାଏ ଅଛି ଶୋଭାଛି ପ୍ରକାଶି । ଅତି ଆନନ୍ଦେ । ରସିକ ନାଗର ନାଗରୀ । ଠାବେ ଠାବେ ବୁଲି ପୁଷ୍ପମାଳ ତୋଳି ଗିର ବନ୍ଧାର ରଙ୍ଗେ କଣ । । ୭୩ ।

ଗୁନ୍ଥି ପୁଷ୍ପମାଳା ଅନ୍ୟୋନ୍ୟରେ ଗଳା ଲମ୍ବାଇ ରାଧା ବନମାଳୀ । ବନ୍ଧ ଯାବୁ ରଙ୍ଗ ଶୋଭେ ଉରରେ ଲେଖନ୍ତି ପ୍ରେମ ପଞ୍ଚାଳୀ । ଦୋଳ ପ୍ରବେଶ । ଏକ ଅଙ୍ଗେ ନାନା ମତେ । ପାଷାଣ ପୀଠ ତଲ୍ ସମ ଚକ୍ଷଣ ଗୁହିଁ ବସନ୍ତ ତୋଷ ଚକ୍ଷେ । । ୭୪ ।

ବୀଣା ବାଦନ ସଙ୍ଗୀତ ରାଗ ମାନ ଆଳାପ କରନ୍ତି ଗାୟିଣୀ । ନୃତ୍ୟ କରନ୍ତି ନୃତ୍ୟକାରେ ଯେଯାହା ସେବାରେ ସକଳ ତରୁଣୀ । ରାଧା ମାଧବ । ବକ୍ରରେ କୁସୁମ ଶଯ୍ୟାରେ । ଛାଣି ବୃନ୍ଦାବନ ସମ୍ପାଦି ଅଛନ୍ତି ଲୀଳା ବଧାନ ମନୋବାଦରେ । । ୭୫ ।

ଶୟନ କର ଶ୍ରୀମଣ୍ଡ ସଙ୍ଗେ ଦଇ ଝଗି ସଙ୍ଗମୀ ଅଷ୍ଟଦିଗେ । ବନ୍ଧ ଦାମ ବଳା ରଙ୍ଗେ ବନ୍ଧାଇ ରାଧାମାଧବ ଏକ ଯୋଗେ । ଅତି ପ୍ରେମରେ । ପ୍ରିୟସଖୀ ଜାନୁରେ ବସାଇ । ପୀଠ ପଲଙ୍କ ସିଂହାସନେ ବଦଳ ବେଶ କରନ୍ତି ବସି କାହିଁ । । ୭୬ ।

କେବଳ ସ୍ନାନେ ବୃନ୍ଦେ ବସି ବସାଇ ବନ୍ଧୁ ସ୍ଥଳ ବେଢ ପାଶେ । ସଂଯୋଗି ସଖୀଗଣ ଦେନ୍ତି ଶ୍ରୀମଣ୍ଡ ପରଷନ୍ତି ଅତି ହରଷେ । ଅମୃତ ସମ । ମିଷ୍ଟାନ୍ନ ଅଣିଥିଲେ ଯେତେ । କର୍ପୂର କେଳ ରସାବଳୀ ଅମୃତ ଭୁତ ସର ପୋଳ ସହିତେ । । ୭୭ ।

ବିବିଧ ପୁଷ୍ପ ଶିଖଣ୍ଡିଣୀ ସଯୋଗି ରନ୍ଧ୍ର ଝରଣରେ ବାସ ପାଣି ।
ବେଣୀ ସଖୀଙ୍କୁ ସଙ୍ଗେ ସେନ ଅତିହିଁ ତୋଷେ ଭୁଞ୍ଜନ୍ତି ବେଣୁପାଣି ।
ବୃନ୍ଦା ସଖୀଦି । ଦିଅନ୍ତି ଯେତେ ଦ୍ରବ୍ୟମାନ । ମାନସ ହରଷେ ଶ୍ରୀମତୀ
ସଙ୍ଗରେ ପରସନ୍ତି କୃଷ୍ଣେ ଯତନ । ।୭୮।

ଭୋଜନ ଅନ୍ତେ ଆଚମନ ସାରଯେ ଭୁଞ୍ଜନ୍ତି ଶ୍ରୀକୃଷ୍ଣ ତାମ୍ବୂଳ ।
ଅବଶେଷ ତୋଷେ ଭୁଞ୍ଜନ୍ତି ଶ୍ରୀମତୀ ସଙ୍ଗତେ ସେନ ସଖୀ ମେଳ ।
ଘୋଟି ଆକାଶେ । ଏକାଳେ ବରଷିଲେ ମେଘ । ନବୃତ କୁଞ୍ଜେ
ରାଧାକୃଷ୍ଣ ପ୍ରବେଶ ପ୍ରବଳ ଧାରା ଦଶଦିଗ । ।୭୯।

ବଜଏ ସୂର୍ଯ୍ୟକାନ୍ତ ଶିଳାରେ ରାଧା ମାଧବ ଏକ ମେଳ ହୋଇ ।
ସ୍ଥାନେ ସ୍ଥାନେ ସଖା ସଖୀଏ ରହିଲେ ଜଳ ପବନେ ଭେଦନୋହି ।
ନବଜ ସନ୍ଧେ । ଗଳଇନାହିଁ ଜଳଧାର । ଖେଳନ୍ତି ସଖା ଶେଷ
ହୋଇନ୍ତେ ବରଷା କୁଞ୍ଜରୁ ହୋଇଲେ ବାହାର । ।୮୦।

ଗିରି ଶୃଙ୍ଗେ ଉଠି ଅତି ଆନନ୍ଦରେ ଚଉଦିଗକୁ ଦେଇ ଦୃଷ୍ଟି ।
ଅଗରୁ ଉଳେ ଝଟିକ ଗୃହକୁ ଶିଳେ କୋଳରେ ବସାଇ ବମ୍ଭୋଷ୍ଠି ।
ପୁଣି ଅଙ୍କରେ । ଅଙ୍ଗକୁ ସ୍ୱେଦରେ ମିଶାଇ । ଦିଗ ବାଉ ଶ୍ରୀମତୀଙ୍କି
ଅଞ୍ଚଳରେ ଦେଖାନ୍ତି ସମସ୍ତ ଚହ୍ଲାଇ । ।୮୧।

ପୁଣି ଉପବନ ଗତି କେଳି ସ୍ଥାନ ଦେଖନ୍ତି ଉତ୍ସାହ ମାନସେ ।
ପୂର୍ଣ୍ଣ ବିବିଧ ଲୀଳାମାନ ରଚିଲେ ରୁଚିର ସ୍ଥାନେ ସ୍ଥାନେ ତୋଷେ ।
ଜଳ ବିହାର । ଏରୂପେ ବରଷା କାଳରେ । ଏମନ୍ତେ ଦିନାନ୍ତେ
ସବୁରୁ ଓହ୍ଲାଇ ମିଳିଲେ ସଖୀଙ୍କ ସଙ୍ଗରେ । ।୮୨।

ସିଦ୍ଧ ଶିଳାଙ୍କ ଭୋଗଦ୍ରବ୍ୟ ଗୋପାଳେ ଭୁଞ୍ଜିଲେ ଅତି ଆନନ୍ଦରେ ।
ଗାବ ଅଜାଇ ସଙ୍ଗରେ ପୁରେ ଯାଇ ମିଳିଲେ ଯେଯାହା ମନ୍ଦିରେ ।
ସଖୀ ସଙ୍ଗତେ । ଶ୍ରୀମତୀ ପୁରରେ ପ୍ରବେଶ । ସୁଦଶା ବ୍ରତ ପଜିବାରୁ
ଜଟିଳା ଦେଖି ଅତିଶୟ ହରଷ । ।୮୩।

ଏଥିଅନ୍ତେ ବରଷା କାଳେ ଘନ ଘଟା ଘନଶ୍ୟାମ ଯାଇ ଶୋଭିତ ।
ପଲଙ୍କରେ କୃଷ୍ଣ ଶୟନ କରନ୍ତେ ଛାପ କଲେ ପଦ ସେବନ ।
ଶୁଣ ସୁଜନେ । ଆଷାଢ଼ ମାସ ହେଲା ଶେଷ । ବଳଦେବଙ୍କ
ଜନ୍ମନକ୍ଷତ୍ର ଶ୍ରାବଣ ପୂର୍ଣ୍ଣିମା ହୋଇଲା ପ୍ରବେଶ । ।୮୪।

ବସୁଦେବ ସୁତ ହେବାରୁ ଗୃହେ ବହୁ ଉତ୍ସବ ବଢ଼ାଇଲେ ।
ମଧ୍ୟରେ ବଳଭଦ୍ର ରୂପେ ଯତନେ ପୂର୍ବ ମୁକ୍ତିକର ଲଭିଲେ । ଉଦ୍ଧି
ଉତ୍ସନ- । ସ୍ୱାମୀ କୁମରଙ୍କୁ କରାଇ । ମୃଗ ନାଭିକା ଚକ୍ଷୁ କର୍ଣ୍ଣ
ଗୃହରେ ଘଣ୍ଟା ଶୋଭିବନ ଦିଶଇ । ।୮୫।

କହନ୍ତି ପୂଜିଲେ ଆନନ୍ଦେ ଧରଣୀ ଧର ଏ ବଳରାମ ଯେଣୁ ।
ଧରଣୀ ପୂଜନେ ଅତିହିଁ ଆନନ୍ଦ ହୁଅନ୍ତି ବଳଭଦ୍ର ତେଣୁ । ଦେଲେ
ଭିଆଇ । କଅଁଳା ବାଛୁରି ଗୋଠାଏ । ସମସ୍ତ ଗୋପଗଣ ମିଳି
ଅତିହିଁ ଆନନ୍ଦେ କଲେ ଛନ୍ଦେ ଛନ୍ଦେ । ।୮୬।

ନନ୍ଦ ଅଗ୍ରତରେ ଗର୍ଗଙ୍କ ପୂର୍ବରେ ବଳି ଯାଇ ଥିଲେ ଏମନ୍ତ ।
ତେଣୁ ଭିଆଣ କଲେ ଗୋପ ନଗର ସ୍ଥାପନ ମାନଙ୍କରେ ଛାଡ ।
ସର୍ବ ଗୋପାଳ । ହୋଇ ଆନନ୍ଦେ ଏକ ଯୁଣ୍ଡ । କୁଙ୍କୁମ ଚନ୍ଦନ
ବସ୍ତ୍ର ଅଳଙ୍କାରେ ସଜନେ ଶୋଭି ଗୋପଦାଣ୍ଡ । ।୮୭।

ଗମାକର ପୁଚ୍ଛ ପ୍ରଦେଶରୁ ଭଳି ଶିଙ୍ଗେ ସମସ୍ତେ ଭିଆନ୍ତି । ବାଦ
ଲଗାଇ ଯେ ଯାହା ପରାକ୍ରମ ଏବଂ ଆବେଗରେ ଦେଖାନ୍ତି । ବରଷ-
କରେ । ଦିନେ ଯେ ଗମା ହୋଇଥାଇ । ଶିଶୁ ମୁଣ୍ଡରେ ପାଦ
ଦେଇ ଜିଣନ୍ତି ସକଳ ଲୋକେ ଏହା କହି । ।୮୮।

ରାମ ଗୋବିନ୍ଦ ଗୋପାଳଙ୍କ ମେଳରେ ଗମା ଭିଆନ୍ତି କୁତୂହଳେ ।
ଘରେ ଘରେ ଇଷ୍ଟ ବନ୍ଧୁ ଓ ଜନଗଣ ଗୋପରେ ଉତ୍ସବ ପ୍ରବଳେ ।
ଶୁଣ ଏମନ୍ତେ । ଶ୍ରାବଣ ମାସ ହେଲା ଶେଷ । ଭାଦ୍ରବ ଅଷ୍ଟମୀ
ରୋହିଣୀ ଶ୍ରୀକୃଷ୍ଣ ଜନ୍ମ ନକ୍ଷତ୍ର ପ୍ରବେଶ । ।୮୯।

ନନ୍ଦ ମନ୍ଦିରେ ମଙ୍ଗଳ ମହୋତ୍ସବ ନିମନ୍ତ୍ରି ସୁହୃଦ ବାନ୍ଧବେ । ଉପନନ୍ଦ ବସୁନନ୍ଦ ବୃଷଭାନୁ ଯେତେକ କୁଳ ବୃଦ୍ଧ ସର୍ବେ । ଅଭିମନ୍ୟୁ ଯେ । ଗୋବର୍ଦ୍ଧନ ମଲ୍ଲ ସହିତେ । ଶ୍ରୀ ପୌର୍ଣ୍ଣମାସୀ ସହିତରେ ମୁଖରା ଜଟିଳା ଶ୍ରୀମତୀ ସଙ୍ଗତେ । ॥ ୯୦ ॥

ସୁଗନ୍ଧି ଅତି ଆନନ୍ଦରେ ଲଳିତା ଆଦି ଯେତେକ ପ୍ରିୟସଖୀ । ବୀଗ୍ର ବୃନ୍ଦାବଣୀ ଯେନ କନ୍ଦୁମଣି ପ୍ରବେଶ ହୋଇଲେ ନାହିଁ ମୁଖୀ । ନନ୍ଦ ମନ୍ଦିରେ । ସମସ୍ତେ ମିଳ ଘୋଷ ମତି । ଅନୁରୂପରେ ଗଉରବ ପାଇଲେ ବଧୂଗଣ ସଙ୍ଗେ ଶ୍ରୀମତୀ । ॥ ୯୧ ॥

ବନସ୍ତେ କହି ରାଧାଙ୍କୁ ଯଶୋବତୀ ରନ୍ଧନ ଶାଳେ ନିଯୋଜିଲେ । ସ୍ନାନ କରାଇ କୃଷ୍ଣଙ୍କୁ ଉତ୍ତମ ଆସନେ ନେଇଁ ବସାଇଲେ । ବସ୍ତ୍ର ମନ୍ତ୍ରରେ । ପିନ୍ଧିଲେ ବସ୍ତ୍ର ଅଳଙ୍କାର । ବରୁଣାଦି ପୂଜା କରି ସ୍ୱସ୍ତ୍ୟୟନ ନୀତି ବଢ଼ାଇ ଦ୍ୱିଜବର । ॥ ୯୨ ॥

ବହଥ ବାଦ୍ୟ ଉତ୍ସବ ଆନନ୍ଦରେ ବଜାନ୍ତି ଯେ ଶଙ୍ଖ କାହାଳ । ସଧବା ଯୁବତୀଗଣ ମିଳି ଅର୍ଘ୍ୟ ବନାଇଦେନ୍ତି ହୁଳହୁଳି । ଦୁବ୍ବା ଅକ୍ଷତ । ଢାଳନ୍ତି କୃଷ୍ଣ ଶିରେ ନେଇଁ । ଘୃତ ଦୀପାବଳୀ ଯେନ ଯେ ବନ୍ଦାନ୍ତି ନାରୀଙ୍କ ମଧ୍ୟେ ରାଧା ଥାଇ । ॥ ୯୩ ॥

ଇଷିତ କଟାକ୍ଷେ ଗୃହିଁବା ରଙ୍ଗିମା କୃଷ୍ଣ ଅଙ୍ଗେ ବାଧେ ମଦନ । ଦେଖି ଶ୍ରୀକୃଷ୍ଣ ସ୍ୱସ୍ତ୍ୟୟନ ସମସ୍ତେ ସଫଳ କଲେକ ନୟନ । ନନ୍ଦ ହରଷେ । ଦେଲେ ବିପ୍ରଙ୍କୁ ବହୁ ଦାନ । ଭିକ୍ଷୁକେ ଅନ୍ନ ବସ୍ତ୍ର ଦେଇ କହିଲେ ମିତ୍ର ବାନ୍ଧବେ ସନମାନ । ॥ ୯୪ ॥

ଗୋପ କୁମରେ ଶ୍ରୀକୃଷ୍ଣ ସଙ୍ଗେ ବସି ଭୋଜନ କଲେ ହରଷରେ । ଭୋଜନ ଅନ୍ତେ ଆଚମନସାରି ଯେ ତାମ୍ବୂଳ ଭୁଞ୍ଜନ୍ତି ସୁଖରେ । କୁଳ ବୃଦ୍ଧଙ୍କୁ । ଯେନ ଭୁଞ୍ଜିଲେ ଘୋଷେ ନନ୍ଦ । ଭୋଜନ ସାରି କରଣ ଆଚମନ ତାମ୍ବୂଳ ଭୁଞ୍ଜିଲେ ଆନନ୍ଦ । ॥ ୯୫ ॥

କୃଷ୍ଣ ସ୍ୱନକ୍ଷତ୍ର ଉତ୍ସବରୁ ଦଶ ହଜଦି ଖେଳନ୍ତି ହରଷେ । ଅତି ଉତ୍ସବ ଗୋପରେ ଦେଖି ସ୍ୱର୍ଗେ ଦେବତାଗଣ ଅତି ତୋଷେ । ତୋ-ଷେପମସ୍ତେ । ଯେଯାହା ପୁରେ ପରବେଶ । ଏହି ଭଦ୍ରବ ଶୁକ୍ଳ ଅଷ୍ଟମୀ ବନ୍ଧା ଅନୁରାଧା ଋକ୍ଷ ପ୍ରକାଶ । ॥ ୯୬ ॥

ଉତ୍ସବ ବୃଷଭାନୁ ପୁରେ ହୁହିତା ଜନମ ସ୍ୱନକ୍ଷତ୍ର ଜାଣି । ନିମନ୍ତ୍ରି ବନ୍ଧୁ ବାନ୍ଧବଙ୍କୁ ଅତିହିଁ ଗଉରବରେ ପୁରେ ଆଣି । ନନ୍ଦ ସଙ୍ଗରେ । ରାମକୃଷ୍ଣଙ୍କୁ ଗଉରବେ । ରାଜାଙ୍କ ରାଣୀ କୀର୍ତ୍ତିଦା ଭୂଷାବସ୍ତ୍ର କୃଷ୍ଣଙ୍କୁ ବାତ୍ସଲ୍ୟ ସ୍ୱଭାବେ । ॥ ୯୭ ॥

କୀର୍ତ୍ତିଦା ଦେଖି ଆନନ୍ଦରେ ଲୋତକପୂର୍ଣ୍ଣ କଲେକ ବେନିଅଖି । ଧାତ୍ରିକ ଘେଣି ନେଇ ଅନ୍ତଃପୁରକୁ ହୋଇଲେ ଅତିଶୟ ସୁଖୀ । ଦିବ୍ୟ ଆସନେ । ନେଇଁ ଶ୍ରୀକୃଷ୍ଣଙ୍କୁ ବସାଇ । ସ୍ନେହେ ଶ୍ରୀମୁଖକୁ ନିରେଖି ବୋଲନ୍ତି ନିଜ ନନ୍ଦିନୀ ରୂପ ଗୃହି । ॥ ୯୮ ॥

ଏହାକୁ ଅଗ୍ରେ ଦେଖିଥିଲେ କଷ୍ଟ ମୁଁ କରନ୍ତି କୁମାରୀକ ବନେ । ଅତି ସୁନ୍ଦର ଏହାକୁ ପଠାନ୍ତର ଜଗତେ କେହୁ ଅଛୁ ବୋଲେ । ଅତି ସ୍ନେହରେ । ଯତନେ ସୁବେଶ କରାଇ । ଷଡ଼ରସରେ ଭୁଞ୍ଜାନ୍ତେ ରାଣୀ କୃଷ୍ଣ ଭୁଞ୍ଜନ୍ତି ନାହିଁ ଲାଜ ପାଇ । ॥ ୯୯ ॥

ରାଣ ପକାଇ ବୋଲନ୍ତି ଭୁଞ୍ଜ ବାବୁ ଯଶୋଦା ମାତାଙ୍କ ଶପଥ । ଉଦର ଭରି ଭୁଞ୍ଜିବାକୁ ତୁମ୍ଭର ଶରଧାଟି ଯେଉଁ ପଦାର୍ଥ । ସର୍ବ ସକ୍ଷାଦି । ଅଛନ୍ତି ଅମୃତ ଶ୍ରୀମଞ୍ଜ । ଶୁଣି ଶ୍ରୀକୃଷ୍ଣ ଲାଜେ ଲାଜେ ହରଷେ ଅଳପ ଅଳପ ଭୁଞ୍ଜନ୍ତି । ॥ ୧୦୦ ॥

ଯେବାକେ ରାଧା ମାଧବ ମନ ତୋଷ କେବଳହି ପାଇବ ମୁଖରେ । ସୁବାସ ଜଳେ ଆଚମନ ସାରିଲେ ଶ୍ରୀକୃଷ୍ଣ ମାନସ ସୁଖରେ । ତାଇ ଭଙ୍ଗିବା । ତାମ୍ବୁଳ ଦେଲେ କୃଷ୍ଣ କରେ । ଭୁଞ୍ଜି ଣ ଭିତରୁ ବାହାର ହୋଇଲେ ମନ ଅତିହିଁ ସାନନ୍ଦରେ । ॥ ୧୦୧ ॥

ବସିଲେ କୃଷ୍ଣ ଆସି ଗୋପ ସଭାରେ ବନ୍ଧୁ ସୁବଳ ମଧେ ହସି । ବୋଲନ୍ତି ଷ୍ପରୁ ପର ମଧୁପୁର ପାସୋର ଦେଲଉ ବିଶେଷି । ଶୁଣି ଗୋବିନ୍ଦ । ସଙ୍କୋଚ ଚିତ୍ତେ ମନେ ହସି । ଏଅନ୍ତେ କୃଷ୍ଣ ଭୋଜନ ଅବଶେଷ ରୂପରେ ଯଶୀ ନେଲେ ଆସି । ॥ ୧୦୨ ॥

ଭୋଜନ ସ୍ଥାନେ ଦେଲେ ତୋଷେ ଶ୍ରୀମନ୍ତ ଭୁଞ୍ଜନ୍ତି ଅତି ସ୍ନେହ ଚିତ୍ତେ । ଏଥକୁ ବୃଷଭାନୁ ବନ୍ଧୁ ବାନ୍ଧବ ତୋଷିଲେ ଗଉରବ ମତେ । ଦ୍ୱାର ବପନ । ଗନ୍ଧ ପୁଷ୍ପ ଯେ ଦେଲେ ନେଇଁ । ପୂଜା ଅନ୍ତେ ଗୋପବୃନ୍ଦ ଯେଯାହାପୁରେ ପ୍ରବେଶ ହେଲେ ଯାଇ ॥ ୧୦୩ ॥

ନଣା ମୁଖରେ ଗୋପେ ନନ୍ଦ ସଭାରେ କହନ୍ତି ଶ୍ରଦ୍ଧା ପୂର୍ବେ ମିଳି । ଜ୍ୟେଷ୍ଠା ନକ୍ଷତ୍ର ଶୁଭ ଯୋଗରେ ଇନ୍ଦ୍ର ଉତ୍ସବ ଯେ ହୋଇବ କାଲି । ମାହେନ୍ଦ୍ରବେଳେ । ଶୁଣିବା ହେଉ ଭୋଜରାଜ । ଅତି ଯତନେ କର ଭୂମେ ସ୍ଥାପନ କରିବ ପୁଣି ଇନ୍ଦ୍ର ଧ୍ୱଜ । ॥ ୧୦୪ ॥

ଶୁଣି ନନ୍ଦ ଉଦବେଗେ ପଚାରିଲେ ପୂର୍ବ ବଧାନ ପାଞ୍ଜି କାଢ଼ି । ବାସବ ଉତ୍ସବ ସମ୍ଭାର ମାନଙ୍କୁ କରନ୍ତି ସମ୍ପାଦନ ଲୋଡ଼ି । ନନ୍ଦ ଉଦ୍ବେଗ । ଶୁଣି କୃଷ୍ଣ ହସି କହନ୍ତି । ଅମ୍ଭ ଇଷ୍ଟ ଗୋବର୍ଦ୍ଧନ ଥାଉ ଏବେ କାହିଁ ପୂଜିବ ସୁରପତି । ॥ ୧୦୫ ॥

ଏବେ ଏ ଗିରି ପୂଜା କର ଇନ୍ଦ୍ରରେ କି କାର୍ଯ୍ୟ ଅଛଇ ଆମ୍ଭର । ଏ ଗିରି ତୃଣ ଲତା ଖାଇ ସୁରଭିଗଣେ ଅଧିକ ଦେଉନ୍ତି କ୍ଷୀର । ଶୁଣି ସକଳେ । ପାଳିଲେ ଶ୍ରୀକୃଷ୍ଣ ବଚନ । ଦୋପାଧିକୁ ଗାଇ ଅଗିଙ୍କି ସନ୍ନିରେ ଦିଅଇଲେ ପୁରେ ଘୋଷଣ । ॥ ୧୦୬ ॥

ଇନ୍ଦ୍ର ଉତ୍ସବ ପାଉଦିନ ଏ ଗୋବର୍ଦ୍ଧନ ଗିରିଙ୍କ ପୂଜା ହେବ । ଯହିଁକି ପ୍ରତି ଶତେଗୁଣ ଅଧିକ ଉପହାର ଦ୍ରବ୍ୟ ହୋଇବ । ଶୁଣି ଏମନ୍ତ । ଗୋପ ବୃନ୍ଦ ବୋଲେ କହନ୍ତି । ଏ ବଡ଼ ଅନୀତି ଇନ୍ଦ୍ର ଭୋଗ କେଉଁ ଗିରି ପୂଜିବା କରୁଅଛନ୍ତି । ॥ ୧୦୭ ॥

କେବୋଲେ ବାଳକ ବଚନକୁ ଘୋଷ ବୃଦ୍ଧ ନିକଟସ୍ଥ ଦଣ୍ଡର । ଇନ୍ଦ୍ରକୁ ବଇରୀ ହୋଇପୁଣି ଅମ୍ଭେ ପୂଜା କରିବା ଗିରିବର । କେହୁ ବୋଲଇ । କୃଷ୍ଣ ଅମ୍ଭର ବଳଆର । କଂସକୁ ଯାହାର ବଧ ନାହିଁ କିସ କରି ପାରିବ ବଜ୍ରଧର । ॥ ୧୦୮ ॥

ଏରୂପେ ଗୋପେ ଏକ ଆରେ କହନ୍ତି ରଜନୀ ଜାଗରେରହି । ପ୍ରଭାତୁଁ ନିତ୍ୟ କର୍ମ ସାରି ସମସ୍ତେ ଗିରି ପୂଜାକୁ ଶୀଘ୍ର ହୋଇ । ହୋଇ ସ୍ୱବେଶ । ଗୋପ ସକଳ ନର ନାରୀ । ଉପହାର ମାନ ଶକଟେ ଘେନାଇଁ କୁମରଗଣେ ରାମ ହରି । ॥ ୧୦୯ ॥

ବୃଦ୍ଧଗଣଙ୍କୁ ସଙ୍ଗତେ ଘେନ ନନ୍ଦ ଆଗେ ଚଲାଇ ଗୋପବୃନ୍ଦ । ଯାତ୍ରା ଉତ୍ସବେ ହୁଳହୁଳି ଦେଇଣ ଗୋପ ନାରୀ ଗଣ ଆନନ୍ଦ । ବାଦ୍ୟ ଅଦିରେ । ଗୃହବର୍ଗ୍ଗ ଯେ ଗଲେ ତହିଁ । ଅତି ଆନନ୍ଦ ମାନସ ହୋଇ ସର୍ବେ ଗୋବର୍ଦ୍ଧନର ପାଶେ ମିଳି । ॥ ୧୧୦ ॥

ଗିରି ଚଉପାଶେ ବେଢ଼ିଣ ସମସ୍ତେ ପ୍ରଣାମ କରି ସ୍ତୁତି ସ୍ତ୍ରୁତି । ଜୟ ମହୀଧର ଏ ଗୋପ ଉଦ୍ଧାର କାରଣେ ତୁମ୍ଭେ କୃପା ରାଶି । ଦେବ୍ୟ ମତେ । କରି ସମସ୍ତେ ଜଉଛାଳ । ଗିରି ପୂଜନେ ନନ୍ଦ ରାଜା ଆନନ୍ଦେ ଦିଅନ୍ତି କୁସୁମ ଅଞ୍ଜଳ । ॥ ୧୧୧ ॥

ବାଦ୍ୟ ବରଣ କରି କୃଷ୍ଣ କହିବା ମାର୍ଗେ ପୂଜିଲେ ଗିରିବର । ଗନ୍ଧ କୁସୁମ ଧୂପ ଦୀପ ନୈବେଦ୍ୟ ବିଧାନ ଅନେକ ପ୍ରକାର । କଲେ ସଯୋଗ । ସମସ୍ତ ଉପହାର ମାନ । ବହୁତ ସୂପକାର ମାନେ ରାନ୍ଧଣା କରି ଯେ କୁଢ଼ାଇଲେ ଅନ୍ନ । ॥ ୧୧୨ ॥

ରଚନା କରି ଅନ୍ନ କୂଟ ବିବିଧ ବ୍ୟଞ୍ଜନା ଲଢାପରି କରି । ଶିଖରୁ ଘୃତ ନଦୀ ବହେ ବିବିଧ ପୂପ ଶିଳା ସମ ବଗ୍ଧରି । ଚଉ ପାଶରେ । ବେଢ଼ି ପାୟସ ଜଳବନ । ପକ୍ୱ ଫଳକୁ ଫଳ ସମେ ଖଞ୍ଜିଲେ ଖୂଞ୍ଚି ଡ଼ାଳେ ଡାଳେ ଯତନ । ॥ ୧୧୩ ॥

ନାଗର ବନ ପର୍ବତ ତ୍ରିବଧରେ ଶ୍ରେଷ ଦେଲେ ଅତି ଯତନେ
ଏ ଗିରି ପୂଜା ସମ୍ଭାର ସମ ଅଉ ନାହିଁ ନୋହିବ ତ୍ରିଭୁବନେ ।
ବନସ୍ତୁ ମତେ । କହନ୍ତି ପୁଣି ନନ୍ଦରାଜା । ମଣୋହିଁ କର ସତ୍ତ୍ୱରେ
ଗିରିବର ଯେନ ଏ ସମସ୍ତଙ୍କ ପୂଜା । ॥ ୧୧୪ ॥
ନନ୍ଦାଣୁ ତୁମ୍ଭ ମନ୍ତ୍ର ବୀଜ, ଆମ୍ଭର ଭଗତି ଯେନ କୃପା କର ।
ଶୁଣି ଏମନ୍ତ ବାଣୀ ନନ୍ଦ ନନ୍ଦନ ଯେ ଅଟେ ସେହୁ ଗିରିବର । ଅତି
ମଭୁରେ । ବକ୍ଷ୍ୱରୂପକୁ ପ୍ରକାଶିଲେ । ଆକାଶେ ମସ୍ତକ ଲଗାଇ
ଯେ ଗିରି ଶିଖରେ ଯାଇଣ ବସିଲେ । ॥ ୧୧୫ ॥
ଅତି ବିଶାଳ ଲମ୍ବ କର ନୟନ ବେନକ ଶଶି ଦିବାକର । ତନୁ
ନବଜଳ ଘନ ଜିଣି ଶ୍ୟାମଳ ଦେଖି ଗୋପାଳେ ଭୟଙ୍କର । ବୁଜି
ନୟନ । କାତରେ ସମସ୍ତେ ପଳାଇ । ଏମନ୍ତ ଦେଖି ଭ୍ରାନ୍ତ ସେ
ପୁରୁଷ ନପାଅ ମନେ ଭୟ କେହି । ॥ ୧୧୬ ॥
ମୋହର ତନୁ ଲତାକୁ ବୁଝି ତୁମ୍ଭେ ମୋତେ ନ ପୂଜିଅନ୍ୟ ପୂଜ ।
ଗୋକୁଳ ଅରଣ୍ଟି ମାନଙ୍କୁ ମୁହିଁ ନାଶ କରଇ ମନେ ହେଜ ।
ଏବେ ତୁମ୍ଭେ ଯେ । ପାଇଲ ଏହୁ ସଦବୁଦ୍ଧି । ଶ୍ରଦ୍ଧା କରି ମୋତେ
ଯେବେ ପୂଜା କଲ ତୁମ୍ଭର ହେବ ସର୍ବସିଦ୍ଧି । ॥ ୧୧୭ ॥
ସାକ୍ଷାତେ ତାହା ବୁଝିବଇ ବୋଲିଣ କର ବଢାଇ ସବୁ ନେଇଁ ।
ଗୋପାଳ ଗଣ ଦେଖନ୍ତି ଅଗମ୍ଭିତେ ଏକାବେଳକେ ଦେଲେ ଖାଇ ।
ପଡି ଭୂମିରେ । କରନ୍ତି ସର୍ବେ ଦଣ୍ଡବତ । ଉଠି କର ଯୋଡି
ବୋଲନ୍ତି ଅପ୍ରାଧ କ୍ଷମା କର ପ୍ରଭୁ ତୁରିତ । ॥ ୧୧୮ ॥
ପ୍ରଭୁ କହନ୍ତି ଗୋପାଳଙ୍କୁ ଏମନ୍ତ ମେଘ ଗମ୍ଭୀର ଉଚ୍ଚନାଦେ ।
ଇନ୍ଦ୍ରକୁ ତୁମ୍ଭେ ଯେବେ ଡର ଆମ୍ଭଙ୍କୁ ଏ ବାକ୍ୟ ପଢ଼ି ଟେକ ଊର୍ଦ୍ଧ୍ୱେ ।
ଶୁଣ ଆନନ୍ଦେ । ଧରି ଯେ ଥିବ ସାତ ଲୋକ । ମୋହର ଗର୍ବେ
ସର୍ବେ ଥିବ ବୋଲିଣ ଶରେ ତଉ ସମ ଶିଳେକ । ॥ ୧୧୯ ॥

ସେ ବାକ୍ୟ କହି ଗୁପତରେ ଅଦୃଶ୍ୟ ହୋଇ ନବଘନ ଶ୍ୟାମଳ ।
ପ୍ରଣାମ କରଇ ନନ୍ଦ ଆନନ୍ଦରେ ସଙ୍ଗେ ଘେନ ସବ ଗୋପାଳ ।
କଲ ଗଞ୍ଜନ । ଏରୂପେ ପୂଜି ସାତଦିନ । ଭାଦ୍ରବ ପୌର୍ଣ୍ଣମୀଦିନ
ଗୋବର୍ଦ୍ଧନ ଯାତ୍ରା ହୋଇଲାକ ସମ୍ପୂର୍ଣ୍ଣ । ॥ ୧୨୦ ॥

ପୁଣ ଖଣ୍ଡ କ୍ଷୀର ଦେଇଣ ଚିରକ ପରିକ୍ରମା କରି ସମସ୍ତେ ।
ମଙ୍ଗଳ ଉତ୍ସବ ସମ୍ଭାର ପୁରରେ ପ୍ରବେଶ ହେଲେ ଘୋଷ ଛତ୍ରେ ।
ଏମନ୍ତେ ଯଜ୍ଞ । ଭଗ୍ନ କର୍ଣ୍ଣକ ଇନ୍ଦ୍ର ଜାଣି । ସମ୍ବର୍ତ୍ତ ମେଘ ଘେନ
ଗୋପେ ଘୋଟିଲା ଅତି କ୍ରୋଧରେ ବଜ୍ରପାଣି । ॥ ୧୨୧ ॥

ବଜ୍ର ଝଂମକେ ଅଚଳ ଚମକଇ ଘୋଟି ପ୍ରଳୟ ମେଘ ମାଳ ।
ସାତ ସିନ୍ଧୁ ଜଳ ଘେନ ବରଷନ୍ତି ଭଷ୍ଟ ରୁଧିର ଶିଳା କୁଳ । ଭୟେ
ଗୋକୁଳେ । ବୋଲନ୍ତି ମଲାଇଁ ଏଥର । ଇନ୍ଦ୍ର ଉତ୍ସବ ଯଜ୍ଞ ଭାଙ୍ଗି
ଅର୍ଜ୍ଜିଲା ଫଳ ଏବେ ହେଲା ଗୋଚର । ॥ ୧୨୨ ॥

ଏମନ୍ତେ ଗୋପରେ କାତରେ ବୋଲନ୍ତି ରଖନ୍ତା ଭିନ୍ନ ପୁରେ
ନାହିଁ । କେ ବୋଲେ କାହାଁ ଡ଼ର ଆମ୍ଭ ଶ୍ରୀକୃଷ୍ଣ ଅଛନ୍ତି ବଳବନ୍ତ
ହୋଇ । ଏମନ୍ତେ ଲୋକେ । ଆକୁଳେ କହନ୍ତି ବଚନ । ଧଇର୍ଯ୍ୟ
କରି କୃଷ୍ଣ ତହିଁ କହନ୍ତି କେହି ନ କର ଭୟ ମନ । ॥ ୧୨୩ ॥

ଏମନ୍ତ ବେଳି ସଖ ତଳେ ଶ୍ରୀକୃଷ୍ଣ ମିଳିଲେ ଯାଇ ସଖାମେଳେ ।
ଅଛଇ ଶିଳା ଅତି ଉଚ୍ଚ କନ୍ଦାର ଚଉ ସମ ଅତି ମଣ୍ଡଳେ । ମିଳ ସୁ-
ବାହୁ । ବସନ୍ତ ଅର୍ଜ୍ଜୁନ କୋକିଳେ । କିଙ୍କିଣୀ ଉଜ୍ଜ୍ୱଳ ସ୍ତୋକ କୃଷ୍ଣ
ସଙ୍ଗେ ସପତ ସଖା ହୋଇ ମେଳେ । ॥ ୧୨୪ ॥

ସମସ୍ତେ ଶିଳାକୁ ତହିଁ ବେଢ଼ି ବସି ତର୍ଜ୍ଜନୀ ଅଙ୍ଗୁଳ ଲଗାଇ ।
ଗୋବର୍ଦ୍ଧନ ମୂର୍ତ୍ତି କହିବା ମନ୍ତ୍ରକୁ ପଢ଼ନ୍ତି ଏକ ଥରେ ତହିଁ ।
ଅଚଳ ରାଜ । ମନ୍ତ୍ର ଉଚ୍ଚାରିଲେ କୁମରେ । ସମସ୍ତ ଲୋକେ ଦେଖନ୍ତି
ଭେଢ଼େ ଶିଳା ଟେକିଲେ ସୋଏ ଅଙ୍ଗୁଳରେ । ॥ ୧୨୫ ॥

ସମସ୍ତେ ବୋଲନ୍ତି ଏ ସିନ୍ଧୁ ବଚନ ପ୍ରତ୍ୟକ୍ଷେ ଦେଖିଲୁ ଏଠାର । ଗିରିଙ୍କ ତୋଳ ଛତ୍ର ପ୍ରାୟେ ଧରିବା ଇନ୍ଦ୍ରକୁ କମ୍ପା ହେବେ ଡ଼ର । ଭର୍ଷି ପାଷାଣ । ଗିରି ତଳକୁ ସର୍ବେ ଗଲେ । ବୃଷ୍ଟ ଶବ୍ଦବାରେ ରେବନ୍ତି ରୁଷେ ଇନ୍ଦ୍ର ଅଜ୍ଞାରେ ମେଘମାନେ । ॥ ୧୨୬ ॥

ସ୍ଥଳପ୍ତ ଢ଼ାଳ ପ୍ରାୟେ ଶୋପେ ମୂଷଳ ପ୍ରାୟେ ବରଷେ ଜଳଧାର । ପବନ ଘାତେ ସ୍ଫୁର ପାଟେରି ଭାଗି ଦିବସ ଦିଶେ ନଶୀ ପରା । ମର୍ତ୍ତ୍ୟ ଭୟରେ । ଆକୁଳ ହୋଇ ବ୍ରଜବାସୀ । ସମୀପେ ଥାଇ କାହାକୁ କେ ନ ଦିଶେ ଗାଢ଼ ଅନ୍ଧାର ପରକାଶି । ॥ ୧୨୭ ॥

ଗୋରୁ ସକଳ ହମ୍ବା ରାବ କରିଣ ବଦନ ପୋତି ଶୀତେ ଥାଇଁ । ପୁରୁ ବାହାର ହୋଇ ସର୍ବେ କାତରେ ମିଳଲେ ଗିରିତଳେ ଯାଇ । ଉଚ୍ଚେ ବୋଲନ୍ତି । ହେ ଗୋବର୍ଦ୍ଧନ ଗୋପ ରଖ । ତୁମ୍ଭ ପୂଜନେ ସୁରପତି କ୍ରୋଧରେ ଗୋପାଳେ ଦିଏ ଏତେ ଦୁଃଖ । ॥ ୧୨୮ ॥

ଥରନ୍ତି ଚିନ୍ତି ଶୀତ ବାତେ ଡରନ୍ତି ନିର୍ଘାତ ବଜ୍ରପାତ ଶୃଙ୍ଗି । ଗିରିଙ୍କ ବେଢ଼ି ଯେ ଗୋକୁଳ ସକଳ ହରି ଧ୍ୟାନକ ଉଚ୍ଚେ ଦେଇ । ଦେଖି ଏମନ୍ତ । କରୁଣାସାଗର ଅଚ୍ୟୁତ । ସଖା ଏ ସୁବାହୁ ସୁବଳ ଉଜ୍ଜ୍ୱଳ ଅର୍ଜ୍ଜୁନ କୋକିଲ ବସନ୍ତ । ॥ ୧୨୯ ॥

ଶ୍ରୀକୃଷ୍ଣ ମିଶି ସାତଜଣ ସଭୃତେ ଗିରିଙ୍କ କଲେ ପ୍ରଦକ୍ଷିଣ । ଗତ ମଣ୍ଡରେ ବାନ୍ଧ୍ୟ ପଢ଼ି ଠେକଲେ ଗିରି ଉଠିଲାକ ତକ୍ଷଣ । କୁମର ଗଣ । ଯାହାକୁ ଏକା ମାତ୍ର ଧରି । ଶୁଭିଲୁ ମର୍ତ୍ତ୍ୟ ଘୋର ଧ୍ୱନି । ତୋଳିଲେ ଗିରିଙ୍କ ବାମ ଭୁଜେ ହରି । ॥ ୧୩୦ ॥

ଗିରି ଗର୍ଜ୍ଜି ଉର୍ଦ୍ଧ୍ୱେ ବଢ଼ିବାର ଦେଖି ଇନ୍ଦ୍ର ମନେ ହେଲୁ କାତର । ବଜ୍ର କରେ ଝମକାଇ ଅତି ଶୀଘ୍ରେ ପ୍ରହାର କରେ ଗିରି ପର । ଗୋବର୍ଦ୍ଧନରେ । ପଡ଼ିଛି କୃଷ୍ଣ ପଦଚିହ୍ନ । ଅନେକ ବଜ୍ର ହୋଇଛନ୍ତି ଉପୃତି ଦେଖି କୁଳିଶ ଭୟ ମନ । ॥ ୧୩୧ ॥

ବଜ୍ର କରକୁ ନଆସନ୍ତେ ବାସବ କୋପେ ଅତିହିଁ ପ୍ରଜ୍ୱଳତ । ଜଗତି ପରେ ଥାଇ କଂସ ହସଇ ହୋଇ ଅତିହିଁ ତୋଷ ଚତ୍ତ । କନା କାର୍ଯ୍ୟରେ । ମୋହର ମର୍ଦ୍ଦା ବୀରେ ମଲେ । ହୋଇଲେ ଅତି ଉତପାତ ଗୋପାଳେ ଅନାୟୁସରେ ନାଶ ଗଲେ ॥ ୧୩୨ ॥

ଛତ୍ର ଆକାରେ ଧଇଲେ ଗିରି ହରି ଗୋପାଳେ ସୁଖେ ତଳେ ରହି । ସମସ୍ତେ ରନ୍ଧନ କରି ଭୁଞ୍ଜି ତୋଷ ଗୋକୁଳେ ତୃଣାଙ୍କୁର ଖାଇ । କୃଷ୍ଣ ଶ୍ରୀକରେ । ଯଶୋଦା ଦେଖି ଗିରିବର । କୋମଳ କର ବଥାଇବ ବୋଲି ସେ ମନରେ ହୁଅନ୍ତ କାତର ॥ ୧୩୩ ॥

କନସ୍ଥ ହୋଇ ଗୋପାଳଙ୍କୁ କହନ୍ତ କ୍ଷଣେହେଁ ଗିରି ଥାଅବନ୍ଧି । ଶ୍ରୀକୃଷ୍ଣ କଷ୍ଟ ଭୋଜନ କରି ତୁମ୍ଭ ସଙ୍ଗତେ ଧରିବେକ ଯାଇ । ହୋଇ ଅଛୁ ଯେ । ଶ୍ରୀକୃଷ୍ଣ କାଲି ଉପବାସ । ବୋଲନ୍ତି ଗୋପାଳେ ଆମ୍ଭେ ଧରୁ ବଳେ ମନ୍ତ୍ର ବଳେ ପୁଣି ଉଶ୍ୱାସ । ॥ ୧୩୪ ॥

କୃଷ୍ଣଙ୍କୁ ଅତି ଶ୍ରମ ନାହିଁ ଭୋଜନ ଦିଅ ଗୋ ତୁମ୍ଭେ ତାଙ୍କମୁଖେ । ଶୁଣି ଯଶୋଦା ଅନ୍ନ ଆଣି ଦିଅନ୍ତି ଭୁଞ୍ଜିଲେ କୃଷ୍ଣ ଅତି ସୁଖେ । ସବ ସଖାଏ । ଏହିମତେ ଅନ୍ନ ଭୁଞ୍ଜିଲେ । ସେହି ଦିନରୁ ଶ୍ରୀହରି ଗୋପେ ଗିରିଧାରୀ ନାମକୁ ବୋଲାଇଲେ । ॥ ୧୩୫ ॥

କୁଳ ବୃଦ୍ଧ ବସି ନନ୍ଦଙ୍କୁ କହନ୍ତି ଅଦ୍ଭୁତ ଏ ତୁମ୍ଭ କୁମର । କାଳୀୟ ପିଣ୍ଡରୁ ଘଉଡ଼ି ବିନାଶ କଲେକ ମର୍ଦ୍ଦା ମର୍ଦ୍ଦା ବୀର । ଅତି ଆଶ୍ଚର୍ଯ୍ୟ । କରରେ ଧଇଲେ ପର୍ବତ । ଏତେ ପରାକ୍ରମବନ୍ତ ହୋଇ କରି ଆମ୍ଭ କୁଳରେ ହେଲେ ଜାତ । ॥ ୧୩୬ ॥

ନନ୍ଦ କହିଲେ ଗାର୍ଗବ ଋଷି ପୂର୍ବେ କହିଥିଲେ ମୋତେ ଏମନ୍ତ । ଏ କୃଷ୍ଣ ଅବନୀ ଭାରକୁ ନାଶିବେ ହୋଇ ଅତିହିଁ ବଳବନ୍ତ । ବିଷ୍ଣୁ ସମାନ । ବୋଲି ସେ ଯାଇ ଥିଲେ କହି । କଲ୍ୟାଣ କର ସମସ୍ତେ ଏବେ ତାକୁ ପ୍ରାଣେ ମାଛକ ଥାଉ ରହି । ॥ ୧୩୭ ॥

ଏମନ୍ତ ସାତଦିନ ହାତ ଧଇଲେ ପୁଷ୍ପ ପରାୟେ ଗିରିବର । ସାତ ସମୁଦ୍ର ପୂର୍ଣ୍ଣ ହେଲା ବରଷି ଧୂଷ୍ଟ ରହିଲେ ଜଳଧର । ଦିଶ ଆକାଶ । ସମସ୍ତ ନିର୍ମଳ ଦିଶିଲା । ସ୍ତୁକତ ଅଇରାବତ ରାଜ ହାତ ବାସବ ମାନଭଙ୍ଗ ହେଲା । ॥ ୧୩୮ ॥

ମାନସେ ବଗୃରେ ମନ୍ଦ କର୍ମ କଲି ହୋଇଛି କୃଷ୍ଣ ଅପରାଧ । ମୋହର ଗର୍ବ ଗଞ୍ଜିବାକୁ ଶ୍ରୀକରେ ଗିରି ଧଇଲେ କୃପାନିଧି । କ୍ରମ କ୍ରମରେ । ବୃଷ୍ଟି ନୁହଇ ଗୋବର୍ଦ୍ଧନ । ସ୍ୱର୍ଗରୁ ମତେ ଘଉଡି ଦେବେ ପରା ବାସବ ବଗୃରଇ ମନ । ॥ ୧୩୯ ॥

ଭାଗ୍ୟ ହତ ହେଲା ଏଥର ମୋହର ମୁକୁଟ ଶିରରୁ ଖସିଲା । ସ୍ୱର୍ଗେ ଆଉ କାହା ମୁଖ ମୁଁ ଗର୍ବିତ ବକ୍ର କରକୁ ନ ଆସିଲା । ଏତେବୋଲିଯେ । ଚିନ୍ତା କରଇ ମନେ ମନ । ବ୍ରହ୍ମାଣ୍ଡ କର୍ତ୍ତାକୁ ନ ଚିହ୍ନି ମୁ ଅତି ଗର୍ବରେ ହୋଇଲି ଅଜ୍ଞାନ । ॥ ୧୪୦ ॥

ମାନସ ଦୁଃଖେ ବଗୃରେ ହିନାଶିର କରୂପେ ଭେଟିବ ଶ୍ରୀହରି । ଏକାଳେ ଶ୍ରୀକୃଷ୍ଣ ଦର୍ଶନେ ସୁରଭି ଯାନ୍ତେ ତାହାକୁ ଦେଖି କରି । ପଡି ଚରଣେ । କହନ୍ତି ବନ୍ଧୁତ ବିନୟୀ । ଅପ୍ରାଧ କରଛୁ ଶ୍ରୀକୃଷ୍ଣ ସମ୍ମୁରେ ବେଠାଇ ଦିଅ ମୋତେ ଗତି । ॥ ୧୪୧ ॥

ଶୁଣି ସୁରଭି ଅତିହିଁ ହରଷରେ ଘେନି ଇନ୍ଦ୍ରକୁ ସଙ୍ଗତରେ । ଆକାଶ ମଣ୍ଡଳରୁ ଆସି ସତ୍ୱରେ ମିଳିଲେ ଶ୍ରୀବୃନ୍ଦାବନରେ । ବୃଷ୍ଟି ବହିନ । ନୁଅନ୍ତେ ଦେଖି ଶ୍ୟାମଘନ । ଉଚ୍ଚେ ଡାକ ଦେଇ କହନ୍ତି ଏଗିରି ତଳୁ ବାହାର ସର୍ବଜନ । ॥ ୧୪୨ ॥

ଗୋପାଳେ କୃଷ୍ଣ ବାଣୀ ଶୁଣି ଅତିହିଁ ସତ୍ୱରେ ବାହାର ହୋଇଲେ । ଯେ ଯାହା ମନ୍ଦିରକୁ ଯାଇ ଯତନ କରଣ ନିଷ୍ଟନ୍ତେ ରହିଲେ । କରୁ ଖଦାଇ । ଥୋଇଲେ କୃଷ୍ଣ ଗିରିବର । କ୍ଷୁଧାର୍ତ୍ତ ଦେଖି ଗୋରୁଙ୍କର ଯବେଣି ରୋଦନ୍ତି ଶ୍ରୀବୃନ୍ଦାବନର । ॥ ୧୪୩ ॥

ବାସବ ଏକାନ୍ତ ଦେଖି ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ଆସିଣ ମିଳିଲେ । ପ୍ରଣମି ରତ୍ନ ମୁକୁଟ ମଣି ଗଣେ ଶ୍ରୀକୃଷ୍ଣ ଚରଣେ ପୂଜିଲେ । ଶୋଭ ପାଇଲେ । ଶ୍ରୀକୃଷ୍ଣ ପାଦ ପଦ୍ମ ଯହିଁ । ଦେଖି ଇନ୍ଦ୍ରକୁ ଶୀଘ୍ରରେ ତୋଳି ଧରି କରୁଣାସାଗର ଶ୍ରୀହରି । ॥ ୧୪୪ ॥

କରଯୋଡି ସୁରଭିଙ୍କ ପଛେ ଥାଇ ସ୍ତୁତି କରଇ ସୁନାଶୀର । ଭୂଦେବ ସକଳ କାରଣ ଉତ୍ପତ୍ତି ସ୍ଥିତି ପ୍ରଳୟ ତୁମ୍ଭେ କର । କଲି ଅପରାଧ । କ୍ଷମା କରି ମୋତେ ଉଦ୍ଧାର । ତୁମ୍ଭର ମହିମା ଜାଣି ନ ପାରିଲି ଗର୍ବ ବଢ଼ି ନିଜ ମନର । ॥ ୧୪୫ ॥

ତୁହି ଏ ପ୍ରାଣ ପଞ୍ଚ ଭୂତ ତୋ ମାୟାବଳରେ ଏ ଜଗତଲୀଳା । ଭିନ୍ନ ଭିନ୍ନ ସ୍ୱରୂପରେ ଅନ ଅନ ସ୍ୱଭାବେ କରୁ ତହିଁ ଖେଳା । ତୋର ମହିମା । ନ ଜାଣି ମୁ ଅପରାଧ କଲି । ବାସବ ଗର୍ବ ହତ ହେଲା କରୁଣାକର ସୁରଭି ତହିଁ ବୋଲି । ॥ ୧୪୬ ॥

ବିରି ତେଇ ଗୋବୃନ୍ଦକୁ ରକ୍ଷା କଲ ତେଣୁ ତୁମ୍ଭ ନାମ ଗୋବିନ୍ଦ । ଅଭିଷେକ ନୃପ ବୋଲି ସୁରପତି ସ୍ତୁତି କଲେ ହୋଇ ସାନନ୍ଦ । ଶୁଣି ଏ ବାଣୀ । ପ୍ରସନ୍ନ ହେଲେ ବେଣୁଧର । ପାଦେ ସମସ୍ତ ସୁରଗଣ ଲୋଟିଲେ ହୋଇ ଅତିହିଁ ତୋଷବର । ॥ ୧୪୭ ॥

• ସୁରଭି ଆପଣା କ୍ଷୀରରେ କୃଷ୍ଣଙ୍କୁ ଆନନ୍ଦେ ଅଭିଷେକ କଲେ । ତୀର୍ଥ ଜଳ ଆଣି ଦିଗ ଦନ୍ତି ମାନେ ଗୋବିନ୍ଦ ମସ୍ତକେ ଢାଳିଲେ । କଳ୍ପ ପାଦପ । ମୂଳେ ରତ୍ନ ସିଂହାସନରେ । ସେବନ୍ତି ଦେବେ କୃଷ୍ଣ ତହିଁ ବସିଏ କରିଛନ୍ତି ତୋଷ ମନରେ । ॥ ୧୪୮ ॥

ସହସ୍ରେ କୁମ୍ଭ ଜଳ ଆଣି ବରୁଣ ଶ୍ରୀକୃଷ୍ଣ ଶିରେ ଢାଳନ୍ତି । କୁବେର ଅଳଙ୍କାର ଦେଲେ ପବନ ଆଲଟ ଚାମର ଢାଳନ୍ତି । ଚନ୍ଦ୍ର ଦର୍ପଣ । ସେନା ଅଗରେ ଉଭା ହୋଇ । ଗନ୍ଧ ଚନ୍ଦନ ଘନସାର ଅଶ୍ୱିନୀ କୁମାରେ ଲେପି ତୋଷ ହୋଇ । ॥ ୧୪୯ ॥

ଅମୃତ ଧନ୍ୱନ୍ତରୀ ଝଟ କୁସୁମ ବୃଷ୍ଟି କରନ୍ତି ବଳାହକ । ବୀଣା ନାରଦ ବଜାନ୍ତି ଯେ ମାଗଧ କଇବାର ଭଲ୍ଲ ପ୍ରାଜ୍ଞେ ଯେ । ଋଷି ଆଗରେ । ସ୍ତୁତି କରନ୍ତି ଶିଦ୍ଧ ମୁନି । ଗାୟନ କରେ ବଦନ୍ଧାଧରେ ଗନ୍ଧର୍ବେ ପଦ୍ମଗୃହକ ସେବା ଘେନି । ॥ ୧୬୦ ॥

ଇନ୍ଦ୍ର କନକ ଦଣ୍ଡ ଛତ୍ର ଶ୍ରୀକୃଷ୍ଣ ପାଶରେ ଧରି ଉଭା ହୋଏ । କରଯୋଡ଼ି ଧର୍ମ ପତ୍ନୀ ଯେସାହା ଗୃହାରି ଛାମୁରେ ଜଣାଏ । ମାହେନ୍ଦ୍ର ଯୋଗ । ଘୋଷେ କରନ୍ତି ବୃହସ୍ପତି । ଏମନ୍ତେ ସର୍ବ ଦେବ ମିଳି ଆନନ୍ଦେ କୃଷ୍ଣେ ଅଭିଷେକ କରନ୍ତି । ॥ ୧୬୧ ॥

ପାଦ ଭବକ ଶିରେ ବୋଳି ଆଜ୍ଞାକୁ ମାଗି ସ୍ୱର୍ଗେ ଦେବେ ଚଳିଲେ । ଗୋଧନ ଚରାଇ ଯେ ସ୍ଥାନେ ଏମନ୍ତ ସମସ୍ତେ ଗୋପାଳେ ମିଳିଲେ । ଅଭିଷେକର । ଦ୍ରବ୍ୟ ସମସ୍ତେ କଲେ ଛୁର । ଅମୃତ ଅଶନ ପାଇ ପାଦଜାତ ପୁଷ୍ପ ଲଭିଲେ ନେଇଁ ଶିର । ॥ ୧୬୨ ॥

ବୋଲନ୍ତି ଇନ୍ଦ୍ର ହାରି ପଶି ଶରଣ କୃଷ୍ଣଙ୍କୁ ପୂଜି ମିତ୍ର ହେଲା । ଏମନ୍ତେ ବୋଲି ବୋଲି ହୋନ୍ତେ ଗୋପାଳେ ଦିନ ଅବଶେଷ ହୋଇଲା । ଘେନି ଗୋଧନ । ପୁରେ ହୋଇଲେ ପରବେଶ । ସ୍ନାନ ସାରି ଭୋଜନ ଅନ୍ତେ ପଲଙ୍କରେ ପହୁଡ଼ି ପୀତବାସ ॥ ୧୬୩ ॥

ନାରଦ ନଳ କୁବେରଙ୍କୁ କହନ୍ତି ଶୁଣହେ ଧନପତି ସୁତ । ଏମନ୍ତେ ନନ୍ଦ ଯେ ଉଜାଗରେ ଥିଲା କରିଣ ଏକାଦଶୀ ବ୍ରତ । ଦ୍ୱାଦଶୀ ଦିନ । ରାତ୍ରହୁଁ ଉଠି ନନ୍ଦ ରାଣ । ପରିବାରଙ୍କୁ ସଙ୍ଗତେ ଘେନିଯାଇ ଯମୁନାରେ କଲେ ସ୍ନାନ । ॥ ୧୬୪ ॥

ବରୁଣ ରାଜା ଚର ଥିଲେ ନନ୍ଦକୁ ସତ୍ୱରେ ହରି ଘେନିଗଲେ । କୂଳେ ଦେଖନ୍ତି ଭୃତ୍ୟବୃନ୍ଦ ଜଳରେ ବୁଡ଼ି ପୁଣିହିଁ ନ ଉଠିଲେ । କହୁଥିବେଳେ । କେହି ନ ଦେଖିଲେ ନନ୍ଦଙ୍କୁ । ପୁରେ କହିଲେ ଯଶୋବନ୍ତ ଧାଇଁଲେ ଆକୁଳ ହୋଇଣ ମନକୁ । ॥ ୧୬୫ ॥

ସଙ୍ଗତରେ ଗୋପୀ ଗୋପାଳେ ଅଛନ୍ତି ମିଳିଲେ ଯମୁନାର କୂଳେ । ଜଳରେ ପଶିବା ଚରଣପଡ଼ିଛି ଅଛିବା ଚିହ୍ନ ନଦେଖିଲେ । କେହୁ ବୋଲଇ । ଢ଼ ଗୋ କ କର୍ମ ଅଛି ହେଲା । ନନ୍ଦ ଯମୁନା ଜଳରେ ବୁଡ଼ି ମଲେ ଏମନ୍ତ ଯୋଗ ପୁଣି ଥିଲା । ॥ ୧୫୬ ॥

କେ ବୋଲେ କୁମ୍ଭୀର ଗିଳିଲା କେ ବୋଲେ ସ୍ରୋତରେ ଅବା ଗଲେ ଭାସି । ଜାଲ ପକାଇ ନାନା ମତେ ଖୋଜିଲେ କାହାକୁ ନଦିଶି ତହିଁ ନଦିଶି । ଦେଖି ଯଶୋଦା । ଅକୁଳେ କରନ୍ତି ରୋଦନ । ସ୍ୱାମୀନାଥ ରାମକୃଷ୍ଣଙ୍କୁ ଏଣ୍ଡି ତୁମ୍ଭେ ଜଳରେ ଛାଡ଼ିଲ ଜୀବନ ॥ ୧୫୭ ॥

ଗୋବିନ୍ଦ ଜନନୀ ବିକଳ ଦେଖିଣ ଜଳେ ପଶି କର ଦେଖନ୍ତି । ଯୋଗବଳେ ଜାଣି ବରୁଣ ନେଇଛି ତା ପୁରେ ମିଳିଲେ ଝଟତି । ଦେଖି ବରୁଣ । ଶ୍ରୀକୃଷ୍ଣ ପାଦପଦ୍ମେ ପୂଜି । ସ୍ତୁତି କରଇ ପୁଣି ପୁଣି ଅଛିତିହିଁ ଅନନ୍ଦ ରସେ ମନ ମଜ୍ଜି । ॥ ୧୫୮ ॥

ବୋଲଇ ସ୍ୱାମୀନାଥ ଦୋଷ କ୍ଷମା କର ଅଣିଲ ଭୃତ୍ୟଙ୍କୁ ତୁମ୍ଭର । ଜଳରେ ଗାଢ଼େ ପଶନ୍ତି ଯେହୁ ତାଙ୍କୁ ଧର ଅଣନ୍ତି ଦୂତେ ମୋର । ଯେହୁ ଦ୍ୱାଦଶୀ । ବ୍ରତିଙ୍କ ତାକୁ ନ ବାଧଇ । ସୁପୁଣ୍ୟ ରାଶି ନନ୍ଦରାଣ ଦ୍ୱାଦଶୀ ବ୍ରତ କରଣ ଯେ ଅଛଇ । ॥ ୧୫୯ ॥

ଏହାଙ୍କ ଦରଶନ ଫଳୁ ତୁମ୍ଭର ପାଦ ପଦ୍ମରେ ପୂଜା କଲି । ପିତା ପୁତ୍ର ପାଦରେଣୁରେ ମୋପୁର ପବିତ୍ର ହେଲା ନିସ୍ତରିଲି । ବଜ୍ରଅଙ୍କୁଶ । ଚକ୍ର ଚିହ୍ନରେ ପ୍ରକାଶିତ । ରାକ୍ଷସେ ମୋପୁରେ ଯାଇ ନପାରିବେ ଦେଖି ଅଛିତିହିଁ ଭକ୍ତ ଚିତ୍ତ । ॥ ୧୬୦ ॥

ଏମନ୍ତ କହି ଜଳପତି କୃଷ୍ଣରେ ନନ୍ଦଙ୍କୁ ସମର୍ପିଲେ ଆଣି । ପୁତ୍ରଙ୍କୁ ଦେଖି ନନ୍ଦ ଅତି ବିକଳେ ବୁଡ଼ାଇ ଦେଲା ନେତ୍ରୁ ପାଣି । ଦେଖି ଶ୍ରୀହରି । ପିତାଙ୍କ ମନୁ ଚିନ୍ତା ହରି । ବରୁଣ ମନ ତୋଷି ଚଳିଲୁଁ ବାହାର ହୋଇଲେ ପିତା କର ଧରି । ॥ ୧୬୧ ॥

କୂଳରେ ପ୍ରବେଶ ହୁଅନ୍ତେ ସକଳେ ଦେଖିଣ ହୋଇଲେ ଅନନ୍ଦ । କେ ବୋଲେ ଜଳେ ବୁଡ଼ି ଥିଲେ ଯଉନେ ଲୋଡ଼ି ଅଣିଲେଟି ଗୋବିନ୍ଦ । ବୋଲେ କେତନ୍ହିଁ । ଦେବତା ରଖିଥିଲା କେଉଁ । ନାନା ମତେ ଲୋକେ ଅନନ୍ଦେ ଘୋଷିଲେ ପୁରେ ପ୍ରବେଶ ହେଲେଯାଇ ୧୬୨

ନାରଦ କହନ୍ତି ନଳ କୁବେରଙ୍କୁ ଏଥନ୍ତେ ଶୁଣ ମନ ଦେଇ । କଂସ ଅଦେଶ ଘେନି ଦିନେ ଅରିଷ୍ଟାସୁର ପ୍ରବେଶ ଗୋଷ୍ଠେ ଯାଇ । ତହିଁ କଲନ୍ତି । ଗୋବିନ୍ଦ ଗୋଦୋହନ ଲୀଳା । ଦ୍ଵିତ୍ଵ ଗାବ ପଛେ ଉନ୍ମତ୍ତେ ବୃଷଭେ କାମ ପୀଡ଼ିତେ ହୋଇ ମେଳା । ॥ ୧୬୩ ॥

ଗୋପାଳେ ଅନନ୍ଦ ହୋଇଣ ବୃଷଭମାନ ବାଛି ବାଛି ଯୁଝାନ୍ତି । ଯାହାର ବୃଷଭ ହାରଇ ସେ ଲଜ୍ଜା ପାଇ ମଉନରେ ରହନ୍ତି । ଛଳ କରଯେ । ଅପମାନେ ଯୁଝି ଗୋପାଳେ । ଗୋପ ଯୁବତୀ ଯୂଥ ଯୂଥ ହୋଇ ଯେ ପଥେ ଦେଖନ୍ତି କୁତୂହଳେ । ॥ ୧୬୪ ॥

ଗୋବିନ୍ଦ ବାହୁଯୁଦ୍ଧ ରଙ୍ଗେ କରନ୍ତି ମିଳି ଗୋପାଳଙ୍କ ସଙ୍ଗରେ । ଏକାଳେ ଅରିଷ୍ଟାସୁର ପ୍ରବେଶିଲା ଷଣ୍ଢ ରୂପ ହୋଇ ମାୟାରେ । କରେ ଗର୍ଜ୍ଜନ । ଅତି ବିସ୍ତାର କରି କାୟ । କକୁଦ ଆକାଶେ ଲାଗୁଛି ଦିଶଇ ସେ କପିଳାଦି ଗିରି ପ୍ରାୟ । ॥ ୧୬୫ ॥

ପାଦ ଘାତରେ ମେଦିନୀ କମ୍ପେ ପୁଚ୍ଛ ଟେକି ଧାଇଁବଇ କରି ରଜି । ଶୁଣି ଗୋପରେ ଅତି ଭୟ କରନ୍ତି କିବା ପ୍ରଳୟ ପଡ଼ପଡ଼ି । ଅଡ଼ା ବାଙ୍କରେ । କଲଇ ମସ୍ତକ ଲୁଆଇଁ । ଦେଖି ଗୋପାଳେ ଅରଡରେ ପଳାଇ ଲୁଚିଲେ କୃଷ୍ଣ ପଛେ ଯାଇ । ॥ ୧୬୬ ॥

ଶ୍ରୀକୃଷ୍ଣ ସୁବଳ ସଙ୍ଗେ ବାହୁ ଯୁଦ୍ଧେ ପ୍ରବେଶି ଗୋଦୋହନ ପାଶେ । ଷଣ୍ଢ ରଣକୁ ସାବଧାନ ଏଣେ ଯେ ବନ୍ଧୁଙ୍କୁ କହି ଉପହାସେ । ହୋଇ ଅଛନ୍ତି । ଗୋକୁଳ ଶରଣ ରକ୍ଷଣ । ପୂର୍ଣ୍ଣେନ୍ଦୁଁ ଦେବ ସ୍ତୁତିକି ପରମାର୍ଥି କାମିନୀଙ୍କ ପରେ ନୟନ । ॥ ୧୬୭ ॥

ଦକ୍ଷିଣ ନେତ୍ର ଅରିଷ୍ଟାସୁରେ ଦେଇ ଏରୂପେ ଅଷ୍ଟଅବଧାନେ ଗୋପାଳଙ୍କର ବଢ଼ନ୍ତି ଦେଖି ହରି ଆଗେ ଉଭା ହୋଇ ବହନେ ଉଛେ ଡ଼ାକନ୍ତି । ଆସରେ ଷଣ୍ଢାସୁର ବେଗେ । ଗୋକୁଳେ ଗୋପାଳଙ୍କୁ ବଧ କରୁଅଛୁ ଯୁଦ୍ଧ କର ତୁ ମୋର ସଙ୍ଗେ ॥ ୧୬୮ ॥

ରଣରେ ମରଣ ଛଳକୁ ଡରୁଛୁ ମାୟା ବୃଷଭ ରୂପ ଧର । ଶୁଣି ଅସୁର ଅତି ରୋଷେ ଶ୍ରୀକୃଷ୍ଣ ଅଙ୍ଗେ ଶିଙ୍ଗ ନେଇ ପ୍ରହାର । ହରି ସଭୁରେ । ଧଇଲେ ବେନି ଶିଙ୍ଗ ଭାର । ପଛକୁ ବଳେ ପେଲି ନେଲେ ଶ୍ରୀହରି ଯେ ବୃଷଭକୁ କେତେ ଦୂର । ॥ ୧୬୯ ॥

ପୁଣି ଷଣ୍ଢାସୁର ବଳେ ଶ୍ରୀକୃଷ୍ଣଙ୍କୁ ପେଲି ଆଣଇ ଅତି ରୋଷେ । ବଳୋମ ପ୍ରତିଲୋମ ରଣ ଦେବତା ଗଣେ ଦେଖୁଛନ୍ତି ଆକାଶେ । ପୁଣି ଅରିଷ୍ଟା- । -ସୁର କରଇ ଘୋର ରଡି । ପଛକୁ ବୁଲାଇ ଅନ୍ତରୀଳେ ନେଲେ ଶ୍ରମ ଶ୍ରମକେ ଝାଳ ଛଡି । ॥ ୧୭୦ ॥

ମେଦିନୀ କର୍ଦ୍ଦନ ହୋଏ ଧୂଳ ଉଡି ଅଦୃଶ୍ୟ ହୋଇଲା ଗଗନ । ଦେବେ ଶୂନ୍ୟେ ଥାଇ ଡ଼ାକନ୍ତି ଅସୁର ବଧ କର ହରି ବହନ । ଶୁଣି ଶ୍ରୀକୃଷ୍ଣ । ବଳେ ଫିଙ୍ଗିଦେଲେ ସଭୁରେ । ସତେ ଉଡାରେ ପଡି ପୁଣ ଉଠନ୍ତେ କୃଷ୍ଣ ଅଙ୍ଗେ ଶିଙ୍ଗ ପ୍ରହାରେ । ॥ ୧୭୧ ॥

ଛଟକେ ଶ୍ରୀକୃଷ୍ଣ ଭୂମିରେ ପକାଇ ଆଣୁ ଅଡ଼ରେ ବସି ମାଡ଼ି । ଉଦା ବଚନ ପ୍ରାଏ ଶିର ମୋଡ଼ନ୍ତେ ଅରିଷ୍ଟାସୁର ପ୍ରାଣ ଛାଡି । ଜ୍ୟୋତିଃ ପ୍ରକାଶି । ଗୋବନ୍ଦ ଦେହରେ ମିଶିଲା । ଦେବତାଗଣେ କୁସୁମ ବୃଷ୍ଟି କଲେ ଅବନୀ ମଙ୍ଗଳ ଦିଶିଲା । ॥ ୧୭୨ ॥

ଶ୍ରୀହରି ପରାକ୍ରମ ଦେଖି ଅତିହିଁ ଗୋପୀ ଗୋପାଳେ ହେଲେ ତୋଷ । ଗୋଧନ ଚରାଇ ଅତି ଆନନ୍ଦରେ ପୁରରେ ହୋଇଲେ ପ୍ରବେଶ । ପୁରେ ସମସ୍ତେ । ସ୍ୱାମେ ପରାକ୍ରମ କହିଲେ । ଅତି ବଳବନ୍ତ ଷଣ୍ଢାସୁର ଦୈତ୍ୟ ପ୍ରାଣ କୃଷ୍ଣ ଆଜି ହରିଲେ । ॥ ୧୭୩ ॥

ଗୋପ କନ୍ୟେ ଶ୍ରୀକୃଷ୍ଣଙ୍କୁ ପ୍ରଶଂସିଲେ ଏମନ୍ତେ କୃଷ୍ଣ ପୁରେ ଯାଇଁ ।
ସ୍ନାନ ପାନ ମଣୋହିଁ କି ବସାଇ ପଲଙ୍କେ ଶୟନରୁ ବସି । ଦାସୀ
ଚରଣ । ସେବା କରନ୍ତେ ହସି ଶେଷ । ଶଯ୍ୟା ଛାଡ଼ି ରାମକୃଷ୍ଣ
ଗୋଦୋହନେ ଗୋଷ୍ଠରେ ହୋଇଲେ ପ୍ରବେଶ । ॥ ୧୭୪ ॥

ଧେନୁ ଦୁହାଇଁ କ୍ଷୀରମାନ ବହାଇ ପୁରେ ପ୍ରବେଶ ହେବେ ଯାଇ ।
ସ୍ନାନ ଭୋଜନ ସାରି ଧେନୁ ଗୋଧନ ମିଳିଲେ ବୃନ୍ଦାବନେ ଯାଇ ।
ତାହିଁ ସନ୍ତରେ । ଗୋବର୍ଦ୍ଧନ ତଳେ ମିଳିଲେ । ନାନା ବିନୋଦ
ଲୀଳାମାନ କରନ୍ତ ରଜା ପ୍ରଜା ଖେଳ ଖେଳିଲେ । ॥ ୧୭୫ ॥

ରାମଙ୍କୁ ରାଜା କରି ସବୁ ଗୋପାଳେ ପ୍ରଜା ହୋଇଲେକ ତହିଁ ।
ଥୋକାଏ ଅଜ ବତ୍ସାଗୋରୁ ହୋଇଲେ କେତେହୁଁ ନ ଅଟଇଁ ଚୋର ହୋଇ ।
କୃଷ୍ଣ ତହିଁରେ । ହୋଇଲେ ପୁଣି ଦଣ୍ଡଧାରି । ମାୟାରେ ବ୍ୟୋମାସୁର
ଆସି ଯେ କାଳେ ଗୋପାଳ ରୂପେ ଖେଳେ ପଶି । ॥ ୧୭୬ ॥

ସମସ୍ତ ଗୋପାଳଙ୍କୁ ନେଇଁ ଚୋରାଇ ପର୍ବତ କୋଠରେ ପୂରାଇ ।
ଦୁଆରେ ପଥର ଦେଇ ପୁଣି ସେହୁଁ ଗୋପାଳ ଗଣରେ ମିଳଇ ।
ଏହି ରୂପେ ଯେ । ସବୁ ଗୋପାଳ ନେଲା ହରି । ଶେଷ ଦୁଇ ଚାରି
ରହି ବଳରାମ ଶ୍ରୀମୁଖରେ କହିଲେ ଗୁହାରି । ॥ ୧୭୭ ॥

ତୁମ୍ଭ ପରି ରାଜା ଥାଉ ଥାଉ ଏଥି ଚୋର ପ୍ରବଳ ଆସି ହେଲେ ।
ପରଜାଙ୍କର ଗୁହାରି ଶୁଣି ରାଜା ଏହି ରୂପରେ ଆଜ୍ଞା ଦେଲେ ।
ତୁମ୍ଭେ ଯେଯାହା । ପୁରରେ ନିଶ୍ଚିନ୍ତରେ ଥିବ । ତାହାର ଇଚ୍ଛାରେ
ଦୋଷାଧୂ ଯାଇ ଯେ ଚୋରକୁ ଧରି ଆଣି ଦେବ । ॥ ୧୭୮ ॥

ନୀଳ କୁବେର ନାରଦଙ୍କୁ ପୁଚ୍ଛନ୍ତି ଯେବାଳେ କୃଷ୍ଣ ଥିଲେ କାହିଁ ।
ମାୟା ଅସୁର ଗୋପାଳଙ୍କୁ ହରିଲା ଶୁଣି ନାରଦ ତୋଷେ କହି । ଶୁଣ
ସେଦିନ । ହୋଇ ଯେ ଥିଲା ଗୁରୁବାର । ପୂଜା ଅର୍ଥରେ ସେ ଦିନ
ଶ୍ରୀମନ୍ତ ଯେ ମିଳିଲେ ଗୋବର୍ଦ୍ଧନପର । ॥ ୧୭୯ ॥

ପ୍ରେମ ସଙ୍ଗତେ ଶ୍ରୀକୃଷ୍ଣ ଥିବା ଜାଣି ରାଧିକା ହରଷିତ ମନେ । ଗୋପାଳେ ଗୋବର୍ଦ୍ଧନପୁର ଅଛନ୍ତି ଶ୍ରୀକୃଷ୍ଣ ମିଳିବେ କେସନେ । ଧିଂବଗାଧି ସେ । ରାଧା ସ୍ୱବରେ ହୋଇ ଗଲା । ଖେଳ ଭଙ୍ଗର ଅନ୍ତର ହୋଇ ରାଧା ସଙ୍ଗତେ ଚଳେ ଯାଇ ଲୀଳା । ॥ ୧୮୦ ॥

ଦକ୍ଷିଣରସେ ଲୀଳା ଚଳେ ଶେଷେ ଅସ୍ତ ହୋଇଲେ ଦିନ-ଈଶ । କୃଷ୍ଣ ଅନନ୍ତ ଖେଳ ସ୍ଥଳେ ଶ୍ରୀମତ୍ତ ନିଜ ପୁରେ ହେଲେ ପ୍ରବେଶ । ଗିରି କୋଟରେ । ଗୋପାଳେ କହନ୍ତି ବଚନ । ରାକ୍ଷସ ହେଲା ଗୋପାଳ ସମସ୍ତ ଭଲ କହୁଅଛି ମୋହନ । ॥ ୧୮୧ ॥

ଶ୍ରୀକୃଷ୍ଣ ଜାଣି ନାହିଁବେ ଏ ଚରିତ ବନେ ଲୁଚିଥିବେ କାତରେ । ଏଥା କେମନ୍ତେ ଜଣା ଯିବ ଅମ୍ଭଙ୍କୁ ଉଦ୍ଧାର ହେବ ବନେ ସଭୁରେ । କୋଟେ ଗୋପାଳ । ହୋଇ ଏମନ୍ତ କୁହାକୁହି । ସଙ୍ଗ ଗୋପାଳଙ୍କ ବଚନକୁ ହେଜି କୃଷ୍ଣ ମିଳିଲେ ଉଦ୍ଧି ଯାଇ । ॥ ୧୮୨ ॥

ନିଜ ସ୍ୱରୂପକୁ ଧରି ସେ ଅସୁର ବେଗେ ଧାଇଁଲା କ୍ରୋଧଭରରେ । ଘୋର ଗର୍ଜନ କରି ଦୁଷ୍ଟ ରାକ୍ଷସ କୃଷ୍ଣ ଅଙ୍ଗେ ମୁଷ୍ଟି ପ୍ରହାରେ । ଅତି ଛଟକେ । ଅଙ୍ଗ ଛାଡିଲେ ଗୋପୀନାଥ । କେଶ ଧରି ଝାଡିବାରେ ଦ୍ୱାରେ ଥିଲା ପାଷାଣ ବାଡ଼ି ଧରି ହସ୍ତ । ॥ ୧୮୩ ॥

ଦ୍ୱାର ଫିଟନ୍ତେ ଗୋପସୁତେ ବାହାର ହୋଇଲେ ସମସ୍ତେ ଭୂତଳେ । ରାକ୍ଷସ କେଶ ଧରି ମୁଦ୍ରି ଭୂତଳେ ପ୍ରବେଶିଲେ ପ୍ରେମ ଅଗ୍ରତେ । ପୁଣି ଶ୍ରୀହରି । ଜଣାନ୍ତି ରାମଙ୍କ ସମ୍ମୁଖରେ । ବ୍ରେବେ ଏହି ଗୋରୁ ପଶୁ ମାନଙ୍କୁ ରଖିଥିଲା ଗିରି କୋଟରେ । ॥ ୧୮୪ ॥

ବଡ ମାୟାବୀ ଦୈତ୍ୟ ଏହୁ ଏହାକୁ କି ଦଣ୍ଡ ଦେବା ପଙ୍କାକର । ଦେଖି ବଳରାମ ବୋଲନ୍ତି କ୍ରୋଧରେ ଏ ମହାପାପୀ ପଶୁ ଚୋର । ପଶୁପ୍ରାଏକ । ଶିର ମୋଡି ଦିଅ ଏହାର । ବଳଦେବଙ୍କ ଆଜ୍ଞା ପାଇ ସଭୁରେ ଯତ୍ନେ ପେଷିଲେ ତାହାର । ॥ ୧୮୫ ॥

ତ୍ରିଷଣ ମାତ୍ର ଗୋଧନ ଘେନି କରି ରାମକୃଷ୍ଣ ପୁରେ ଆସନ୍ତି ।
ବଜାଇ ଶିଙ୍ଗା ନାଦ ଅତି ଉତ୍ସୁକେ ଗୋପାଳ ଯୋଏ ଘୋଷ ମତି ।
ହେଲେ ପ୍ରବେଶ । ଗୋପାଳେ ଯେଯାହା ସଦନେ । ଢକିଲେ କୃଷ୍ଣ
ବ୍ୟୋମାସ୍ତର ମାଇଲେ ଶୁଣି ଅନନ୍ଦ ପୁର ଜନେ । ॥ ୧୮୬ ॥

ଗୋପାଳେ କୃଷ୍ଣ ପୀରତି ଅନୁମତେ ଦେବା କରୁଥାନ୍ତି ନିରତେ ।
ଦାସ୍ୟ ବାତ୍ସଲ୍ୟ ସଖା ଭାବେ ମଧୁର ରସରେ ସେବ ଅନୁବ୍ରତେ ।
ଅତି ସ୍ନେହରୁ । ମୁହୂର୍ତ୍ତ ନପାରନ୍ତି ଷଣେ । ଏରୂପେ ପ୍ରେମ ବଳାଇ
ନିରନ୍ତରେ ସେବାକର କୃଷ୍ଣ ଚରଣେ । ॥ ୧୮୭ ॥

ଶ୍ରୀରାଧାକୃଷ୍ଣ ପଦ୍ମପାଦେ ମୋହର ନିରନ୍ତରେ ଥାଉ ମାନସ ।
ବୃନ୍ଦାବନଚନ୍ଦ୍ର ବିହାର ସମ୍ପୂର୍ଣ୍ଣ ହେଲା ନବରସ ପ୍ରକାଶ । ଘେନ
ସୁଜନେ । ମାନସ କରୁ ଅତି ସ୍ଥିର । ଜଗନ୍ନାଥ ନାରାୟଣ ଦେବ
ନୃପ କଲେ ଏହି ଲୀଳା ପ୍ରଚାର । ॥ ୧୮୮ ॥



## ତ୍ରୟୋଦଶ ପ୍ରକାଶ ॥

ରାଗ କନଡ଼ା ॥

ନମସ୍ତେ ଗୋକୁଳ ମଣ୍ଡଳ ଅଟବୀ ଜଗଜ୍ଜନନୀ ପଦ୍ମାସନୀ । ଶ୍ରୀକୃଷ୍ଣ ଶ୍ୟାମକୁଣ୍ଡ ନେତ୍ର ବେନି । କୁମୁଦ ଶ୍ୱେତ କୋକନଦ ରକ୍ତିମା ନୀଳ ଇନ୍ଦୀବର ତିନି ଯେ । ସୁନ୍ଦରୀ । ଗୋବର୍ଦ୍ଧନ ନାସିକା ଶୋଭା କର । ଚକ୍ରବାକ ସ୍ତନ ପରି ରୁଚିର । ଶ୍ୱାସ କି ମନ୍ଦ ମଳୟ ଗନ୍ଧ-ବହ ପାଟଳୀ ଶ୍ରୁତି ରୁଚିର ଯେ । ସୁନ୍ଦରୀ । ॥ ୧ ॥

କାଳିନ୍ଦୀ ତରଙ୍ଗ ଅଳକା ଅବଳୀ ପୁଷ୍ପ ହାସରେ ମନୋହର । ରଙ୍ଗ ଭୂମିକା ସୁରଙ୍ଗ ଅଧର । କୁନ୍ଦରଦନ ଅତ୍ୟନ୍ତ ରମଣୀୟ ପିକ ବଚନ ସୁସ୍ୱର ଯେ । ସୁନ୍ଦରୀ । ବୃନ୍ଦାବନ ନବ ତମାଳ ଲତା । କ୍ଷିତି ରମଣୀର ଗୁରୁ ଭ୍ରୂଲତା । ରାସସ୍ଥଳ ସ୍ଥଳ ପୁଲିନ ଜଘନ ପଦ୍ମ ଶ୍ରୀମୁଖ ଶୋଭିତା ଯେ । ସୁନ୍ଦରୀ ! ॥ ୨ ॥

ଶ୍ରୀକୃଷ୍ଣ ଭ୍ରମର ଆନନ୍ଦେ ଝଙ୍କାର କରନ୍ତି ସେ ମୁଖ ପଦ୍ମରେ । ମୁଁ ଯେ ଧ୍ୟାନ କରୁଅଛି ମନରେ । ସେ ରାସେଶ୍ୱରୀଙ୍କ ଚରଣେ ଶରଣ ମୁଁ ସେ ବିହାର ଧ୍ୟାନରେ ହେ । ମାନସେ । ହେଲା ନବରସ ପ୍ରକାଶ ପୂର୍ଣ୍ଣ । ନାରଦଙ୍କୁ ଧନପତି ନନ୍ଦନ । ପୃଚ୍ଛନ୍ତି ଏଥୁଅନ୍ତେ ହରି କି କଲେ କହ ହୋଇ ପରସନ୍ନ ହେ । ହେମୁନ । ॥ ୩ ॥

ଶୁଣି ନାରଦ ହୋଇ ଅତି ପ୍ରମୋଦ କହନ୍ତି ଗଦ୍ଗଦେ ଏମନ୍ତ । ଶୁଣ ସୁଚରିତ୍ରେ ଧନପତି ସୁତ । ଯେଉଁ ଲୀଳା ବ୍ରହ୍ମାଦିରେ ବନ୍ଦନୀୟ ମୁଁ କି କହିବ ସାମର୍ଥ ଯେ । ଚରିତ । ହେଲା ଏଥନ୍ତେ ବରଷା ଅନ୍ତର । ଶରତ ଋତୁ ଅତି ଶୋଭାକର । ଦିଶ ଆକାଶ ହେଲେ ଅତି ନିର୍ମଳ ପୂର୍ଣ୍ଣଚନ୍ଦ୍ର ସୁଧାକର ଯେ । ଶରତ । ॥ ୪ ॥

ପୁଲିନ ସୁନ୍ଦର ନଦୀ ସ୍ୱଚ୍ଛ ଜଳ ଭୂମି ହୋଇଲା ଶସ୍ୟ ଦାୟୀ ।

ଗୋପ ନବ କନ୍ୟା ଏ କାଳ ଗୃହିଁ । କାମ ଅବଶେ ପଥ ଜଗି ଏକାନ୍ତେ କୃଷ୍ଣଙ୍କୁ ଏମନ୍ତ କହି ସେ । କନ୍ୟାଏ । ଦେଖ ଶରତ ହୋଇଲା ପ୍ରବେଶ । କର କରୁଣା ଅହେ ପୀତବାସ । ସ୍ତବକୀ ଜୀବନ ଯିବ ପାଦଦ୍ୱନ୍ଦ୍ୱ ନପାଇଲେ ଘନରସ ହେ । ମୋହନ ॥ ୫ ॥

ଗୋବିନ୍ଦ ଗୋପକନ୍ୟାଙ୍କ ବାଣୀ ଶୁଣି ସଙ୍କେତ ଉତ୍କଣ୍ଠାକୁ ଜାଣି । କହେ ମୁରଲୀ ନାଦେ ବେଣୁପାଣି । ପୌର୍ଣ୍ଣମୀଦିନ ଶୁଣିଗଲେ କନ୍ୟାଏ ଅବଧି ଦିନକୁ ଜାଣି ସେ । ମଥୁରେ । ସଞ୍ଜି ବେଶ ବାସ ତପ ଶୁଭୁଷା । ଅତି ଉଦ୍ ବେଗ ହୁଅନ୍ତି ତରୁଣୀ । ଛନ୍ନେଛନ୍ନ ଚଞ୍ଚ ଅତିହିଁ ଚଞ୍ଚଳ ଫିଙ୍ଗଇ ବାସ କବରୀ ସେ । କନ୍ୟାଏ । ॥ ୬ ॥

ଗୋବିନ୍ଦ ତୂଣ ତୂଣନ୍ତି ନାରନ୍ତରେ ପାଶୁଳି ବାଧା ଲଭି ହୃଦେ । ପୁଣି ଉତ୍କଣ୍ଠିତା ଅତି ଆନନ୍ଦେ । ଶ୍ରୀକୃଷ୍ଣ ସଙ୍ଗକୁ ଉତ୍ସାହେ ମାନସ ହୁଅନ୍ତି ମନ ପ୍ରମୋଦେ ସେ । କନ୍ୟାଏ । ଏ ମନ୍ତ୍ରେ କୃଷ୍ଣ ବୃନ୍ଦା ବନରେ । ରାଧା ସଙ୍ଗେ ଭେଟ କୁଞ୍ଜ କୁଳରେ । ସଙ୍ଗେ ଯେତେ ସଖୀ ସଖୀଙ୍କି ବହାର କଲ୍ପ ପାଦପ ମୂଳରେ ସେ । ଶ୍ରୀହରି । ॥ ୭ ॥

କୁତୂହଳରେ ଶ୍ରୀକୃଷ୍ଣ ମନ ଜାଣି ଜଣାନ୍ତି ଶ୍ରୀମତୀ ଏମନ୍ତ । ମୋର ବନସ୍ତ ଯେତ ପ୍ରାଣନାଥ । ଧାଇଁ ଅଛନ୍ତି ଗୋପ କନ୍ୟା ତାହାଙ୍କୁ ହୋଇବା ସ୍ୱଦୟା ଉଚିତହେ । ମୋହନ । ଗୋକୁଳରେ ଯେତେ କୁଳଯୁବତୀ । ଦେଇ ସମସ୍ତେ ତୁମ୍ଭଠାରେ ମତି । ତୁମ୍ଭର ମୋର ପ୍ରୀତି ଶୁଣି ନସହି ଦିଅନ୍ତି ଅପକୀରତି ସେ । ମୋହନ । ॥ ୮ ॥

ସମସ୍ତେ ମିଳି ରାସ ରଙ୍ଗେ ବହିଲେ ବସ୍ତ୍ରେ ଧନକରତେ କେହି । କୃଷ୍ଣ ଶ୍ରୀମତୀ ବାଣି ଶୁଣି ତହିଁ । ତନୁରେ ଚନ୍ଦନ ଲେପିଲାପରାଏ ଅତିହିଁ ହରଷ ହୋଇଲେ । ମୋହନ । ପୁଣି ମଧୁରେ କହନ୍ତି ବଚନ । ଯେ ତୁମ୍ଭ ହିତ ସେ ମୋହିତ ଧନ । ଅଜ ସମ୍ପୂର୍ଣ୍ଣ ଚନ୍ଦ୍ର ଦଶି ଉଜ୍ୱଳ ମଞ୍ଜୁଳ ପୁଲିନ ବନରେ । ସୁନ୍ଦରୀ । ॥ ୯ ॥

ବସେ କର ସଙ୍ଗେ ଯେସନ ସଜନୀଙ୍କ ପୂର୍ଣ୍ଣ ରୂପ ରଙ୍ଗେ ବନ୍ଧିତ । ତାଙ୍କ ମାନସୁ ଲଜ୍ଜା ଦୂର କରି । ଏତେକହି ପୁରେ ଚଳିଲେ ଶ୍ରୀମତୀ ସଙ୍ଗେ ଯେସନ ସହଚରୀ ଯେ । ସେକାଳେ । କୃଷ୍ଣ ଅସନ୍ତି ଗୋଧନ ଅଡ଼ାଇ । ଦାଣ୍ଡେ ଦେଖନ୍ତି ଯୁବତୀ ଗୋଡ଼ାଇ । ଗୋଧୂଳି ସମୟେ ସଙ୍କେତ ରଚିତ ନେତ୍ରାନ୍ତେ ଶ୍ରୀହରି କହି ଯେ । ଏମନ୍ତ ॥ ୧୦ ॥

କୃଷ୍ଣ ପ୍ରୀତିରେ ମାନସକୁ ବଳାଇ ବନ୍ଦାନ୍ତି ଅଳତିକ ଗୋପୀ । କୁଚ ସୁବର୍ଣ୍ଣ କୁମ୍ଭ କୁମ୍ଭ ସ୍ଥାପି । ଚୂତ ପତ୍ର ପତ୍ରାବଳୀ ଅନୁରାଗେ କର୍ପୂର ଚନ୍ଦନ ଲେପିଦେଇ । ସୁନ୍ଦରୀ ! କୃଷ୍ଣ ଆସନ୍ତି ଚରାଇ ଗୋଧନ । ନଟବର ବେଶେ ନାଚ ମୋହନ । ପୀତବସନ ବନମାଳେ ସୁନ୍ଦର ନବ ପଲ୍ଲବେ ଶୋଭନ ସେ । ମୋହନ । ॥ ୧୧ ॥

ବିମ୍ବାଧରେ ରଙ୍ଗ ବଂଶୀକି ବଜାଇ ଆସନ୍ତି ଗୋପାଳ ମେଳରେ । ଦେଖି ଗୋପ ଯୁବତୀ ଏକାଳରେ । ବଂଶୀ ଧ୍ୱନିରେ ସଙ୍କେତକୁ ପାଇଲେ ସାଜି ତନୁ ମଣ୍ଡନରେ ସେ । ଗୋପୀଏ । ଏକାଳରେ ପୂର୍ଣ୍ଣ ଚନ୍ଦ୍ର ଉଦୟେ । ପଶ୍ଚିମରେ ଆଦିତ୍ୟ ରଙ୍ଗମୟେ । ହୀରାମାଣିକ୍ୟ ମଧ୍ୟେ ନୀଳ ନାୟକ କୃଷ୍ଣ ଅଙ୍ଗ ଶୋଭାମୟେ ସେ । କାଳରେ ॥ ୧୨ ॥

ବ୍ରଜେଶ୍ୱରୀଙ୍କି ପୂଜି ଗୋପୀ କୃଷ୍ଣଙ୍କ ପ୍ରସନ୍ନ ବରକୁ ପାଇଲେ । ମନେ ଅତିହିଁ ଆନନ୍ଦ ହୋଇଲେ । ଏଥନ୍ତେ ଶ୍ରୀକୃଷ୍ଣ ଗୋଧନ ଚରାଇ ଧୂରରେ ଯାଇ ମିଳିଲେ ସେ । ଯଶୋଦା । ଦେଖି ଅନ୍ନ ନାଉଣ୍ଡାଇ ହରଷେ । ସ୍ନାନ ଭୋଜନ ସୁବେଶ କରସେ । ନନ୍ଦୁକେ ଭୋଜନ ଅତିହିଁ ଉଛାହେ ମାନସ ବିସ୍କଳାଷେ ସେ । ମୋହନ ॥ ୧୩ ॥

ମାଏ ଯେ ରାଣୀକୁ ଧରାଇ ଖୁଆନ୍ତି ଛଠେକେ ବଡ଼ ପଦ୍ମେ ଦେଇ । ଆଚମନ ସାରିଲେ ଶୀଘ୍ର ହୋଇ । ତାମ୍ବୂଳ ଭୁଞ୍ଜି ହଂସତୁଳ ପଲଙ୍କପରେ ବସେକଲେ ଯାଇସେ । ମୋହନ । ଏସମୟରେ ହୋ-
-ଇଲା ପ୍ରଦୋଷ । ପୂର୍ବଦିଗେ ପୂର୍ଣ୍ଣଚନ୍ଦ୍ର ପ୍ରକାଶ । ପଦ୍ମିନୀ ମୁଦ୍ରିତ ଚନ୍ଦ୍ର

ବଇ ଲାଗି କୁମୁଦିନୀ ଏ ଉଲ୍ଲାସ ଯେ । ହରଷେ । ॥ ୧୪ ॥

ଚକୋର ଚଞ୍ଚୁ ନାସିକ ଅଳନ୍ଦରେ ସରସ ତରୁ ଲତା ଫୁଲ । କୁସୁମରେ ହୋଇ ଅତି ମଞ୍ଜୁଳ । ମଞ୍ଜୁ ଯାହା ଯେନ କୁସୁମଧ ନୂର ପ୍ରତାପ ହୁଏ ପ୍ରବଳ ଯେ । ଏକାଳେ । ଚନ୍ଦ୍ର ଅଧିକେ ପ୍ରକାଶି ଆସଇ । ବିୟୋଗି ଜନ ଧଇର୍ଯ୍ୟ ଧ୍ୱଂସଇ । ଜଗତ ନେତ୍ରାନନ୍ଦକ ଅବସାଦ ପଦ୍ମିନୀ ଦୁଃଖ ନାଶଇ ସେ । ସୁଧାଂଶୁ । ॥ ୧୫ ॥

ଏମନ୍ତ ଉଜ୍ୱଳ ରଜନୀକି ଗୃହିଁ ନାଗର ଚକ୍ରପାଣି । ଅଙ୍ଗ ଅଳସ ହୋଇ ଛନ୍ଦ ଛନ୍ଦ । ଏହି ସମସ୍ତ ଜାଣି ଜଗ କୁସୁମ ଶର ପ୍ରହାରେ ମଦନ ଯେ । ଏମନ୍ତେ । ମଧୁମଙ୍ଗଳ ସୁବଳ ବିହାନ୍ତି । ଅଙ୍ଗେ ସୁଧାଂଶୁ ବିଷ ହୋଏ ଝାଡ଼ି । ଅଙ୍ଗନା ଜାଙ୍ଗଳକ ବନା ଏ ବିଷ ହରିବାକୁ ନାହିଁ ଗତିହେ । ମୋହନ । ॥ ୧୬ ॥

ଶୁଣି ହରି ହସି ବନ୍ଧୁ ବରେ ବର ଦେଇ ଅଛିହିଁ ଆନନ୍ଦିତ । ବେନି ସଖା ସଙ୍ଗେ ହୋଇ ଏକାନ୍ତ । ବିକେ କହନ୍ତି କଥାକୁ ସିଦ୍ଧ କରି ପ୍ରଦୀପକୁ ବଳେ ହତ ଯେ । ସଖାଏ । ପୌର୍ଣ୍ଣମାସୀଅଷ୍ଟାରେ ଏକାଳରେ । ଜଣି ଦୀର୍ଘ ବାଟନ ମଞ୍ଜୁକରେ । ଯାଳନ୍ଦୀ ଅଦି ତୀର୍ଥ ନଦୀ ଯେତେକ ଶୋଭା ଅଛି ପ୍ରବନ୍ଧରେ ଯେ ।ଏମନ୍ତ ॥ ୧୭ ॥

ନନ୍ଦନ ମଦନ କୁମୁଦ ହାସରେ ମନ୍ଦାକିନୀବର ନେତ୍ର ଶୋଭା । ବୋଲକନ୍ଦ ଅଧର ରଙ୍ଗ ପ୍ରଭା । ମୃଣାଳ ଭୂଜା ତରଙ୍ଗ ରଙ୍ଗୀ ଏକ ଗୃମର ନ୍ୟାକନ୍ତ ଅବାଯେ । ହରଷେ । ବୃନ୍ଦା ଦେବୀ ଯେନ ନବ କାମିନୀ । ବନ ପଦ୍ମମଳ ବଳେ ଯାମିନୀ । ବସନ୍ତ ଗନ୍ଧବହ ରେଖ ଲଗାଇ ମକରନ୍ଦ ସିଞ୍ଚି ଅବନୀରେ । ଏମନ୍ତେ । ॥ ୧୮ ॥

ବିଷମ ମାର୍ଗ ସମ କରି ପଶ୍ଚିମେ ପୁଷ୍ପ ପାଖୁଡ଼ା ଚଉଦିଗେ । ବିଚ୍ଛି ଯତନ କଲେ ଅତି ବେଗେ । ତରୁ ଲତା ଅଛି ଶୋଭନ ମାଧବୀ ମାଳତୀ ତୋରଣ ଯୋଗେ ଯେ । ଏମନ୍ତ । ବକଶିତ କୁସୁମ

ମାଳ ମାଳ । ରମ୍ଭା ତରୁ ହୋଇ ଅତି ମଞ୍ଜୁଳ । ପଶ୍ଚ ପେଟ ସ୍ଥାପି ମଙ୍ଗଳାଚରଣ ଧ୍ୱନି କଲେ ଦ୍ୱିଜ କୁଳେ ସେ । ଏମନ୍ତେ ॥ ୧୯ ॥

ସମସ୍ତ ପକ୍ଷୀ କୋଳାହଳ ଏ ଚନ୍ଦ୍ର ରଜନୀ ବିବାହ ପ୍ରକାରେ । ମଲ୍ଲି କଳିରେ ଭ୍ରମର ଝଙ୍କାରେ । ଶ୍ରୀକୃଷ୍ଣ ଭଜସ୍ୱ ମଙ୍ଗଳ ସମସ୍ତ ନାରୀ କ ଶଙ୍ଖ ହୁଙ୍କାରେ ସେ । ଏମନ୍ତ । କୁଞ୍ଜ କୁଟୀରେ ତରୁ ଲତା ତଳ । ମନୋହର ରମ୍ୟ ଯମୁନାକୂଳ । ଏକାଳେ ଦେବ ଋଷି ସିଦ୍ଧ ଆକାଶ ମଣ୍ଡଳି କଲେ ମଞ୍ଜୁଳ ସେ । ହରଷେ ॥ ୨୦ ॥

ଚନ୍ଦ୍ରକର ଶ୍ୱେତ ବିତାନ ଅଛାଦି ତାରକାକୁଳ ପୁଷ୍ପ ଗୁଚ୍ଛ । ଖଣ୍ଡ ମେଘ ଚାମର ଅତି ସ୍ୱଚ୍ଛ । ଆକାଶେ ଦେବେ ରାସ ଲୀଳା ଦର୍ଶନେ ସ୍ୱର୍ଗ ଶୋଭା ମର୍ତ୍ତ୍ୟ ତୁଚ୍ଛ ସେ । ସେକାଳେ । ବୃନ୍ଦା ଜଣାନ୍ତି ଏହେ ଶ୍ୟାମଘନ । ହେଲା ପୂର୍ଣ୍ଣ ମଣ୍ଡଳି ବୃନ୍ଦାବନ । ଶୀଘ୍ରେ କରେ କର ରାସରେ ବିହର ଯେଣେ ରମଣୀରତନ ହେ । ମୋହନ ॥ ୨୧ ॥

ପଥ ନିର୍ଜନ ବନ ଅତି ଗହନ ଶ୍ରୀକୃଷ୍ଣ ଯାନ୍ତି ଅନ୍ତର । ଏକା ମଦନ ବାହା ଧନୁ ଧର । କୃଷ୍ଣଭଜସ୍ୱ ସମସ୍ତ ବୃନ୍ଦାବନ ଅତି ଶୋଭାକୁ ବିସ୍ତାର ସେ । ଏମନ୍ତ । ଲତାଗଣେ କୁସୁମେ ଶୋଭା କର । ବୃକ୍ଷେ ସ୍ୱାଦୁ ଫଳରେ ନମ୍ରତର । ଯମୁନା ଜଳ ଆନନ୍ଦେ ଉସୁକତ କୃଷ୍ଣ ଦର୍ଶନେ ସତ୍ୱର ସେ । ଯମୁନା । ॥ ୨୨ ॥

ଜଳ ସ୍ଥଳରେ ଯେତେକ ସୁମନସ ସକଳେ ହୋଇଲେ ପ୍ରଫୁଲ୍ଲ । ପୁଣି ନାନା ପକ୍ଷୀଙ୍କ କୋଳାହଳ । କଦମ୍ବେ ମୟୂର ଗମ୍ଭୀରେ ଘନ ଧ୍ୱନି କରନ୍ତି ମଞ୍ଜୁଳ ସେ । ଏମନ୍ତ । ପୁଣି ଦାଡ଼ିମ୍ବେ ଶାରିକା ସ୍ୱନରେ । ତାଳଦ୍ରୁମରେ ଶୁକ ଭାଷେ ମଧୁରେ । ବୃନ୍ଦାବନ ଶୋଭା ଗୃହି କୃଷ୍ଣ ତୋଷେ ଉଭା କଦମ୍ବ ମୂଳରେ ସେ । ମୋହନ । ॥ ୨୩ ॥

ତ୍ରିଭଙ୍ଗୀ ହୋଇଲେ ନାସମୂଳେ ପଶ୍ଚିମମୁଖେ ରହିଲେ ବେଣୁ ଧରି । ରୂପ ଉପମା କୋଟି କାମ ଛିଣି । ମଦନ ଉଚ୍ଚାଟ ମନ୍ତ୍ରକୁ ବଜାନ୍ତି କର

ତାନ ପୁଣି ପୁଣି ଯେ । ମୋହନ । ପକ୍ଷଗଣ ଜଳରବେ ବାଇଲେ । ଶୁଣି ଉଚ୍ଚାଟରେ ସର୍ବେ ଧାଇଁଲେ । ଦାରୁ ଦ୍ରବ ଶିଳା ଡ୍ରବ ଧ୍ୱନି ଶୁଣି ନଦୀ ସ୍ତମ୍ଭିତେ ରହିଲେ ଯେ । ଶୁଣନ୍ତେ । ॥ ୧୪ ॥

ଖଗ ମୃଗ ଶୁଣି ହିଂସ୍ରକେ ବିରୋଧ ଛାଡ଼ି ଯେ ଏକମେଳ ହେଲେ । କୃଷ୍ଣ ଚଉପାଶେ ବେଢ଼ି ରହିଲେ । ଖେଚର କୁଳ ନଚନ୍ଦଣ ସ୍ତମ୍ଭିତ ହେଲେ ଅକାଶ ମଣ୍ଡଳେଯେ । ବଂଶୀରେ । ତପନ ତନୟା ଲଙ୍ଘି କୂଳକୁ । ବନ୍ଦୁଅଛୁ କୃଷ୍ଣ ପାଦ ତଳକୁ । ଗୋପ ଭୁବନରେ ମାନ୍ୟ ଲୋକ ଯେତେ ନଶୁଣେ ମାତୁ ତାହାଙ୍କୁଯେ । ମୁରଲୀ । ॥ ୧୫ ॥

ଲୁମାଗ୍ରି ଗଣରେ ମୁରଲୀର ଧ୍ୱନି ଶୁଭଇ ଏମନ୍ତ ସରଯେ । ଶୁଷ୍କ ଶରତେ ନୀରଦ ବରଷେ । ନୀଳ ବସ୍ତ୍ରାଦି ଗୃତକୀ ବନେ ଅସି ଭୂଷା ଶାନ୍ତି କରି ତୋଷେ ଯେ । ଏମନ୍ତ । ଜାଣିଥିଲେ ସଙ୍କେତ ଜନ୍ମା କ୍ଷଣ । କଲେ ମୁରଲୀ ଧ୍ୱନି ଯେ ଶ୍ରବଣ । କାମନା କରୁଥିଲେ ଯାହା ଯେକାଳେ ସତ୍ୱରେ ପାଇଲେ ପୁଣ ଯେ । ଗୋପୀଏ । ॥ ୧୬ ॥

ଶୁଣି ସତ୍ୱରେ ଗୃହକୃତ୍ୟ ତେଜିଲେ ବଂଶୀ ଧ୍ୱନିରେ ମନଦେଇ । କେହୁ ଶ୍ରୀକୃଷ୍ଣ ଗୁଣ ମୁଖେ ଗାଇ । କରେ ଗୋଦୋହନ ଶୁଣି ବଂଶୀ ସ୍ୱନ ଦୁହୁଣି କରୁ ପକାଇ ଯେ । ଏକାଳେ । କୃଷ୍ଣ ରସରେ ମାନସ ଉଲ୍ଲସେ । ଭ୍ରମେ ଦୁହେ ନଜ କୁଚ କଳଶେ । ହିମାଦ୍ରି ଶିରୁ ସୁର-ନଦୀ ବହିଲା ପରାୟେ ସୁଷମା ଦିଶେ ଯେ । ଏମନ୍ତ । ॥ ୧୭ ॥

କେହୁ ଦୁଗ୍ଧ ଅବର୍ତ୍ତନ କରି କୃଷ୍ଣ ବଂଶୀ ଧ୍ୱନିରେ ଦେଇ ଚିତ୍ତ । ଦେଖି କେହୁସଖୀ କହେ ଏମନ୍ତ । କାମାନଳେ ପୟଃକୁମ୍ଭ ଉଚ୍ଛୁଳିତ ଶ୍ୟାମ ପାଣି ମିଶା ମିତ ଗୋ । ସଜନୀ । କେଉଁ ରମଣୀ ନୟନେ ଅଞ୍ଜନ । ରଞ୍ଜୁ ବଂଶୀ ଜାଳ ଦେଲା ଏସନ । ଶୁଷ୍କ ନେତ୍ର ବାଣେ ହୃଦୟକୁ ଦହୁ ଗରଳ ଲେପନ ଧନରେ । ସୁନ୍ଦରୀ । ॥ ୧୮ ॥

ଏରିକା ହେଉ ବଢେ ଅପ ବୋଲନ୍ତେ ଶୁଣି ଏକ ନେତ୍ରେ ପାଟଧାଉ । ଧାମେ ବଂଶୀ ଧ୍ୱନିକ ଅନୁସରି । କେଉଁ ସୁନ୍ଦରୀ ଝିନ୍ନବାସ

ସବୁରେ ପିନ୍ଧଇ ସତନ କରିଯେ । ଏକାଳେ । ବଂଶୀ ତା'କେ ଅସ ସ୍ରାପ ମେଳକୁ । କରୁ ବାସ ସତ୍ନ କେତେ ବେଳକୁ । ଶୁଣି ସବୁରେ ଧାମଇଁ ଯେ ଚଉଦିଗ ହରଷେ ନୀପ ମୂଳକୁ ସେ । ସ୍ୱଦଗି ॥ ୨୯ ॥

ତୁମେ କେ କଣ୍ଟକ କପୋଳେ ଯେନଇଁ ଗନ୍ଧ କେ ନାସ୍ୱନେ ରଞ୍ଜଇ । ପାଦ ନୂପୁର କରେ କେ ଲଗାଇ । କଟିକିଙ୍କିଣୀଜାଳେ କେ ବାନ୍ଧି ମଧ୍ୟେ ପଦକ ମାଳ ଖଞ୍ଜଇ ସେ । ଏମନ୍ତ । ଉରଜରେ କେ କବରୀକି ଖୋସି । ଧାମେ କୁସୁମ ମାଳ ପଡେ ଖସି । କାଳନ୍ଦୀ ନଦୀରୁ ହଂସ ଉଡ଼ି କବା ମିଳିବ ମାନସରୀ ଯେ । ଏମନ୍ତ ॥ ୩୦ ॥

କେ ଗୋପୀ ମାନଯେ କୃଷ୍ଣଙ୍କୁ ଭୁଞ୍ଜାଇ ଅବଶେଷକରେ ଭୋଜନ । ଏକାଳରେ ଡ଼ାକଇ ବଂଶୀ ସ୍ୱନ । ମୁଖ ବାସ ଯେନ ଆସ ରୁ ସବୁରେ ଯେନ ଧଇଁଲା ସବୁରେ ସେ । ଚଉଦି । କେଉଁ ତାସି ମନରେ ହୋଇ ତୋଷି । ଚନ୍ଦ୍ର ଉଦଗାକ ଦୃଷ୍ଟି ମଗାହି । କୃଷ୍ଣଙ୍କୁ ଦେଖି ଅଳଙ୍ଗନ କରିବ ମଦନ ତାପ ବନାଣି ସେ । ଏମନ୍ତ । ॥ ୩୧ ॥

ବେଣୁ ଜାଦେ ବନ୍ଧୁ ଅଛି ଶୀଘ୍ରେ ଅସି କୋଳ କର ମୋତେ ଯତନେ । ଶୁଣି ଧାଇଁଲା ବାଳ ତୋଷ ମନେ । କେ ସୁବେଶ ହୋଇ ପଲଙ୍କ ଶୟନେ ନିଦ୍ରା ନଆସେ ନୟନେ ଯେ । ଏମନ୍ତ । ଚନ୍ଦ୍ରେ ଗୋବନ୍ଦ ଲୀଳା ସ୍ରୀତି ମାନ । ଧାମେ ବୃନ୍ଦେ ଶୁଣି ବଂଶୀ ସ୍ୱନ । ବଂଶୀ ଧ୍ୱନିରେ ସମସ୍ତ ଗୋପୀଙ୍କର ହରିଲେ ଏରୂପେ ମନଯେ । ମୋହନ । ॥ ୩୨ ॥

କେ କାହାଁ ଯିବା ନଜାଣି ବସୁରନ୍ତି ମୋହରେ କୃଷ୍ଣ ସ୍ନେହବନ୍ତ । ବଢ଼ି ନଦୀ ସ୍ରାଏ ଧାଇଁ ବୃନ୍ଦ । ମେଳ ହୋଇ ବନେ ନିର୍ଭୟେ ଧାମନ୍ତ ମୂରଲି କଢ଼ାଏ ପଥ ଯେ । ଏମନ୍ତ । ଏକ ଅରେକକୁ ବଳ ଧାମନ୍ତ । ଭୃଙ୍ଗ କଣ୍ଟକ ବଷମେ ଗମନ୍ତ । ଅଗେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବ ହୋଇବେ ପ୍ରସନ୍ନ ମତିସେ । କେଧାମେ । ॥ ୩୩ ॥

ଗୃହ ନପାରଇ ନିତମ୍ବବତୀ କେ ଆବରଣ ଅଙ୍ଗୁ ପଡ଼ାଇ ।
ତଥାପିହିଁ ସେ ନ ଧାରଇ ଯାଇ । ସ୍ତନ ନିତମ୍ବ ଭରୁଣ୍ଡଲେ ଭଳମ୍ବ
ବୋଲି ମାନସେ ସ୍ୱାନଛଟେ । ଏମନ୍ତ । ଝୁଣ୍ଟିପଡ଼ୁ ଉଠି ପୁଣି ଧାଅନ୍ତି ।
ଭନୁ କମ୍ପକେ ଘନ ସ୍ୱେଦ ଅଛି । ଅଙ୍ଗୁ ଅଳଙ୍କାର ଖସି ପଡ଼ିଲେ
ସେ ପୁଣ ଆଉ ନ ତୋଳନ୍ତି ସେ । ଚତୁରୀ । ॥ ୩୪ ॥
ଧାଇଁବାରେ ଧୂଳି ଯରଯର ଝାଳେ କେଶ ବସନ ଜରଜର ।
ପୁଣି ଧାବନ୍ତି ହେ ନବକିଶୋର । ପ୍ରେମ ରସରେ ଉନ୍ମତ୍ତ ହୋଇ
କୁଳଶୀଳ ଲଜ୍ଜା କରି ଦୂର ସେ । ସୁନ୍ଦରୀ । ରମଣୀ କେହି ଗୋପେ
ଜଗିଲେ । ଭୁଜବତୀ ବ୍ରତ ତେଜି ଧାଇଁଲେ । କ୍ଷୀଣ ଅଙ୍ଗୀ ଏକ
ଯାଇ ନପାରେ ସେ ପୁରେ କୃଷ୍ଣ ହିବ ଭେଟିଲେ ସେ । ଏମନ୍ତ ॥ ୩୫ ।
ଆଗେ ଶ୍ରୀକୃଷ୍ଣ ପାଶକୁ ମନ ପେଶି ଏକାନ୍ତରେ ରଙ୍ଗେ ଭାଷି ।
ଏକାଳରେ ବନେ ସବୁ ସୁକେଶୀ । ମୋହନ ରୂପ ଦର୍ଶନ କରିବାକୁ
ମାନସରେ ଅତି ତୋଷି ସେ । ଏମନ୍ତ । ପୁଣି ରସାଳ ତରୁକୁ
ଅନାଇଁ । କୃଷ୍ଣ ସ୍ୱରୂପ ବୋଲି ମନେ ଧାଇ । ପକ୍ଷୀ କୋଳାହଳେ
ମୁରଲୀ ଧ୍ୱନିକି କେକି ପୁଚ୍ଛକୁଳ ଶୋଭ ସେ । ଏମନ୍ତ ॥ ୩୬ ।
ଶ୍ରବଣ ଅବତଂସ ଏ ନାଗେଶ୍ୱର ପତ୍ର ଏ ପୀତବସନ । ନେତ୍ର
କି ଅବା ଚଞ୍ଚଳ ଖଞ୍ଜନ । ମଲ୍ଲି କଳି ନାଶା ଗଜମୋତି କିବା ଅଧର
ଜବା ସୁମନ ସେ । ବନରେ । କୁନ୍ଦ କଳି ପ୍ରକାଶିତ ଦଶନ । ନଖ
ପନ୍ତିକି ଏ ଯାତି ସୁମନ । ପୁଷ୍ପ ପଲ୍ଲବ ସାକ୍ଷାତ ବନମାଳ କିଙ୍କିଣୀ
ଭୃଙ୍ଗ ନିଃସ୍ୱନ ସେ । ବନରେ । ॥ ୩୭ ॥
ତରୁ ଛନ୍ଦାଳନ୍ଦି ତ୍ରିଭଙ୍ଗିମା ଛବି ଚନ୍ଦ୍ରକର କାଏ ଚନ୍ଦନ । କୃଷ୍ଣ
ରୂପ ସମାନେ ଦେଖି ବନ । ପୁଣି କେତେଦୂରେ ଦେଖି ଯମୁନାକୁ
ବୋଲନ୍ତି ଏ ଶ୍ୟାମ ଘନ ସେ । ଯମୁନା । ଶ୍ୟାମ ନିର୍ମଳ ଜଳ ତନୁ
ଅଙ୍ଗ । ତରଙ୍ଗ ଭଙ୍ଗି ନୃତ୍ୟ ରଙ୍ଗ ଶୋଭ । ମୁଖ ପଦ୍ମ ନେତ୍ର
ନୀଳୋତ୍ପଳ ଏ କୋକନଦ ପଦକର ପ୍ରଭ ସେ । ଯମୁନା ॥ ୩୮ ॥

ଯେଣିକ ଗୃହିଁଲେ ଚମକ ପଡନ୍ତି ଶ୍ରୀକୃଷ୍ଣ ପ୍ରାସେ ଚଲେ ମଣି । ଭଲୁ ଲଢାଲୁ ନରେଖି ତରୁଣୀ । ନୀପ ମୂଳେ କୃଷ୍ଣ ମୂରତି ଦେଖିଲେ ଅତ୍ୟନ୍ତ ଶୋଭା ଧରଣୀଯେ । ଏମନ୍ତ । ଶରଦଚନ୍ଦ୍ର ଶ୍ରୀମୁଖ ମଣ୍ଡଳ । କର୍ଣ୍ଣେ ଶୋଭତ ମକରକୁଣ୍ଡଳ । ମଦନ ଦର୍ପଣକୁ ନନ୍ଦା କରଇ ନର୍ମଳ ଗଣ୍ଡ ଯୁଗଳ ଯେ । ମୋହନ । ।୩୯।

କମ୍ବୁଅଧରେ ମନ୍ଦହାସ ପ୍ରକାଶି ନାଶଇ କୁଳବଧୂ ବ୍ରତ । ବଂଶୀ ଧ୍ୱନରେ ହରନଏ ଚନ୍ତ । ମୟୂର ଚନ୍ଦ୍ରିକା ଚିତ୍ରାଙ୍କ ଚୂଳରେ ଜାନା କୁସୁମ ଶୋଭନ୍ତ ଯେ । ଏମନ୍ତ । କଟିତଟେ ପୀତବାସ ବଦିତ । ନବଘନେ କ ବନ୍ଧୁ ଉଦିତ । ତ୍ରିବଙ୍କିମା ଠାଣି କୋଟି କାମ ଜିଣି ନାଗରୀ ନେତ୍ର ମୋହିତ ଯେ । ଶ୍ରୀହରି । ।୪୦।

କମ୍ବୁକଣ୍ଠେ ଶୋଭେ ହେମ ହାର ମାଳ ହୃଦେ କଉସ୍ତୁଭ ପଦକ । ବାହେ ରତ୍ନ ବାହୁଟି ପ୍ରକାଶକ । କରେ କଙ୍କଣ ଅଛିଡ଼ି ଶୋଭାଗୃହିଁ ନାଗରୀ ହୃଦ ଚମକ ଯେ । ମୋହନ । ରତ୍ନ ମୁଦ୍ରିକା ଗଣ ଅଙ୍ଗୁଷ୍ଠିରେ । କ୍ଷୁଦ୍ର ଘଣ୍ଟିକା ଶୋଭିତ କଟିରେ । ପାଦେନୂପୁର ବାଜେ ଅତି ସ୍ୱସ୍ୱରେ ନାଗରୀଙ୍କ ମନ ହରଷେ । ମୋହନ । ।୪୧।

ଅପୂର୍ବ ଶୋଭା ଦେଖି ସର୍ବ ଗୋପିକା ପଟୁଆର ହୋଇ ରହିଲେ । ଅପଲକେ ସ୍ତମ୍ଭୀଭୂତ ହୋଇଲେ । ଶ୍ରୀକୃଷ୍ଣ ଚନ୍ଦ୍ର ବଦନ ଦେଖି ସର୍ବେ ମଦନେ ପୀଡିତ ହେଲେ ଯେ । ଗୋପୀଏ । ନେତ୍ରେ ନେତ୍ରେ ମିଳ ମନ ଆନନ୍ଦ । ଦେଖି ନାଗର ନାଗରୀଙ୍କ ବୃନ୍ଦ । ମୃଚଳ୍ପରଖି ମନ୍ଦେ ହସି ମଧୁର ବାଣୀ କହନ୍ତି ଗୋବିନ୍ଦ ଯେ । ଏମନ୍ତ । ।୪୨।

ନାଗରୀଗଣେ ଅଛଳ ଯୌବନେ ନିଶିରେ ଭୟ କର ଦୂର । ଦେଖି ଅକୁଳ ହୋଏ ମୋ ଶରୀର । ଗୋପରେ କି କାହା ଭୟପାଇଲ ଦୁର୍ଗମେ ହୋଇଲ ବାହାର ଗୋ । ସୁନ୍ଦରୀ । କବଳି ତୃଣ ପଲବ ଆହାର । ପାଇ ଗୋଧନ କୋଡ଼ିଲେ ବାହାର । ଗୋପାଳ ଗଣେ ଛାଡ଼ିଗଲେ ଏକା ମୁରଲିଧର ବନ ମଧ୍ୟରଗୋ । ବାମାଏ । ॥ ୪୩ ॥

ବଂଶୀରେ ଅଛି ସଧିରେ କର ମୁଁଯେ ଡ଼ାକଇ ସୁରଭି ମାନଙ୍କୁ । ତୁମ୍ଭେ ନିଶାରେ ଏ ଘୋର ବନକୁ । ଝଞ୍ଜାଇ ଅଇଲ ଦୁଃଖକୁ ପାଇଲ ଭୟ ନକଲ ମନକୁ ଗୋ । ବାମାଏ । ଦେଖ ଏ ସମ୍ପୂର୍ଣ୍ଣ ଚନ୍ଦ୍ର ମଣ୍ଡଳ । ଯମୁନା କୂଳ ବନ ପରିମଳ । ବିକଶିତ ଜାତିପୁଷ୍ପି ଏ ମଲ୍ଲିକା ମଧୁପାନେ ଅଛି ଭ୍ରମିଲ ସେ । ବାମାଏ । ॥ ୪୪ ॥

ଶୀତଳ ଅନିଲ ମଳୟ ବହଇ ଲାଗି କଷ୍ଟ ହେବ ଅଙ୍ଗକୁ । କମ୍ପି ଡେଙ୍କି ନିଜ ପତି ସଙ୍ଗକୁ । ବନ ଜୀବମାନେ ମୋତେ ଯେବେ ଛନ୍ତି ଭୟ ନପାଅ ମନକୁ ଗୋ । ବାମାଏ । ଯେବେ ଅଇଲ ଯେଣୁ ମୋ ଉତ୍ତର । ପୁରେ ଯାଅ ଏବେ ତୁମ୍ଭେ ସତ୍ୱର । ଗୁରୁଜନେ ପୁରେ ନଦେଖି ତୁମ୍ଭଙ୍କୁ ହେଉଥିବେ କାତର ଗୋ । ବାମାଏ । ॥ ୪୫ ॥

ପତି ପାଦ ସେବା ଯୁବତୀଙ୍କ ଧର୍ମ ଅନ୍ୟ ପୁଂସ ଇଚ୍ଛା ଅନୀତି । ରୋଗୀ ଦରିଦ୍ର ଅପ୍ରଧର ଅଛି । ଜଡ ବୃଦ୍ଧ ହେଲେ ଯୁବତୀଙ୍କ ଧର୍ମ ପତିକି ହେବା ଭଜନ୍ତି ଗୋ । ବାମାଏ । ମୋତେ ଶୁଭେ ଦେଖିଲ ଯେବେ ବନେ । ଏବେ ଯାଅ ତୁମ୍ଭେ ନିଜ ସଦନେ । ନହେ ଅପରାଧ ହୋଇଥିବେ କାନ୍ତ କର ଗମନ ବହନେ ଗୋ । ବାମାଏ । ॥ ୪୬ ॥

ବାଛୁର ପିଇଣ ଦୁଧ ପିଇଦେଲେ ବାଳକେ କାନ୍ଦି ଭୂମି ଶୋଇ । ବୃନ୍ଦାବନ ଅଚେତନ ନନ୍ଦ ହୋଇ । ତାହାଙ୍କୁ ସଚେତକଗ୍ରହ ଘରେ ଗୃହକୃତ୍ୟ କର ଯାନ୍ତିଗୋ । ବାମାଏ । ଯଥ ଧୂଳିକୁ ନିଜା'ଣନ୍ତି କେହ । ତୁମ୍ଭ ପଛରେ ଅସ୍ତୁଛ ମୂଢ଼ି । ଆହା କେମନ୍ତେ ଅଇଲ ବନେ ତୁମ୍ଭେ ମୂଳଚନ୍ଦ୍ରକୁ ନ ଦେଖି ଗୋ । ବାମାଏ । ॥ ୪୭ ॥

ଏମନ୍ତ କାତର ଉକ୍ତିକୁ ଶୁଣି ବଜ୍ର ପଡ଼ିଲା ପ୍ରାୟେ ହୋଇ । ବୋଲି ନୃସିଂହ କର୍ଣ୍ଣେ କର ଦେଇ । ଦେଖୁ ଦେଖୁ ସବୁ ଶୋଷି ହୃତ ଅଙ୍ଗ ଅତିଶୟ ଶୀର୍ଣ୍ଣ ହୋଇ ସେ । ବାମାଏ । ଝଡ଼ି ପଡ଼ିଲେ ଅଳଙ୍କାର ମାନ । ବନ ଦେହକୁ ଲଟିକା ଯେସନ । ମଳିନ ଅଧର ନଳିନ ବଦନ ବିରସ ହେଲା ବହନ ଯେ । ଏମନ୍ତ । ॥ ୪୮ ॥

ଲକ୍ଷ ଲକ୍ଷ ଶର ପ୍ରହାରେ ମଦନ ଅଙ୍ଗୁଳେ ଜଳ ନେତ୍ରୁ ଖସି । ଭୂତ ଅଙ୍ଗେ ଯୋଛନ୍ତି ସୁକେଶୀ । ଚଉସ ଗୃହସ୍ଥ ଚଟିକ ଯୁଡ଼ିଲେ ଦେଶ ଫିକୁ ମଧ୍ୟେ ଗ୍ରଷି ସେ । ବାମାଏ । କମ୍ପି କଦଳପତ୍ର ପ୍ରାଏ ବାଳୀ । ଘସି ଅବନୀରେ ପଦ ଅଙ୍ଗୁଳି । ଗଦ୍ଗଦ ହୋଇ ବଚନକୁ ଲୁଅଇଁ ମାନସେ ଏସନ ଭାଷେ । ବାମାଏ । ॥ ୪୯ ॥

ଭୂମିକି ଗୁଡ଼ି ଭୂଷନ୍ତି ଯଦ ସନ୍ଧି ଫାଷ୍ଟ ଯା ପଦୀବ୍ର ଶରଣ । କୃଷ୍ଣ ଗୁଡ଼ି ନାଗଗଣ ମଜନ । ଅତି ଅଶେଷ ଦିଶନ୍ତି ସେହି ଗଜ ମର୍ଦ୍ଦନେ ଯେସ୍ତେ ନଳିନ ଯେ । ଏମନ୍ତେ । ପ୍ରେମବତୀ ମନ ଝିପି ତୁଚ । ଦ୍ଵନ୍ଦୁ ଫିଟି ଇ କହନ୍ତି ବାଳ । ଚନ୍ଦ୍ରବାଙ୍କ ଛଉ ବୁଝିବାକୁ ହେଲେ ମଉନ ଯାବନମାଳୀ ଯେ । ଏକାଳେ । ॥ ୫୦ ॥

ଏମନ୍ତ ଦେଖି ବୃନ୍ଦାଦେବୀ ଗୋବିନ୍ଦ ଗୋପୀଗଣ ସ୍ତବ କରନ୍ତି । ଗୁପ୍ତ ପ୍ରେମ ଭଣ୍ଡାରକୁ ବସ୍ତାର । କଥା କହାଇ ଶୁକକୁ ପଢ଼ାଇଲେ ଏରୂପେ ସ୍ନେହ ଗୁରୁଭାବେ । ହରଷେ । ଗୋପ କନ୍ୟାଙ୍କ ଖେଦ ପରିମାଣି । ଶୁକ ଭାଷେ ମଧୁର ମୃଦୁ ବାଣୀ । ହେ ଶ୍ୟାମ ନାଗର ରସିକ ସାଗର ମୋହନ ମୂରଲି ପାଣି ହେ । ଶ୍ରୀହରି । ॥ ୫୧ ॥

ମକର କୁଣ୍ଡଳ ଗଣ୍ଡରେ ଖେଳଇ ନୟନ ମୀନ ପ୍ରାୟେ ଶୋଭେ । ଜ୍ୟୋତିଃ ସତୀ ନାସାରେ ଅଛି ପ୍ରଭା । ତ୍ରିଭଙ୍ଗୀ ଲୀଳା ଅଧରେ ବେଣୁ ଧ୍ୱନି ଗର୍ବେ ଜଗତ ଲୋଭେ । ମୋହନ । କମ୍ବୁକଣ୍ଠେ ଶୋଭିତ ରତ୍ନ ହାର । ନାନା ରତ୍ନ ଭୂଷଣେ ରତ୍ନାକର । ଶ୍ରୀମୁଖ ସୁଧାଂଶୁ ସମାନ ବଚନ ବଡ଼ବାନଳ ପ୍ରକାର ହେ । ମୋହନ । ॥ ୫୨ ॥

ଅତି ଗମ୍ଭୀର ହୃଦୟ ସୁଧାକର ସ୍ୱଚ୍ଛ ଦର୍ଶନେ ସର୍ବ ସିଦ୍ଧି । ରୂପ ସାକ୍ଷାତ କରୁଣା ଜଳଧି । ତେଣୁ ପାପୀ ଗୋପୀ ନାମରେ ଦରିଦ୍ର କରୁଣା କର ଅବଧି ହେ । ମୋହନ । ଶରଦ ପୌର୍ଣ୍ଣମୀ ଚନ୍ଦ୍ର ଫଳକୁ । କହ ସକଳ ଭେଟିଲେ କୁଳକୁ । ବଡ଼ବାନଳ ଧୂମ ଉଦ୍ୟେ ଯୁବତି ନ ବରଷନ୍ତି ଜଳକୁ ହେ । ମୋହନ । ॥ ୫୩ ॥

ସାଗର ପାଷାଣ ପାଇ ହୋଏ ତୋଷ କୁତ ଶିଳା ଦେବେ ଏ ସତେ । ବାକ୍ୟଉଚ୍ଚାର ଉଚିତେ ସ୍ୱଚିତ୍ତେ । ତୁମ୍ଭେ ପ୍ରସନ୍ନ ହେଲେ ଦୁଃଖ ଭେଟିବେ ଶୁକ କହି ତହିଁ ଏତେ ଯେ । ମଉନ । ବୃନ୍ଦାବତୀଙ୍କ ଇଙ୍ଗିତକୁ ଜାଣି । ସାରୀ କହେ ମଧୁର ମୃଦୁବାଣୀ । ରସିକ ନାଗର ଲାବଣ୍ୟ ସାଗର ନାଗରୀଙ୍କ ପ୍ରାଣମଣି ହେ । ମୋହନ । ॥ ୫୪ ॥

ପ୍ରେମ ଲହରୀ ସାନ୍ଦ୍ରିକେ ଥରୁଅଛ କୁଚ ମନ୍ଦର ଗୃହିଁ ଡ଼ର । ସ୍ମର ଅଗସ୍ତି ସମ ହୋଇକର । ସୁଖାଇବାରୁ ଶରତ ପ୍ରାପ୍ତେ ଅସି ପ୍ରବେଶ ହେଲେ ନାଗରୀ ସେ । ମୋହନ । ମୋତି ହାର ଧରା ଏ ସୁରନଦୀ । ତଡ଼ିଲେ କୁଚ ହିମାଦ୍ରି ଭେଦି । ଦେଖ ଏ ପୃଷ୍ଠେ କୃଷ୍ଣ ବେଣୀ ବହଇ ପ୍ରତିବ ଅଙ୍ଗ ଜଳଧି ହେ । ମୋହନ । ॥ ୫୫ ॥

କୁଳ ଶୀଳ ତେଜି ଅସି ରସେ ମଜ୍ଜି ଲେଉଟିସେ ଆଉ ନ ଯିବେ । ଶାଶୁ ଖରକେ ସ୍ନେହେ କନ୍ୟା ସବେ । ଓଷ୍ଠ କମ୍ପାଇ ଗଦ୍ଗଦ ବାଣୀ କହିବାକୁ ମନ କଲେ ସ୍ୱରେ ସେ । ଏମନ୍ତ । ମୁନି ଦେବ ରାଜ କନ୍ୟା ସମସ୍ତେ । ନାରଦ ସିଦ୍ଧ ଗୋପୀଙ୍କର ସହିତେ । ଅଭିବାଦନେ ମୋହିତ ହୋଇଥିଲେ ସନ୍ଦେଶ ଘୂରଣ୍ଣ ଯେତେ ସେ । କହନ୍ତି । ॥ ୫୬ ॥

ପ୍ରଗଲ୍ଭା ନାୟିକା ରାଜକନ୍ୟା କୃଷ୍ଣେ କହନ୍ତି ଧଇର୍ଯ୍ୟ ତ ଧର । ନାଥ ତୁମ୍ଭ ହୃଦୟ ବଜ୍ର ପର । ଜାଣିଛୁ ପୂତନା ବଧ କଲ ଦିନୁ ଦୟା ହୀନ ତୋର କର ହେ । ମୋହନ । କେତେ ଅବସ୍ଥା ହୁଅ ଆମ୍ଭ ପାଇଁ । ବାଟ ଜଗି ଜଗି ରେଡ଼ି ନ ପାଇ । ନିମିଷେ ସଦନେ ନାରହି ଦୂଷ୍ଟ ପୁରୁ ପାଦପଦ୍ମେ ମଣ୍ଡି ଯାଇ ହେ । ମୋହନ । ॥ ୫୭ ॥

ଏବେ ବନେ ଅସିବାରୁ ଏତେ ରୀତି କହୁଅଛ ଅହେ ମୋହନ । ଜଥିବଣୁ ହୋଏ ସବୁ ସହନ । ଜାତ କୁଳର ଧନ ଗଲେ ସୁବର୍ଣ୍ଣ ହୋଏ ପିତ୍ତଳ ସମାନ ହେ । ମୋହନ । ଗୋକୁଳରେ ତୁମ୍ଭେ ରସ ନାଗର । ଉତ୍ତଳକୁ ଦେଖି ନାରୀ ସାଗର । ଏଥି ତୁମ୍ଭ ଶ୍ରଦ୍ଧା ଯାହାରେ ତାକୁ ରଖ ସବେ ଯାଉ ଅଛୁ ପୁର ହେ । ମୋହନ । ॥ ୫୮ ॥

ଜହିଙ୍କ ବୋଲିବା ତୁମ୍ଭର କି ଦୋଷ ଏ ବଂଶୀ ଗର୍ବ ନାଶ କଲ । ସର୍ପଗ୍ରାସେ ଏହା ଖଣ୍ଡି ହୋଇଲା । ଅଧରୁ ଅମୃତ ପିଇ ନିରନ୍ତରେ ଗରଳକୁ ଉଦ୍ଗାରିଲା ହେ । ମୋହନ । ଏହି ଅବଗୁଣ ଦେଖି ଏହାର । କଲେ ମନସ୍ତ ଗିରୀନ୍ଦ୍ର ବାହାର । ତୁମ୍ଭ ଯେନ ବଡ଼ ହୋଇ ଏ ଆମ୍ଭଙ୍କୁ କୁଳରୁ କରେ ଅନ୍ତର ହେ । ମୋହନ । ॥ ୫୯ ॥

ଦଶନ ଶ୍ରୁଧି ବୋଲନ୍ତି ଜଣା ଯିବ ପଡ଼ିଲେ ଭୁଜି ଅମ୍ଭ ହସ୍ତେ । ରାଜ କନ୍ୟାଙ୍କ ବଚନ ଏମନ୍ତେ । ରଙ୍ଗ ଛନ୍ଦ ହେଲ ରସିକଶେଖର ଶୁଣି ହରଷିତ ଚିତ୍ତେ ହେ । ମୋହନ । ଦେବ କୁମାରୀ କୃଷ୍ଣ ରୂପ ଗୁଡ଼ିଂ । ଅନୁରାଗରେ ଦେଖନ୍ତି ଛଡ଼ି । ମୁଖ ଦର୍ପଣେ ନୀଳମଣିବାଡ଼ି କି ଦୃଷ୍ଟି ଖୁନ୍ତା ଶୋଭଇ ହେ । ମୋହନ । ॥ ୬୦ ॥

ମର୍କତ କପାଟ ପ୍ରାୟେ ହୃଦ ଶୋଭା ଅଜାନୁ ବାହୁ ସ୍ତମ୍ଭ ସମ । ପାଦପଦ୍ମ କମଠ ମନୋରମ । କମଳା ବାସ କରିଛନ୍ତି ତହିଁରେ ବଢ଼ି ଅତିଶୟ ପ୍ରେମ ହେ । ମୋହନ । ଆମ୍ଭେ ଯହିଁକି କେତେକ ମାତର । ରତି ପାବଂଶ ହୋଇବେ କାତର । ବ୍ରତ ଫଳ ଯେବେ ପ୍ରସନ୍ନ ହୋଇଲ ଆମ୍ଭରେ କରୁଣା କର ହେ । ମୋହନ । ॥ ୬୧ ॥

କର୍ଣ୍ଣ ଦେଇ ଶୁଣ ଯାହା ଜଣାଉଛୁ ମନ ଭେଦି ବନେ ଆଣିଲ । ଏବେ ଏମନ୍ତ ନିଷ୍ଠୁର ହେଲ । ତୁମ୍ଭର ଏମନ୍ତ ଅଣଅବଧାନ ଅବଳାଙ୍କୁ ଦୁଃଖ ଦେଲ ହେ । ମୋହନ । ଦେବ କନ୍ୟା ବାଣୀ ଶୁଣି ଫୁଲିଲେ । ବୃନ୍ଦାବନେ କୃଷ୍ଣ ଅଧରବନ୍ଦିଲେ । ମୁନି କୁମାରୀଏ ଗନ୍ଧର୍ବେ ବଚନ କହନ୍ତି ଅତି ଉତ୍ସୁକ ସେ । ଏମନ୍ତ । ॥ ୬୨ ॥

ହେ ନାଥ ସର୍ବ ଧର୍ମ ଜାଣ ଯେତେକ ଶାସ୍ତ୍ରେ ଦେଖାଇ ଅଛିଲ । ଅମ୍ଭ ଶିଖାଇ ଅମ୍ଭ ମନ ନେଲ । ସର୍ବ ଧର୍ମ ଛାଡ଼ି ତୁମ୍ଭଙ୍କୁ ସେବିଲୁ ଏବେ ନିଷ୍ଠୁର ହୋଇଲ ହେ । ମୋହନ । ତୁମ୍ଭେ ବୋଲ ପତିଙ୍କ ସେବା କର । ସେହି ବଚନ ପ୍ରମାଣ ଅଟଇ । ତୁମ୍ଭେ ଗୋକୁଳ ଅଖିଳପତି ତୁମ୍ଭ ସେବାରେ ପ୍ରୀତି ସଂସାର ହେ । ମୋହନ । ॥ ୬୩ ॥

ଯେସନେ ତରୁ ମୂଳରେ ଜଳ ଦେଲେ ଶାଖା ତୁଷ୍ଟ ଅଇ ପଲ୍ଲବତ । ତେସନେ ତୁମ୍ଭଙ୍କୁ ସେବିଲେ ସମସ୍ତ । ଆନନ୍ଦ ତୃପ୍ତି ଜଣାଇବୁ କିପା ତୁମ୍ଭେ ଯେଣୁ ପ୍ରାଣନାଥ ହେ । ମୋହନ । ବନ୍ଧୁ କପଟେ ଭାରି ଗୋକୁଳ । ହୋଇଅଛୁ ଯେ ନିର୍ଭୟ ସକଳ । ବନେ ଆଉ କି ଭୟ ଅଛି ଅମ୍ଭଙ୍କୁ ଏକା ଅନଙ୍ଗ ପ୍ରବଳ ହେ । ମୋହନ । ॥ ୬୪ ॥

ଧନୁର୍ଦ୍ଧର ଧରି ନଚନ୍ଦ୍ରରେ ପାଶେ ରହି ମାରଣରେ ଜଡ଼ଇ । ତୁମ୍ଭ ଦର୍ଶନେ ଅଧିକେ ପୀଡ଼ଇ । ଅମ୍ଭଙ୍କୁ ଦାସୀ କରି ରଖି ବିନାଶ କର ଅନଙ୍ଗ ବଢ଼ାଇ ହେ । ମୋହନ । ଅମ୍ଭେ ବରି ଅଛୁ ଯେ ତପ କରି । ବେଣୁ ସ୍ୱନେ ଅଇଲୁ ଅନୁସରି । ମୂର୍ଖ କନ୍ୟାଙ୍କ ବଚନ କ୍ଷମାମାନେ ସନ୍ତୋଷେ ଗୃହାନ୍ତ ହରି ହେ । ଏମନ୍ତ । ॥ ୬୫ ॥

ଏଣୁ କେ ଗୋପ କନ୍ୟା କହନ୍ତି ହେ ନାଥ ଶ୍ରେଷ୍ଠ କଲ ମନ ମୋହିଲ । ଏହା ଉତ୍ତମ ଜନଙ୍କ ରୀତିକି । ହୃଦୟେ ଦୃଢ଼େ ବସିଛ ଯେବେ ଯେବେ ଭୁଲାଇ ଯିବ କାହିଁକି ହେ । ମୋହନ । ହାସ୍ୟ ବଦନେ ବଂଶୀ ସ୍ୱନେ ଡକାଇ । କାମ କୃପଟେ ଦେଉଛ ପକାଇ । ଏମନ୍ତ ହେଲେ କି ଛାଡ଼ି ଯିବୁ ଅମ୍ଭେ ପାଦବନ୍ଧ ବାନ୍ଧିଛାଇ ହେ । ମୋହନ । ॥ ୬୬ ॥

ଶୃଙ୍ଗ କରଣି ବଷୟେ ମନ୍ଦ ବନ୍ଧୁ ମାନସୀ ଭାବେ ଘୋଷି ଘୋଷି । ଯିବୁ ଆଉ କ ତୁମ୍ଭଠାକୁ ଆସି । ମନ ସୂତ୍ରରେ ବାନ୍ଧି ଦୃଢ଼େ ଯତନେ ରଖିଥିବୁ ଅହର୍ନିଶି ହେ । ମୋହନ । ଏସୁଖ ଆମ୍ଭର କେତେଣେ ଯିବ କ । ଗୋପୀ ରତି ପ୍ରୀତି କେତେ ଥିବକ । ହୃଦୟରେ ରହି ଶ୍ରବଣେ ଶୁଣାଇ ଆଣିଲ ବଂଶୀରେ ଡାକି ହେ । ମୋହନ । ॥ ୬୭ ॥

ରୂପ ଦେଖାଇ ପ୍ରେମ ରସ ଚଖାଇ ମେଲିଣି ଏବେ ଦେଉ ଅଛ । ନାମଧରି ମନ ଭେଦି ଗାଉଛ । ଜାତ ହୋଇ ଆମ୍ଭେ ଆସିଲୁଁ ତୁମ୍ଭେ କେତେ ଫୁଲାଇ ଦେଉଛ ହେ । ମୋହନ । ତୁମ୍ଭ ମୁରଲୀ ଏଥକୁଟି ସାକ୍ଷୀ । ପୁରେ କ୍ଷଣେହେଁ ନ ଦିଅଇ ରଖି । ଏବେ ବୋଲୁଛ ଗୁରୁଜନେ ଗଞ୍ଜିବେ ଅସିଲୁ କାହାଁ ଉପେକ୍ଷି ହେ । ମୋହନ । ॥ ୬୮ ॥

ବ୍ରଜ ଯୁବତୀ ଉଚିତ ଯୁକତିକି ଶୁଣି ଶ୍ରୀହରି ପ୍ରେମ ଖେଳ । ପୂଣି ଅମ୍ବିକା ବନ ଜନଧା କୁଳ । କାମ କାଣ୍ଡରେ ବଚନ ଛାଡ଼ି ଯାଇ କହନ୍ତି ହୋଇ ଆକୁଳ ଯେ । ଏମନ୍ତ । ଶୋକାଥ ତର କାଳି ଅନୁସରି । ଏବେ ଅଡନ୍ତି ପ୍ରେତ ତନୁ ଧାରି । କୁଳ ଶୀଳ ତେଜି ହୋଇଲୁ ବାଉଳ ଲଜ୍ଜା ଦୂରେ ପରିହରି ହେ । ମୋହନ । ॥ ୬୯ ॥

ତୁମ୍ଭେ ଏଥକୁ ହୁଅ ସାହା ମାତର ମଦନ ତାପକୁ ଜନାଣି । ସେବା କରଣ ଅଛୁ ବ୍ରଜ ବାସୀ । ବୋଇଲ ସ୍ବରକୁ ଯାଅ ଯା ବାଞ୍ଛିକି ହୋଇଅଛୁ ତୁମ୍ଭ ଦାସୀ ହେ । ମୋହନ । ଅନେକ ଦୂରୁ ନଦୀ ବହି ଆସେ । କୂଳ ତେଜି ସେ ସିନ୍ଧୁ ସଙ୍ଗେ ମିଶେ । ରସରେ ରସି ନିଜ ଦେହ ମିଶାଇ ପୁଣି ଲେଉଟି କି ଅସେ ହେ । ମୋହନ । ॥ ୭୦ ॥

ଆଢଳ ଜଳ ମିଶାଇ ଅଙ୍ଗେ ତୀର୍ଥରାଜ ଅଭ ଯାଅ ବୋଲେକି । ବଦେଶୀ ନାସ୍ତି ବଜସ୍ଥ ବାଣୀକି । ଇଷିଟେ ରାଧାଙ୍କେ ଅଙ୍ଗେ ସ୍ମର ଶର ପ୍ରହାରେ ବେନ୍ଧପାଣିକ ଯେ । ଏମନ୍ତ । ଏଦ୍ଧି ରୂପେ ବନସ୍ଥ ବାଣୀ ଯେତେ । କହିଲେ ଚତୁରୀ କହିବ କେତେ । ଯୂଥ ଯୂଥଙ୍କ ସ୍ୱଭାବ ପ୍ରେମ ମାନ ବୁଝିଲେକ ଦିବ୍ୟ ଚକ୍ରେ ଯେ । ମୋହନ । ॥ ୭୧ ॥

ଇଷ୍ଟ ପେଡ଼ିଲେ ରସ ସ୍ତୁଏ ବାହାର ନଷ୍ଟୁ ର ପାଙ୍କେ ସ୍ୱାଦୁ ଅଛି । ହେମ ଦାହେ ଅଧିକ ହୋ[illegible] ଜ୍ୟୋତି । ତେସନ ହେମବରଣୀଙ୍କ ମାନସ ବୁଝି କୃଷ୍ଣ ତୋଷ ଅଛି ଯେ । ଏମନ୍ତ । ଯୁବତୀଙ୍କର ଦୃଢ଼ ବ୍ରତ ଜାଣି । ଆପଣେ ବାହ୍ନ ଶ୍ରୀକୃଷ୍ଣ ତୋଷ ପାଣି । ଏକାଳରେ ଶ୍ରୀରାଧିକା ଚନ୍ଦ୍ରାବଳୀ ପ୍ରବେଶ ସମସ୍ତ ଜାଣି ଯେ । ହରଷେ । ॥ ୭୨ ॥

ଦେଖିଲେ ବେଢ଼ି ଯୁବତୀ ଗଣ କୃଷ୍ଣେ ରତି ମାଗନ୍ତି ପ୍ରୀତି କରି । ଜାଣି ମଣ୍ଡଳ ଛାଡ଼ି ଆସି ହରି । ଆପଣେ ବେଢ଼ି ରମଣୀ ଗଣ ବନସ୍ଥରେ ହଜି ଅନୁସରି ଯେ । ବମାଏ । ବେନି ଜାଙ୍ଘିବା ମଧ୍ୟେ ପ୍ରବେଶିଲେ । କେତେ କେତେ ମିଶି ମନେ ହସିଲେ । ଷଣ୍ମୁଖ ମୁଖ ତଥି ଦେଖି ପ୍ରେମ ସିନ୍ଧୁ ଉଚ୍ଛୁଳ ଭୂଜ ଟେକିଲେ ଯେ । ମୋହନ । ॥ ୭୩ ॥

ମକରଧ୍ୱଜ ପ୍ରିୟ ନିତ୍ୟ ବସନ୍ତ ଉଛବ ନଥ ବନ୍ଧ ମୋଟେ । ଶୁଣି ରାଧା ଚନ୍ଦ୍ରାବଳୀ ବୃନ୍ଦ ତ । ବହିଲେ ଯାଇ ଶ୍ରୀକୃଷ୍ଣ ବେନି ପାଶେ ଅଛନ୍ତି ଆନନ୍ଦ ଚିତ୍ତ ଯେ । ସୁନ୍ଦରୀ । ବାମେ ରାଧା ଦକ୍ଷିଣେ ଚନ୍ଦ୍ରାବଳୀ । ମଧ୍ୟ ଶୋଭା ଦିଶନ୍ତି ବେନି ଅଳି । ଇନ୍ଦ୍ରନୀଳମଣି ପ୍ରଥମକୁ କିବା ସୁବର୍ଣ୍ଣ ପ୍ରାନ୍ତରେ ମିଳ ଯେ । ଏମନ୍ତ । ॥ ୭୪ ॥

ଚେନ୍ନା ସ୍ତନେ ଭୃଙ୍ଗ ଦେଇ କୃଷ୍ଣ ଶୋଭ୍ୟ କମଳ ମଧ୍ୟେ ମଧୁକର । ବାଳ ବେଢ଼ିଲେକ ଚନ୍ଦ୍ରେ ସୁର । ମଙ୍ଗଳ ସ୍ଥୂଳ-ସ୍ଥୂଳ ଦେଇ ଯେପାଦ୍ୱା ସେବାରେ ଦେଲେ ଚନ୍ଦୁରସେ । ବାମାଏ । ହସି ଶ୍ରୀହର ରମଣୀଙ୍କି ଘଷି । ଭୁମ୍ଭ ମାନସ ବନ୍ଧିଲ ସୁକେଶୀ । କୁଳ ଶୀଳ ଲଜ୍ଜା ଦୂର କର ମୋରେ ଅନୁରାଗକୁ ପ୍ରକାଶି ସେ । ସୁନ୍ଦରୀ । ॥ ୭୫ ॥

ଗୁରୁ ଗଉରବ ଭ ମାନ ନାଶିରେ ଗନ୍ଧନେ ଅଇଲ ଗୋ ସଖି । ମୋତେ କଣ ମନ, ଧନ ଦେଇ । ଏ ଦେହକୁ ଛୁବେ ଅର୍ଜୁଳ କି ଉପକାର କରବଇ ମୁହିଁ ଗୋ । ସଜନୀ । ଗୋପୀ ସମ୍ଭୂଷ ଭାପ ବମୋଚନେ । କୃଷ୍ଣ ଦ୍ରବାଇ ସରସ ବଚନେ । ମୂର୍ଛିତ ତରୁ ଯେଉଁ ରୂପେ ସରସ ହୋଏ ସଲ୍ଲଳ ସେଚନେ ସେ । ଗୋପୀଏ । ॥ ୭୬ ॥

ଇଭିପଭି ମଭି ଲୀଳସେ ଅଳସେ କୁଚ କଳଶ କେ ଦେଖାଇ । ହରହାସେ କେବଣ ବାଳ ଗୃହିଁ । ଉର ବସନ ଖୃଳନେ ଭ୍ରୂ ଭଙ୍ଗିରେ ଅପାଙ୍ଗକୁ ଚମକାଇ ସେ । ଗୋପୀଏ । କେଉଁ ସୁକେଶୀ କେଶ ଫେଇ ଖୋସେ । ଉଚ୍ଚ କୁଚ ଦେଖାଇବାର ଆଶେ । କୃଷ୍ଣଙ୍କୁ ଦେଖାଇ ହୋଇଲା ପରାଏ କେପଚୁଅଗକୁ ଅପେ ସେ । ଗୋପିକା । ॥ ୭୭ ॥

କେ ଭଙ୍ଗି କାଇ ମାତ୍ର ବାଇଁ ଫୁଟ୍ଟିକ୍ର କେ ବୋଲେ ସଖୀ ଶିବା କାହିଁ । ସଖୀ ଅଙ୍ଗୁଳ ଧର କେ ଫୁଟାଇ । ମଦନ ମଦେ ଘୂର୍ଣ୍ଣିତ ଚେଷ୍ଟେ କେହୁ ନଜ କପାଳ କଷଇ ସେ । ଏମନ୍ତ । କେହୁ ସଖୀକି ଆଲିଙ୍ଗନ କରେ । କେହୁ ଆଳକ ସଧୀରେ ପରୃରେ । କୁଞ୍ଜ କୁଟୀରେ ମନୋହର ହରିଙ୍କ ଲୀଳା କରନ୍ତି ଏଥିରେ ଗୋ । ସଜନୀ । ॥ ୭୮ ॥

କ୍ଷଣେ ମାତ୍ର ଶୋଇଥିବ ଏହିଠାରେ ଗନ୍ତବେଳେ ଦେବୁ ଉଠାଇ । କେହୁ ସଜନୀ ରଙ୍ଗେ କଥା କହି । ମନ ନନ୍ଦନ ଶ୍ରୀକୃଷ୍ଣ ଅଙ୍ଗେ ଦେଇ ଗୃହିଁ ନଗୃହିଁଲା ହୋଇ ସେ । ଚତୁରୀ । କେହୁ ରହି କୃଷ୍ଣ ଦୃଷ୍ଟି ମାର୍ଗରେ । ବନ୍ଧେ କର ନବେଣୀ ଛବିକରେ । କେ କୃଷ୍ଣ ପାର୍ଶ୍ୱେ କୁରେ ବାସ ହୋଇଜାଇ ମନ୍ଦ ମଥୁନ ହାସରେ ସେ । ସୁମୁଖୀ । ॥ ୭୯ ॥

କେହୁ ନାଗରୀ ଉସୁକେ ଶ୍ରୀକୃଷ୍ଣଙ୍କୁ ଆଶ୍ଳେଷ କରିବାକୁ ମନ । ବାମ ଅଛୁଟେ କମ୍ପେ ଅପର୍ଣ୍ଣନ । କୃଷ୍ଣଚନ୍ଦ୍ର ମୁଖେ କେ ଦୃଷ୍ଟି କରି ଭଙ୍ଗେ ଚକୋର ଲୋଚନ ସେ । ଚତୁରୀ । ଚନ୍ଦ୍ର ଦେଖିକି ଚନ୍ଦ୍ରକାନ୍ତ ଦ୍ରବେ । ସ୍ୱେଦ ବିନ୍ଦୁ ମୁଖରେ ଯେ ତ ଶ୍ରବେ । ସବୁ ଗୋପୀଙ୍କି ସମାନ କରି ହରି ପଦ୍ମନେତ୍ରେ ଚାହିଁ ଛବେ ସେ । ହରଷେ । ॥ ୮୦ ॥

ଏକଅରକେ ବଗ୍ରଚନ୍ତ୍ର ମୋହରେ ଦେଇଛନ୍ତି ହରି କଟାକ୍ଷ । କେ ବୋଲଇ ଶ୍ରୀହରି ଆମ୍ଭ ପକ୍ଷ । ଲକ୍ଷ ଲକ୍ଷ ଶ୍ରୀର ଘହାରିଲେ ମୂର କେ କରେ ଏଥର ଲକ୍ଷ ଗୋ । ସଜନୀ । ଶ୍ରୀକୃଷ୍ଣଙ୍କୁ କରିବାକୁ ବରଣ । ବନେ ପୁଷ୍ପ ତୋଳନ୍ତି କାମ୍ବି ଗଣ । ଯାଇ ପାଷ୍ଟ ହୋଇ ଡାଳକୁ ନୁଆଇଁ କହି ଛୁଇଁ କ୍ଲେଶ ମାନଙ୍କ । ଚତୁରୀ । ॥ ୮୧ ॥

ଏ କାଞ୍ଚି ନାଭି କୁଳ ନାଏ ଛରଣ୍ଡି ଗୁଧରେ ଅଙ୍ଗକୁ ରଙ୍ଗାଇ । ସୁବାସରେ କୃଷ୍ଣ ମନ ମୋହଇ । ତୋଳ ସଜନୀ ମଲ୍ଲି ମଲ୍ଲ ସୁବାସେ କୃଷ୍ଣ ମାନସ ହରଇ ଗୋ । ସଜନୀ । ଦେଖ ସଜନୀ ନଅଳ ପୁଷ୍ପକୁ । ଅତି ସୁନ୍ଦର ଗୋବନ୍ଦ ଗନ୍ଧକୁ । କେ ବୋଲେ ତୋଳଣ ମୁକୁନ୍ଦ ମୁଣ୍ଡରେ ଦେଇ ଦେଖିବ ଶୋଭାକୁ ଗୋ । ଚତୁରୀ । ॥ ୮୨ ॥

କେତେବୋଲେ କାମ କାମଦ ହେବ ଗୋ ଚୋକ ଗୁନ୍ଥିଦେବା ମେ ହେନେ । ସବେ ତୋଳନ୍ତି ପୁଷ୍ପ କୃଷ୍ଣ ଧାନେ । କେ ମାଳତୀ କେ ସେବତୀ କେ ମାଧବୀ ଚମ୍ପା କେତକୀ ସମନେ ଯେ । ଏମନ୍ତ । କେ କରୁଣା କେ ଚୋଳନାଗେଶ୍ୱର । କେହୁ ନାଗ ଉଗ୍ରେ କେ ତଗର । ଗୋବନ୍ଦ ଅଧଳ ଛୁଡକ ଧତୁରୁ ବାଲୁ କେ ତୋଳେ ମନ୍ଦାର ଯେ । ଏମନ୍ତ ॥ ୮୩ ॥

କେ ତମାଳ ତୋଳେ କୃଷ୍ଣ କାନ୍ତ ସ୍ନେହେ କେ ତୋଳେ ବକୁଳ ଉଛୁରେ । କେ କୁରୁଣ୍ଟକ କେହୁ କୁରୁବକେ । ପୁନ୍ନାଗ ଅଶୋକ ମରୁଆ ଦହଣା ତୋଳନ୍ତେ କେ ଏକେ ଏକେ ଯେ । ଏମନ୍ତ । ଏହିମତେ ସମସ୍ତେ ପୁଷ୍ପ ତୋଳି । ନାନା ଛନ୍ଦରେ ମାଳ ଗୁନ୍ଥି ବାନ୍ଧି । ମଙ୍ଗଳ ହୁଳହୁଳି ଦେଇ ଆନନ୍ଦେ ବନ୍ଦିଲେ ଶ୍ରୀବନମାଳୀ ଯେ । ଗୋପୀଏ । ॥ ୮୪ ॥

ମନ୍ଦ ସମୀର ବିନ୍ଦୁତ ଗନ୍ଧ ବହଇ ମଙ୍ଗଳ ଧ୍ୱନି ଦ୍ୱିଜକୁଳ । ଶୋଭି ଯମୁନା ନଦୀ ପରିସର । ଗୋପ କନ୍ୟା କୃଷ୍ଣ ଗାନ୍ଧର୍ବ ବିବାହ ହେଲେ ସୁଷମା ପ୍ରବନ୍ଧ ଯେ । କାନରେ । ଯେଯାହା ମନେ ଇଚ୍ଛାବର ବରି । ଫେଙ୍ଗା ଫେଙ୍ଗି କୁସୁମ ଗୁଚ୍ଛ ଧରି । ରାଧା ଚନ୍ଦ୍ରାବଳୀ ଆଦି ମାଳ ଦେଇ ରୂପ ଉତ୍ସବରେ ବରି ଯେ । ହରଷେ । ॥ ୮୫ ॥

ଏକ ଏକରେ କୃଷ୍ଣ ପ୍ରେମ ପୂରିତ କୁସୁମ ମଣ୍ଡିତ ସର୍ବାଙ୍ଗେ । ଅନୁସରିଛୁ ଫୁଲଧନୁ ସଙ୍ଗେ । ଭୁଜ ଘେର ଦେଇ ଗୋପୀଙ୍କ ସ୍କନ୍ଧରେ ଚଳେ ବହୁରଣ୍ଡ ରଙ୍ଗେ ଯେ । ମୋହନ । ଚରୁ କରୁ ଦୂରରେ ହୋଇ ଉଭା । ଦେଖି କାନନ ପରିମଳ ଶୋଭା । କୁସୁମେ ବିହାର କରନ୍ତି ମଧୁପେ ମଧୁ ପାନେ ହୋଇ ଲୋଭା ଯେ । ମୋହନ । ॥ ୮୬ ॥

ଶୋଭିତ ବନ ବିବିଧ ମଧ୍ୟେ ନୀଳ ଶୁକ୍ଳ ରଙ୍ଗ ସୁମନ । ଘନ ନବ ପଲ୍ଲବେ ଅତି ଘନ । ମଳୟ ମରୁତ ମନ୍ଦେ ବହେ କି ଏ ମଦନ ଚତୁ ଭୁବନ ସେ । କାନନ । ପୁଣି ପକ୍ଷୀଏ ଭାଷନ୍ତି ମଧୁର । ଚନ୍ଦ୍ର କିରଣ ଅତି ମନୋହର । ଯମୁନା ଜଳ ବେଣୀ ଅତି ଦୀପିତ କାମ ଉଦ୍ଦୀପନର ସେ । କାନନ । ॥ ୮୭ ॥

ନାଗର ବର ଦେଖାଇ ସୁମୁଖୀଙ୍କି ପୁର ପ୍ରବଳେ ଗିର ସ୍ଥଳ । ପୁଣି ଯମୁନା ଜଳେ ପଦ୍ମ ଶୋଭା । ନିର୍ମଳ ବନ କାନନ ମନୋହର ପୁଳିନ ବନରେ ମିଳ ସେ । ହରଷେ । ଭୂମି ହରିତ ବସ୍ତ୍ର ସମାନ । ଷଡ ଋତୁ ଯେହ୍ନେ ସେବେ ମଦନ । ଖଗ ମୃଗ ଦ୍ରୁମ ମୂର୍ତ୍ତିମନ୍ତେ ନିତ୍ୟ ଗୋବିନ୍ଦ ରୂପ ଭବନ ସେ । ସ୍ଥଳରେ । ॥ ୮୮ ॥

ସେ ବନ କର୍ତ୍ତି କେଉଁପାରିବ ଶ୍ରୀରାଧାକୃଷ୍ଣ ବେନିଯହିଁ ବିହାର । ଯେଉଁ ରମଣୀ ଗଣ ସେ ବନର । ରାସ ଉତ୍ସବ ଲୀଳାକୁ ଆରମ୍ଭିଲେ କୋଟି ମଦନ ସୁନ୍ଦର ସେ । ମୋହନ । ତାରା ମଧ୍ୟେ ପୂର୍ଣ୍ଣ ଚନ୍ଦ୍ର ଯେସନ । ନାଗରୀଗଣେ ଶ୍ରୀକୃଷ୍ଣ ତେସନ । ବିବିଧ ରସେ ରସି ତୋଷେ ବସିଲେ ମଣ୍ଡଳୀ କରି ଯତନ ସେ । ମୋହନ । ॥ ୮୯ ॥

ବଜାଇ ମର୍ଦ୍ଦଳ ତାଳ ଅତି ରଙ୍ଗେ ଗାଇଲେ କେଦାର ରାଗକୁ । କେହୁ ବଜାଏ ଯତନେ ବୀଣାକୁ । ଡମ୍ଫ ଅମୃତିର ବାଦ୍ୟ ଯନ୍ତ୍ର ଗଣ ବଜାନ୍ତି ଯେଝାମନକୁ ସେ । ଏମନ୍ତ । କେହୁ ସାରଙ୍ଗି କେ ମରୁ ମର୍ଦ୍ଦଳ । ବାଳା ଗାଇଲେ ଅନୁସରି ତାଳ । ଗୋବିନ୍ଦ ସ୍ୱରେ ଉଚ୍ଚେ ମିଳି ଗାଇଲେ ଖଗ ମୃଗ ଶୁଣି ମୋହିଲେ ସେ । ହରଷେ । ॥ ୯୦ ॥

ଦେଖି ଚମକ ସର୍ବେ ହୋଇ ସ୍ତମ୍ଭିତ ନଇର ଦେଖି ଏକ ମେଳ । ଦ୍ରୁମ ଶାଖ ବଙ୍କିଗଲେ ଅଚଳ । ଶୁଣି ଅଭିନ୍ନ ଆନନ୍ଦରେ ଯମୁନା ରହିଲେ ହୋଇ ନିଶ୍ଚଳ ସେ । ହରଷେ । ଅତି ସରସ ତରୁ ତୃଣ ଲତା । ଫଳ କୁସୁମ ମଧ୍ୟରେ ଶୋଭିତା । ପବନ ଯେନ ଶ୍ରୀକୃଷ୍ଣଙ୍କ ପଦ୍ମରେ ହୋଇ ଅଛନ୍ତି ନମ୍ରତା ସେ । ଏମନ୍ତ । ॥ ୯୧ ॥

ନବରସବନ୍ତ ନାଗର ସଙ୍ଗତେ କରନ୍ତି ରଙ୍ଗେ ନୃତ୍ୟ ଲୀଳା । ସର୍ବେ ସଙ୍ଗୀତ ସାହିତ୍ୟେ କୁଶଳା । ରସ ଚତୁରୀ ମାନଙ୍କେ ଗୋବିନ୍ଦଙ୍କ ମନ ମୋହିଲେ ଅବଳା ସେ । ଚତୁରୀ । ଗୋପୀ ମଣ୍ଡଳେ ଶ୍ରୀକୃଷ୍ଣ ନାଚନ୍ତି । ତାଳ ମାନେ ବାଳୀ ଉଚ୍ଚେ ଗାଅନ୍ତି । ନଟବର ବେଶେ ରସେ ଢଳଢଳ ପ୍ରେମେ ଉତ୍ସୁକିତ ଅତି ସେ । ମୋହନ । ॥ ୯୨ ॥

ସମସ୍ତ ଗୋପୀଙ୍କ ଆଗରେ ମୁଖରେ ମୁଖ ନେତ୍ରେ ନେତ୍ର ନବେଣୀ । ହସ୍ତ ମସ୍ତକ ଭଙ୍ଗିମା ପ୍ରକାଶି । ଅପାଙ୍ଗ ଭଙ୍ଗି ଇଙ୍ଗିତେ ଠାର ହସ ମୋହିଲେ ସର୍ବ ସୁକେଶୀ ସେ । ମୋହନ । ଶୃଙ୍ଗ ଭ୍ରୂଲତା ନାଶିକା ଫୁଲାଇ । ତନୁ କମ୍ପାଇ ପ୍ରେମ ପୁଲକାଇ । ମଧୁରେ ହସି ପ୍ରେମଭରେ ନୟନୁ ଆନନ୍ଦେ ଅଶ୍ରୁ ବୁହାଇ ସେ । ମୋହନ । ॥ ୯୩ ॥

ଗାଇ ବଜାଇବା ଦେଖିଣ ରହିଲେ ସାକ୍ଷିକେ ସର୍ବ ବ୍ରଜ ବାଳୀ । ରାଧା ଭୁଜଙ୍ଗବନ୍ଧ୍ୟା ବେନି ଶ୍ରୀପାଳି । ଗାନ କରନ୍ତି ଗୋବିନ୍ଦ ସଙ୍ଗେ ଅତି ଆନନ୍ଦେ ସୁସ୍ୱରେ ମିଳି ସେ । ଚତୁରୀ । କୃଷ୍ଣ ମୁଖ ପଦ୍ମ ଅତି ରୁଚିର । ଗୋପୀ ନୟନ ମତ୍ତମଧୁକର । ମଧୁର ମକରନ୍ଦ ଆଶେ ଧ୍ୱନିକ ଦେଖି ମନ୍ଦନ୍ତି ସତ୍ୱର ସେ । ଏମନ୍ତ । ॥ ୯୪ ॥

ଶ୍ରୀକୃଷ୍ଣ ବହୁ ମୂର୍ତ୍ତି ଭଙ୍ଗି ଆରମ୍ଭି ଯୋଡି ଯୋଡି ହୋଇ ରହିଲେ । ଏହି ରୂପେ ଗୋବନ୍ଦ ଲୀଳା କଲେ । ଉପାସନା ବଇଷ୍ଣବଙ୍କ ବସ୍ତୁର ମାନସରେ ଭଜ ଭଲେ ହେ । ସୁଜନେ । ଦୁଇ ଗୋବନ୍ଦ ଦୁଇ ଗୋପୀ ରହି । ବ୍ୟାପି ମଣ୍ଡଳେ ବୃନ୍ଦାବନ ମହୀ । ପାଶକେ କୃଷ୍ଣ ଅରପାଶେ ସଜନୀ ଅଛିହିଁ ଅନନ୍ଦ ହୋଇ ସେ । ସମସ୍ତେ । । ୯୫ ॥

ଅନନ୍ତ ଶକ୍ତି ଜନାଣି ବସ୍ତୁରନ୍ତ ଶ୍ରୀକୃଷ୍ଣ ମୋର ପାଶେ ଛନ୍ତି । ଅନେ ନ ରସିଣ ମୋରେ ପୀରତି । ଧ୍ୟାନନ୍ତି ଶ୍ରୀକୃଷ୍ଣ ସଙ୍ଗତେ କେମନ୍ତେ ଏକାନ୍ତେ ହେବ ସୁରତି ସେ । ଗୋପୀଏ । ସବେଁ ଏମନ୍ତ ଚତ୍ତ୍ୱରେ ବସ୍ତୁର । ଗାଇ ବାଇ ନାନା ନୃତ୍ୟ ପ୍ରସ୍ତୁର । ଦକ୍ଷିଣେ ଚନ୍ଦ୍ରାବଳୀଙ୍କ ସଖୀ ବାମେ ଶ୍ରୀରାଧାଙ୍କ ସହଚରୀ ସେ । ଏମନ୍ତ । । ୯୬ ॥

ନୀଳମଣିରେ ହେମମଣି ପଦ୍ମାଏ ଯୋଡି ଯୋଡି ଅତି ମଞ୍ଜୁଳ । ବୃନ୍ଦାବନ ହୃଦେ ମୋହନ ମାଳ । ଅଦ୍ୟେ କାଳନ୍ଦୀ ନୀଳା ହାର ଦିଶନ୍ତେ ବଳୟର ମୋତି ମାଳ ସେ । ସୁନ୍ଦରୀ । ବନ ଭୂଷଣେ ରତ୍ନହାର ପ୍ରାୟେ । ଖଗମୃଗେ ଚତୁର୍ଥେ ଶୋଭାମୟେ । ପଞ୍ଚମେ ଦେବଗଣେ ସେବ ରହିଲେ । ଷଷ୍ଠେ ସମସ୍ତ ସଖୀଏ ସେ । ଏମନ୍ତ । ॥ ୯୭ ।

ସପ୍ତମେ ଗୋପୀ ଗୋବନ୍ଦ ଅଷ୍ଟମେ ଶ୍ରୀରାଧା ମାଧବ ଯୁଗଳେ । ହେମ ମଣ୍ଡପେ କଳ୍ପଦ୍ରୁମ ମୂଳେ । ଦେଖିଏ ଗୋପୀନାଥଙ୍କ ବହୁ ମୂର୍ତ୍ତି ବ୍ରହ୍ମା ଛାପକୁ ଢେଙ୍କିଲେ ସେ । ମାନସୁ । ସଖୀ କର କେ ଅରକରେ ଧର । ଏହି ରୂପରେ ସବେ ନୃତ୍ୟକର । ଭ୍ରମନ୍ତ ରମନ୍ତ ଗୀତ ଗାଇ ସ୍ୱଚ୍ଛେ ନବେଶି ବ୍ରଜ ବଲ୍ଲଭୀ ସେ । ସମସ୍ତେ । । ୯୮ ॥

ରମଣୀଗଣ ନବନୀତ ପରାଏ ହୋଇ ଅତିଶୟ ତରଳ । ମିଶି ମାନସେ ମାନସ ବନ୍ଧନ । ନୃତ୍ୟରସ ଶ୍ରମେ ଗୋପୀଙ୍କ ମୁଖରୁ ଝର ଟୋପି ଟୋପି ଯାଇ ସେ । ଶ୍ରମରେ । ନାଭିଅଞ୍ଚଳେ ଛପି ବହ୍ନି ହର । ଦେଇ ଚୁମ୍ବନ ଶ୍ରମକୁ ନିବାର । ଲାବଣ୍ୟକୁ ଲୁହିଁ ଏହି ସମୟରେ ମଦନଶର ପ୍ରହାର ସେ । ଏମନ୍ତ । ॥ ୯୯ ॥

ସଖୀ ସ୍କନ୍ଧରୁ କର ଆଣି ଶ୍ରୀକୃଷ୍ଣେ ଆଶ୍ଳେଷ କରନ୍ତି ରମଣୀ । କହି ଯେସାହା ମତେ ମୃଦୁ ବାଣୀ । ନୃତ ନିକୁଞ୍ଜରେ ପଶି ବିଳସିଲେ କେ କାହା କଥା ଜାଣି ଯେ । ସମସ୍ତେ । ଘେନି କୃଷ୍ଣଙ୍କୁ ଏକା ମୁ ରମଇଁ । ବୋଲି ମନେ ସମସ୍ତେ ଗର୍ବ ବହି । ଯେତେ ନାରୀ କୃଷ୍ଣ ତେତେ ମୂର୍ତ୍ତି ହୋଇ ଗୁପତେ ଲୀଳାକୁ ବହି ସେ । କୁଞ୍ଜରେ । ॥ ୧୦୦ ॥

ଏକାନ୍ତେ ଦମ୍ପତି ବିବିଧ ସୁରତି ବନ୍ଧେ ସୁର ଭାପ ନିବାର । ଲୀଳା ରସରେ କିଶୋର କିଶୋରୀ । ଏକ ଆରକେ ଅତିହିଁ ପ୍ରେମଭରେ ଦେହ ବୁଝିକି ପାସୋର ସେ । ଏମନ୍ତେ । କୃଷ୍ଣ ଅଙ୍ଗ ସଙ୍ଗେ ନବ ବନିତା । ମନ୍ତ୍ର ତେଜିଲେ ଚିରକାଳ ଚିନ୍ତା । ମତି ଶାନ୍ତ ନୋହେ ସୁରତି ରସରେ ଉତ୍ସୁକିତ କାନ୍ତ କାନ୍ତା ସେ । କାଳରେ । । ୧୦୧ ।

ଚିରଂ ମନୋରଥ ହୋଇଲା ସମ୍ପୂର୍ଣ୍ଣ ମଦନେ ଶାନ୍ତିକି ନ ହନ୍ତି । ଅନୁରାଗେ ଅଧିକ ବଢ଼େ ମତି । ଉରଜେ ଉର ଲଗାଇ ସ୍ନେହଭରେ ଗାଢ଼େ ଆଶ୍ଳେଷ କରନ୍ତି ଯେ । ମୋହନ । କୁଞ୍ଜେ କୁଞ୍ଜେ ଏମନ୍ତ ନାନା କେଳି । ହୋଇ ସ୍ୱାଧୀନ ଭର୍ତ୍ତା ବନମାଳୀ । ପ୍ରେମେ ରସାଇ ବସାଇ ଅଙ୍କେ କୃଷ୍ଣ ବେଶ କଲେ ସର୍ବ ବାଳୀସେ । ମୋହନ ॥ ୧୦୨ ।

ନାନାମତେ ବେଶ କରି ପୀତବାସ ମନେ ହୋଇ ଅତି ହରଷ । ପୁଣି ଆରମ୍ଭିଲେ ମହା ରାସ । ଗାନ ନୃତ୍ୟ ନାନା ବାଦ୍ୟ ଯନ୍ତ୍ର ଘୋଷେ ପୂରିଲା ଦିଶ ଆକାଶ ଯେ । ଏମନ୍ତେ । ଶ୍ରବଣରେ ଦ୍ରବ କାଷ୍ଟ ପାଷାଣ । ହେଲେ ସ୍ତମ୍ଭିତ ଖଗ ମୃଗ ଗଣ । ଆକାଶେ ଦୁନ୍ଦୁଭି ବାଇ ତୋଷେ ପୁଷ୍ପ ବରଷିଲେ ଦେବ ଗଣ ଯେ । ଏମନ୍ତ । ॥ ୧୦୩ ॥

ମଧ୍ୟରେ ହେମ ପୀଠରେ ରାଧାକୃଷ୍ଣ ଶୋଭନ୍ତ କବା କଳ୍ପ ଦ୍ରୁମ । ବେଢ଼ି ନୃତ୍ୟ ମଣ୍ଡଳୀ ମନୋରମ । ତାଣ୍ଡବେ ପ୍ରଦକ୍ଷିଣ କରନ୍ତି ହବା ବହୁରୂପେ ରତି କାମ ଯେ । ଏମନ୍ତେ । କୃଷ୍ଣ କରେ ଧରି କୁଚ ମନ୍ଦର । ମନ୍ଥିଲେ ଷ ନାରୀଗଣ ସାଗର । ଉଜ୍ଜ୍ୱଳ ରସ ଅମୃତ ଜାତ ହଲେ ହୋଇ ଅତି ତୋଷବର ଯେ । ସେକାଳେ । ॥ ୧୦୪ ॥

ପୁଣି କୁଞ୍ଜରେ ପ୍ରବେଶ ହୋଇ ନାନାମତେ ବଢ଼ିଲେ ଲୀଳା ମାନ । ରାଧା ମାଧବ ଅତି ତୋଷମନ । ଶ୍ରୀମତୀ ପୁଛନ୍ତି ଏଥିରୁ ଅଧିକ କି ଲୀଳା ଅଛି ମୋହନ ହେ । ଏମନ୍ତ । କୃଷ୍ଣ କହନ୍ତି ଶୁଣ ପ୍ରାଣସଖି । ଇକ୍ଷୁ ସେତନ୍ତେ ଅତି ସ୍ୱାଦୁ ହୋଇ । ବିପ୍ରଲମ୍ଭ ରସ ଅଛି ଜୀବଧନ ଏଥିରୁ ଅଧିକ ହୋଇ ଯେ । ସଜନୀ । ॥ ୧୦୫ ॥

ଏତେ କହି ଯୁଗଳ ମୂର୍ତ୍ତି ଏକ ସ୍ୱରୂପ ହୋଇଲେ ଶ୍ୟାମ-ଘନ । ଘେନି ଶ୍ରୀମତୀଙ୍କି ସଙ୍ଗେ ବହନ । ଗୋପୀଗଣ ତେଜି ଶ୍ରୀବୃନ୍ଦାବନରେ ହୋଇଲେକ ଅନ୍ତର୍ଦ୍ଧାନ ଯେ । ମୋହନ । କୃଷ୍ଣ ନଦେଖି ଶୋକ ଜଳେ ବୁଡ଼ି । ଗୋପୀ ଉରସ୍ତେ ବନେ ପଶି ଲେଡି । ମଦନ ଆରତ ହୋଇ ଯେ ଡାକନ୍ତି କାହିଁ ଗଲ ଶ୍ୟାମ ଛାଡ଼ି ହେ । ମୋହନ । ॥ ୧୦୬ ॥

ନୟନ ମୀନ କୃଷ୍ଣ ଜଳ ବିହୀନେ ଜୀବନ ପାରଇକି ଧରି । ଚନ୍ଦ୍ର ନଦେଖି ଯେସନେ ଚକୋରୀ । ବୋଲନ୍ତି ସେବେ ଅଣି ଘୋର ବନସ୍ତେ ଛପି ନଦେଖିଲ ହରି ହେ । ମୋହନ । କୂଳେ ନରଖି ଜଳରେ ଉପଇ । ମୂଳ କାଟିଛ ବୃକ୍ଷରେ ବଢାଇ । ଏରୂପେ ସ୍ରେଦନ କରନ୍ତି ଶ୍ରୀକୃଷ୍ଣମୂର୍ତ୍ତି ଦର୍ଶନ ନ ପାଇ ସେ । ଗୋପୀଏ । ॥ ୧୦୭ ॥

ମଥୁରେ ସେଠାରୁ ଚଳ ଯାଇ ସର୍ବେ ଯମୁନା କୂଳ ବନେ ମିଳ । କୁଞ୍ଜେ କୁଞ୍ଜେ ଲୋଡନ୍ତି ଗୋପବାଳୀ । ନଦେଖି ମିଛହିଁ କେହୁ ଗୋପୀ ବୋଲେ ଦେଖିଲି ମୁ ବନମାଳୀ ଗୋ । ସଜନୀ । ଦେଖି ନପାଇ ଯେହ୍ନେ ଯୂଥପତି । କରିଣୀ ଯୂଥ ଅକୁଳ ହୁଅନ୍ତି । କୃଷ୍ଣଙ୍କୁ ନଦେଖି ସର୍ବ ଗୋପାଂବାଳା ହୋଇଲେ ଚେତନ ମତି ସେ । ଏମନ୍ତେ । ॥ ୧୦୮ ॥

କୃଷ୍ଣଙ୍କୁ ଦେଖିଲା ପ୍ରାୟେ ହୋଇ କେହୁ ଗତ ଅନୁରାଗ କହଇ । ବୋଲେ ହତ୍ତମେ କୃଷ୍ଣମୂର୍ତ୍ତି ଗୃହିଁ । ହୋଇ ଉନ୍ମତ୍ତ ଉଚ୍ଚରେ ଗାଇ ଗୀତ ଗମନ୍ତି ସକଳ ସଖୀ ସେ । ଏମନ୍ତେ । ସର୍ବଭୂତେ ଶ୍ରୀକୃଷ୍ଣ ରୂପ ଧ୍ୟାଇ । ପୁଣ ପୁଛନ୍ତି ତରୁ ଲତା ଗୃହିଁ । ଅହେ ଅଶ୍ୱତ୍ଥ ବଟ କହ ଆମ୍ଭର ମୋହନ ଅଛନ୍ତି କାହିଁ ହେ । ତରୁଏ । ॥ ୧୦୯ ॥

ଅହେ କୁରୁବକ ପୁନ୍ନାଗ ଅଶୋକ ଚମ୍ପକ କହ କୃପା ଚତ୍ତେ । ମାନ୍ନମାଙ୍କ ମନ ହରି ଗୃହରେ । ଅକରୁଣା ହୋଇ କରୁଣାସାଗର ଯାଇଛନ୍ତି କି ଏ ପଥେ ହେ । ଲତାଏ । ଅଗୋ ତୁଳସୀ କୃପାଚତ୍ତେ କହ । ତୁମ୍ଭେ ଗୋବିନ୍ଦ ପାଦ ପଦ୍ମ ପ୍ରିୟ । କେଉଁ ଅପରାଧ ବୁଝି ଶ୍ୟାମବନ୍ଧୁ ତେଜିଲେ ଆମ୍ଭ ସେନେହ ଗୋ । ତୁଳସୀ । ॥ ୧୧୦ ॥

ଅଗୋ ମଲ୍ଲିକା ମାଲତୀ ଜାତି ଯୂଥି କୃଷ୍ଣ ଅଛିନ୍ତି ପ୍ରୀତି ବଢ଼ି । ଅତ୍ୟନ୍ତ କି ଭ୍ରମର ପାଶେ ରହି । କୃଷ୍ଣ ଅଙ୍ଗ ଲାଗି ପ୍ରଫୁଲ୍ଲ ହୋଇଛ ଆମ୍ଭ ଦୁଃଖ ନାଶ କରି ଗୋ । ଲତାଏ । ଅହେ ଜମ୍ବୁ ପନସ କୋବଦାର । ବେଲ ବକୁଳ କଦମ୍ବ ନାଗର । ବରହେ ଅଭୁଲ କରାଇ ଅମ୍ଭଙ୍କୁ ଛାଡ଼ି ଗଲେ ଦାମୋଦର ହେ । ତରୁଏ । ॥ ୧୧୧ ॥

ବନ୍ଧୁକ ଅଧର ଗୃହି କେ ଶ୍ରୀକୃଷ୍ଣ ଅଧର ବୋଲି ଚୁମ୍ବ ଦେଇ । ପୁଣି ଅତି ବରସରେ ଚାହଇ । ଆମ୍ଭଙ୍କୁ ଛାଡ଼ିବାରୁ କୃଷ୍ଣ ଅଧରେ ଗତ ମଧୁରତ ନାହିଁ ଗୋ । ସଜନୀ । କେହୁ ନାରୀ ଜଳରେ ପଦ୍ମ ଦେଖି । ବୋଲେ ଶ୍ରୀକୃଷ୍ଣ ମୁଖ ଦେଖ ସଖୀ । ଜଳରେ ଶ୍ରୀଅଙ୍ଗ ଲୁଚାଇ ଅମ୍ଭଙ୍କୁ ବଦନ ଟେକ ନାରେଖି ଗୋ । ସଜନୀ । ॥ ୧୧୨ ।

କେହୁ ଗୋପୀ କୃଷ୍ଣ ପ୍ରାଏ ଗର୍ବ ବୋଇଲ ଦେଖଗୋ ମୁହିଁ ବନମାଳୀ । ଲୋଡ଼ କାହାକୁ ଅଉ ସବୁ ବାଳୀ । ମୋର ଶିରେ ଅଣି କୁସୁମ ନାଉଜ ଏମନ୍ତ ବଚନ ବୋଲି ସେ । ସଜନୀ । ଉରୁ ଉଲେ କେ ତ୍ରିଭଙ୍ଗିରେ ରହି । ତାଳ ଖଣ୍ଡେ ଧରି ବଂଶୀ ବଜାଇ । ମୁହିଁ ପୀତବାସ ଗୃହପତି ଅଷ ଭେଟି ଅଇଲ କପାଇଁ ଗୋ । ସଜନୀ । । ୧୧୩ ।

କେ ବାସ ଧରି ବୃକ୍ଷରେ ପିଟି ବୋଲେ ବରି ମୁଁ ବସାସୁର ମାରି । ଲତା ଧରି କେ ବେକଫାଳେ ଚଢ଼ି । ବୋଲେ କୃଷ୍ଣ ମୁଁ ବକାସୁର ମାଇଲି ଏହିମତେ ଗୋପନାରୀ ଯେ । ବନରେ । କୁଞ୍ଜେ ପଶି କେ ଉପରକୁ ଉଠି । ବୋଲେ ବାହାର ଅଘାସୁର ପେଟୁ । ଉଚ୍ଚେ ରହି ନୃତ୍ୟକରି କେ ବୋଲଇ କାଳୀ ଦଳିଲି ମୁହିଁ ଗୋ । ସଜନୀ । ୧୧୪ ।

ଉପବ୍ରଣ ବାସ କରେ ତୋଳ କେହି ବୋଲଇ ଗୋବର୍ଦ୍ଧନ ଗିରି । ଏଥି ତଳେ ଅଛି ରହ ଚତୁରୀ । ଏମନ୍ତେ ଗୋପୀ କୃଷ୍ଣ ଗୁଣ ମାନଙ୍କୁ କହି ବନସ୍ତେ ସଞ୍ଚର ଯେ । ଏମନ୍ତେ । କେହୁ ପୂତନା ପରାଏ ହୁଅଇ । କୃଷ୍ଣ ପରାଏ ସ୍ତନ କେ ପିଅଇ । ଶକଟା ପ୍ରାଏ କେ ରହନ୍ତେ କେ ନେଇଁ ପଦପ୍ରହାର କରଇ ଯେ । ସଜନୀ । ॥ ୧୧୫ ॥

ଏମନ୍ତେ କାନନ ଅନ୍ତାରେ କୃଷ୍ଣଙ୍କୁ ନ ଦେଖି ସମସ୍ତେ ଅକୁଳ । ବୁଲି ବୁଲି ଯମୁନା ନଦୀ କୂଳ । କେତେ ଦୂରେ ଗୋପୀ ଦେଖିଲେ ଶ୍ରୀକୃଷ୍ଣ ଚରଣ ଚିହ୍ନ ମଞ୍ଜୁଳ ଯେ । ବାମାଏ । ଧ୍ୱଜ ବଜ୍ର ରଥାଙ୍ଗ ପଦ୍ମ ମୀନ । ବୋଲନ୍ତି ଏତ କୃଷ୍ଣ ପାଦ ଚିହ୍ନ । ପୁଣି ଯେ ପାଦପରେ ଏକ ଚରଣ ପଡିଛୁ କଲେ ଲୋଚନ ଯେ । ସଜନୀ । ॥ ୧୧୬ ॥

କେ ବୋଲେ ବନେ ଯୁବତୀ ସଙ୍ଗେ ଯେନ କରନ୍ତି ଏକାନ୍ତେ ବିହାର । କେ ବୋଲଇ ଧନ୍ୟ ଜୀବ ତାହାର । ଅଶେଷ ପୁଣ୍ୟ କରିଛି ପୂର୍ବେ କୃଷ୍ଣ ବଶ ହୋଇଲେ ତାହାର ଗୋ । ସଜନୀ । ପୁଣି କ୍ଷିତିକି ପ୍ରଶଂସା କରନ୍ତି । ତୁ ଯେ ଅଟୁ ଅଛିହିଁ ପୁଣ୍ୟବତୀ । ଶ୍ରୀକୃଷ୍ଣ ପଦ ଚିହ୍ନ ଅଙ୍ଗେ ବହିଲୁ ଲଭିଲୁ ଅଶେଷ ଗତି ଗୋ । ଧରଣୀ । ॥ ୧୧୭ ॥

ଏତେବୋଲି ଅତି ବିହ୍ୱଳିତେ ସ୍ମରଣରେ କାତର ହୋଇ ଦେହ । ତହିଁ ଚଳିଲେ ଗୋପିକା ସମୂହ । କେତେ ଦୂରେ ଚୂଡ଼ ମାନ କେ ଧରନ୍ତି ବହି ଅଛିହିଁ ସେନେହ ଯେ । ଏମନ୍ତ । ଚାମ୍ପାକୁଚ କୁଙ୍କୁମରେ ରଞ୍ଜିତ । ହୋଇଅଛନ୍ତି ଚୂଡ଼ ମାନ ଏଥ । କେ ବୋଲେ ଏଠାରେ ବପିଣ କବରୀ ଖୋସୁଥିଲେ ନନ୍ଦ ସୁତ ଗୋ । ସଜନୀ । ॥ ୧୧୮ ॥

ତବ ଅଙ୍ଗ ସଙ୍ଗେ ସୁଗନ୍ଧ ବିଶେଷ ହୋଇଛୁ ଗୋ ସଖୀ . ଏହାର । କେତେ ସୁବାସ ଗୋ ତନୁ ତାହାର । କେ ବୋଲେ ତାହାଙ୍କୁ କେମନ୍ତେ ଜାଣିବା ନାହିଁ କେଅମ୍ଭ ସଙ୍ଗର ଗୋ । ସଜନୀ । ବୃନ୍ଦାବନ ଯାକରେ ଛନ୍ତି ପୂର । ଯୂଥ ଯୂଥକେ ସବ ଯୂଥେଶ୍ୱରୀ । ଲଳିତାଦି ସଖୀ ଶ୍ରୀମତୀ ବିଶାଖେ ଲେଉଛନ୍ତି ଅନ୍ୱେଷି ସେ । ବସାଦେ । ॥ ୧୧୯ ॥

ପଥ ପର୍ବତ ପାଦଚିହ୍ନ ଦେଖିଣ ଜାଣି ତୋଷ ସବ ସୁମୁଖୀ । କୃଷ୍ଣ ସଙ୍ଗେ ଅଛନ୍ତି ଆମ୍ଭ ସଖୀ । ସଜନୀ ଗଣ ଜାଣିବାପାଇଁ ଖୁନ୍ଦ ମାଳ ଯାଇଛନ୍ତି ରଖି ଗୋ । ସଜନୀ । ମାଗି ଗୋପୀଙ୍କି ସେ ମାଳ ପେନଲେ । ରାଧା ଗଳା ଖୁନ୍ଦମାଳ ଚହ୍ନିଲେ । ଉଜ୍ୱଳ ଚନ୍ଦ୍ର କରଣେ ଯୋଡ଼ି ଯୋଡ଼ି ପାଅ ପଡ଼ିଛୁ ଦେଖିଲେ ଯେ । ସଜନୀ । ॥ ୧୨୦ ॥

ବୋଲନ୍ତି ଦେଖ ଫୁଲ ଖସି ପଡ଼ିଛୁ ସୁଗନ୍ଧ ଲୋଭେ ଭ୍ରମେ ଅଳି । କୁଚେ ଲିହି କସ୍ତୁରୀ ପତ୍ର ବଲ୍ଲୀ । କର କମ୍ପିବାରେ ପଡ଼ିଛୁ ମହିରେ ବୋଲନ୍ତି ସକଳ ଅଳି ସେ । ଏମନ୍ତ । ଏଥି ପାଦେ ଦେଇଛନ୍ତି ଅଳତା । କୃଷ୍ଣ ମାନସ ମୋହିଲା ବନିତା । ଭୁଞ୍ଜିଥିଲା ପରା ପାନ ପିକ ଏଥୁଁ ହୋଇଛୁ ମହି ଶୋଭିତା ଗୋ । ସଜନୀ । ॥ ୧୨୧ ॥

କୋମଳ ପଲ୍ଲବ ଶେଯରେ ଏଠାରେ କରିଥିଲେ ବାଳୀ ଶୟନ । କରି ଶ୍ରୀକୃଷ୍ଣ ଉର ସମସ୍ଥାନ । ଉଠି ଏଠାରୁ ଯାଇଛନ୍ତି କେ ବୋଲେ ଦେଖି କୃଷ୍ଣ ପାଦଚିହ୍ନ ସେ । ଏମନ୍ତ । ଏକା ନାଗରବର ପାଦ ଦିଶି । ତହିଁ ଏମନ୍ତ ସବ ଗୋପୀ ଧ୍ୟାଷି । ଅଳତାରେ ଧୂଳି ଲାଗିବ ବୋଲିଣ ସ୍ନେହେ ବହିଲେ ସୁକେଶୀ ସେ । ସଜନୀ । ॥ ୧୨୨ ॥

ଦେଖ ଏ ମାଳତୀ ଲତାରୁ ନାଗରୀ ହସ୍ତେ ଥାଇ ତୋଳୁ ସୁମନ । ହସ୍ତ ନ ପାଇବାରୁ ଶ୍ୟାମଘନ । ପାଦ ଅଗ୍ରେ ଉଚ୍ଚ ହୋଇ ବାଳା ହସ୍ତେ ତୋଳାଇଲେଟି ସୁମନ ଗୋ । ସଜନୀ । ଫୁଲ ତୋଳି ଶ୍ରୀକୃଷ୍ଣ ଶିରେ ଖୋସି । ଦେଖ କୁସୁମ ପଡିଅଛି ଖସି । ଏଣେ ଶ୍ରୀମତୀଙ୍କି ଯେସନ ଶ୍ୟାମଘନ ଗହନ ବନରେ ପଶି ଯେ । ମୋହନ । ॥ ୧୬୩ ॥

ବହଇ ମଳୟ ଅନିଳ ଉଜ୍ଜ୍ୱଳ ଜଣି ଅତିଶୟ ମଞ୍ଜୁଳ । ହେଳେ ଭ୍ରମି ଶ୍ରୀରାଧାକୃଷ୍ଣ ଖେଳ ! ପାଶେ ଥାଇ ବନଦେବୀ ନିଯୋଜନ୍ତି କୁସୁମ ବାସ ତାମ୍ବୁଳ ଯେ । ଏମନ୍ତ । କୁଞ୍ଜ କୂଳରେ ମାଧବୀ ମଣ୍ଡପ । ଚନ୍ଦ୍ରକାନ୍ତ ପୀଠ ଶୋଭା ଅମାପ । ପଙ୍କଜ ଜାତି ପାଖୁଡ଼ି ଶେଯ ଖଞ୍ଜି କେତକୀରେ ଚନ୍ଦ୍ରାତପ ଯେ । ଏମନ୍ତ । ॥ ୧୬୪ ॥

ହଂସୁଳ ଭୃଙ୍ଗ କେଶର ମୁକୁଳ ଝିନ୍ନ ବସନେ ଘନସାର । ଧୂପ ଅଗରୁ ବାସେ ମନୋହର । ତରୁ ଲତାଏ ପୁଷ୍ପ ବୃଷ୍ଟି କରନ୍ତି ହେଜେ ରାଧା ଦାମୋଦର ଯେ । ଏମନ୍ତେ । କାନ୍ତା କାନ୍ତ ପ୍ରେମେ ପଡି ରଙ୍ଗିଣି । କର ହବଧ ବକ୍ଷରେ ସ୍ମରତି । ମାନସ ସନ୍ତୋଷେ ତହୁଁ ଉଠି ସ୍ଥାନେ ସ୍ଥାନେ ଶୋଭାକୁ ଦେଖନ୍ତି ଯେ । ମୋହନ । ॥ ୧୬୫ ॥

ପୁଷ୍ପ ଶେଯେ କାହିଁ ଜାନୁ ଯମସ୍ଥାନ ଦେଇ ଶ୍ରୀମତୀଙ୍କି ଶୁଆଇ । କେଉଁ କୁଞ୍ଜେ ଶ୍ରୀକୃଷ୍ଣ ନିଦ୍ରାଯାଇ । ଚାପ ମସ୍ତାଳନ୍ତି ବସି ଯେ ଶ୍ରୀମତୀ ଅତିହିଁ ଆନନ୍ଦ ହୋଇ ଯେ । ଏମନ୍ତ । ଅନୁରାଗରେ ଧରି ବେଣୁପାଣି । କୋକକର ଶୁଅନ୍ତି ପାଶେ ଆଣି । ରତି ରସେ ବେଶ ମଣ୍ଡନକୁ ରହିଁ ସ୍ୱବେଶ କରନ୍ତି ପୁଣି ଯେ । ମୋହନ । ॥ ୧୬୬ ॥

କବରୀ ଖୋସି ନାନା ରତ୍ନ ଭୂଷଣ ଅଙ୍ଗେ ଲଗ୍ଧି ହେଲେ ହରଷ । ପୁଣି ପିନ୍ଧାଇ ଦିବ୍ୟ ଝିନ୍ନ ବାସ । ସୁବେଶ ଯାର ତାମ୍ବୁଳ ଭୁଞ୍ଜାଇଲେ ହୋଇଣ ଅତି ହରଷ ସେ । ମୋହନ । ଆଉ କ ବେଶ କରିବା ବସ୍ତୁର । ଶ୍ରୀମତୀଙ୍କ ଚରଣ ପଦ୍ମଯୁଗ । ଜାନୁପରେ ରଖି ସଧୀରେ ଯାବକ ଲେଖନ୍ତି ଯତନ କରି ସେ । ମୋହନ । ॥ ୧୨୭ ॥

ଯାବକ ପୁଣି ଲହି ଯାଇ ଏମନ୍ତ ବାଣୀ କହନ୍ତି ବନମାଳୀ । ବନ୍ଧୁ କପାରୁ ଦୂର ପଥ ଗୃଲ । ଅତି ମନୋହର ଏ ଅଳତା ରଙ୍ଗ ପଦରେ ଲଗିବ ଧୂଳ ଗୋ । ସଜନୀ । ଅଣକଟେ ଚ ଚଳେ ତୁମ୍ଭ ଦେହୀ । ମୋର ସ୍କନ୍ଧରେ ବସ ନେବ ବହି । ସମୀପରେ ଗୋପୀ ପ୍ରବେଶ ହେଲେକ ମୁଖ ଗହଳ ଶୁଭଇ ଗୋ । ସଜନୀ ! ॥ ୧୨୮ ॥

ଦେଖିଲେ ଝିଙ୍ଗାସିବେ ପିକା ଏଠାରୁ ଯିବା ଗୃଲରେ ପ୍ରାଣପତି । ଏତେବୋଲି ହରି ସ୍କନ୍ଧ ଲୁଆଇଁ । ବଳ କମଳ ଚୋକଲପ୍ରାଏ ହରି ସ୍କନ୍ଧରେ ନେଇଁ ବସାଇସେ । ମୋହନ । ବାମ ସ୍କନ୍ଧେ ବସାଇ ଚଳ ହରି । ଜରି ମସ୍ତକ ଧରି ହେମ ଗୋରୀ । ଦକ୍ଷିଣ ମୁଖେ ଯାଇ କେତେ ପଥ ପଶ୍ଚିମ ଦିଗେ ଅନୁସରୁ ସେ । ମୋହନ । ॥ ୧୨୯ ॥

ଏମନ୍ତେ ନାଗେଶ୍ୱର ତଳେ ପ୍ରବେଶି ଦେଖିଲେ ପୁଷ୍ପ ଅତି ଶୋଭା । କଏ କନକ ଦଣ୍ଡ ଛତ୍ର ଆଭା । ଚୋଳ ଶ୍ରୀମତୀ ଶ୍ରୀକୃଷ୍ଣଙ୍କ ମସ୍ତକେ ଯତନେ ମଣ୍ଡିଲେ ଗଭା ସେ । ହରଷେ । ପୁଣି ମାଳତୀ ଲତିକା ଦେଖନ୍ତି । ଢର ବଢ଼ାନ୍ତେ କପାଇ ଶ୍ରୀମତୀ । ପଯ୍ୟର ଉଚ୍ଚ କରଣ ଶ୍ୟାମଘନ ରହନ୍ତେ ପୁଷ୍ପ ତୋଳନ୍ତି ସେ । ଶ୍ରୀମତୀ । । ୧୩୦ ।

ଭ୍ରମର ଭ୍ରମନ୍ତ ପୁଷ୍ପ ଛାଡ଼ି ବଦନ ପଦ୍ମକୁ ଆସି ବେଢ଼ିବାରୁ । ବରେ ଅରବିନ୍ଦ ନବାଉନ୍ତେ ଖାରୁ । ଅଙ୍ଗିରି ଘରୁରେ ଉଗନ୍ତେ ଖସିଣ ପଡ଼ିଲେ କୃଷ୍ଣ ସ୍ୱନ୍ଦରୁଁଯେ । ଶ୍ରୀମନ୍ତ । ଶୁଣିବାକୁ ପ୍ରିୟ ସ୍ନେହ ଉତ୍ତର । ଲତା ଅନ୍ତର ହୋଇଲେ ନାଗର । ପଡ଼ନ୍ତେ ଅବନୀ ତୋଳିଣ ଧଇଲେ ମୂର୍ଚ୍ଛିତ ନାଗଶ୍ରୀବର ଯେ । ଏମନ୍ତ । ॥ ୧୩୧ ॥

ବନଦେବୀ ସେବ କରନ୍ତେ ସଚେତ ଗୃହିଁ ଶ୍ରୀକୃଷ୍ଣଙ୍କୁ ନଦେଖି । ହୋଇ ଉରସ୍ତ ବୁଜି ବେନ ଅଖି ଛିନ୍ନ ଛନ ଛନ ମନ ବକ୍ଷେଦରେ ଅତି ଚନ୍ତା ଲଭିଲେ ସ୍ୱମୁଖି ଯେ ସେକାଳେ । ଅନ୍ତେ ଦାରୁଣ ମଦନ ପୀଡ଼ଇ । ପୁଣି ବୋଲନ୍ତି ସାହା ନାହିଁ କେହି । ଜଳଇ ଦେହ, ଉଠି ପୁଣି ମୋହ ହୋଇ ଭୂମିରେ ପଡ଼ନ୍ତି ଯେ । ଚତୁରୀ । ॥ ୧୩୨ ॥

ଚଉଦିଗ ଗୃହିଁ ବୃନ୍ଦି ନ ଦିଶଇ ଦରଦ୍ର କନ ପ୍ରାଂସ୍ୱେ ହୋଇ । କରୁ ନୀଳମଣି ନାଥ ହରାଇ । ସ୍ୱେଦ ଜଳଧରେ ବୁଡ଼ି ଶୋକ ଜଳେ ଉର ବସନ ତିନ୍ତଇ ଯେ । ଚତୁରୀ । ପୁଣ ବୋଲନ୍ତି ଅହେ ପ୍ରାଣନାଥ । କେଣେ ଛାଡ଼ିଗଲ କର ଅନାଥ । ଅହେ ରମଣୀ ପ୍ରିୟ ଦିଅ ଦର୍ଶନ ଅନ୍ଧାରେ ନ ଦିଶେ ପଥ ହେ । ମୋହନ । ॥ ୧୩୩ ॥

ଛଡ଼ାଇ ସଖୀ ସଙ୍ଗ ମୋତେ ଏବ୍ୟାଘ୍ର ଘାଳୁଙ୍କ ମେଳରେ ରଖିଲ । ଘୋର ନିଶିରେ ବନେ ଉପେକ୍ଷିଲ । ଅହେ ପୀତ ବାସ ମୁ ଯେ କେଉଁ ଦୋଷ କଲ ବାରେ ନ ସହିଲ ହେ । ମୋହନ । ମୁହିଁ ପଛେ ବନସ୍ତେ ଯାଇ ନାଶ । ହେଉ କ୍ଷିତିରେ ଖ୍ୟାତ ତୁମ୍ଭ ଯଶ । ଶଠପଣ ଅଚଳଳ ନ ବଗୁଉ ମନେ ସ୍ତ୍ରୀ ହତ୍ୟା ଦୋଷ ହେ । ମୋହନ ॥ ୧୩୪ ॥

ତୁମ୍ଭ ବିରହରେ ଜୀବନ ନଯାଇ ଅଧରାମୃତ ଅଛୁ ଖାଇ ।
ପୁଣି ହୃଦେ ଏହୁ ଚିନ୍ତା ହୁଅଇ । ଶ୍ୟାମସୁନ୍ଦର ସୁଧାକର
ବଦନ ଦର୍ଶନ କରିବ ମୁକ୍ତି ହେ । ମୋହନ । ମୋର
କାଣକୁ କକରଇ ଚିନ୍ତା । ବନେ ତୁମ୍ଭକୁ ଅନେକ ଅଛନ୍ତି ।
ତୁମ୍ଭେ ଥିଲେ ଅଛୁ ସକଳ ସମ୍ପଦ ଗୋପାଳ ବ୍ରଜ କରିତା
ହେ । ମୋହନ । ॥ ୧୩୫ ॥

ଲତା ଅନ୍ତରେ ଥାଇ ହରି ଶୁଣନ୍ତି ପ୍ରେମ ବଚନର
ଚାତୁରୀ । ଯାନ୍ତି ଶ୍ରୀମନ୍ତ ପଛେ ଅନୁସରି । ରୋଦନ ଶୁଣି
ମିଳିଲେକ ଲଳିତା ଅଦି ଯେତେ ସହଚରୀ ଯେ । ସେଠାରେ ।
ଦେଖି ଧଇଲେ କୋଳ କରି ଅଳ । ରାଧା ଶୋକ ଅତିଶୟ
ପ୍ରବଳ । ଏକ ଆରକେ ସମ୍ଭାଳ ଶୁଣି ଚଳି ମିଳିଲେ ସକଳ
ଅଳ ଯେ । ଏମନ୍ତ । ॥ ୧୩୬ ॥

ସଚେତନକରି ପଚାରନ୍ତି ଏଥକୁ କେମନ୍ତ ଅଇଲ ସୁନ୍ଦରୀ ।
ଶୋକ ସମ୍ଭାଳ କହନ୍ତି କିଶୋରୀ । ଅଇଲେ ହରି ମୋତେ
ଘେନି ବନସ୍ତେ ଛାଡ଼ିଗଲେ ଏକା କରି ଗୋ । ସଜନୀ ।
ଅଶକତରେ ନ ପାରିଲି ଯାଇ । ସ୍ନେହେ ବଡ଼ି କରି ଏଠେ
ପକାଇ । ଶୋକଭରେ ଭଲେ କହି ନ ପାରନ୍ତି ନୟନ ନୀର
ବୁହାଇ ଯେ । ତରୁଣୀ । ॥ ୧୩୭ ॥

ସଖୀ ବୋଲନ୍ତି ଆଉ କେଉଁ ଶ୍ରୀକୃଷ୍ଣ ସଙ୍ଗତେ କରିବ
ପୀରତି । ସବେ ଜାଣନ୍ତି ରାଧା ପ୍ରିୟବନ୍ତି । ଏଠାରେ ଯେବେ
ଏମନ୍ତ ଅଚରିଲେ । ଗୋପିଙ୍କର କେଉଁ ଗତି ଗୋ ।
ସଜନୀ । କଣି ବନସ୍ତ ବସୁର ନକରି । ରାଜା ଯେମାଙ୍କୁ ଗଲେ
ଦୂରକରି । ଏମନ୍ତ ବୋଲି ଚକିତ ହୋଇ ଶ୍ୟାମ ପକାଇଲେ
ସବୁ ନାରୀ ଯେ । ସେଠାରେ । ॥ ୧୩୮ ॥

ଲଳିତା ବିଶାଖା ଚମ୍ପକ ଲତିକା ଇନ୍ଦୁଲେଖା ତୁଙ୍ଗବିଦ୍ୟା ଗଣ । ଚିତ୍ରା ସୁଦେବୀ ରଙ୍ଗଦେବୀ ପୁଣ । ପ୍ରେମଭରେ ଶୋକ ଗଦଗଦେ ତହିଁ ବାଉଳନ୍ତି କୃଷ୍ଣ ଗୁଣ ଯେ । ଚତୁର । ମଧ୍ୟ ମଣ୍ଡନୀ ତରୁଣୀରତନ । ଲଭିବାକୁ କଲେ ଏତେ ଯତନ । କୁଟିଳ ଭ୍ରମରପ୍ରାୟେ ହରି ରସ ଯେନ ତେଜିଲେ ବହନ ଗୋ । ସଜନୀ । ॥ ୧୩୯ ॥

ଅଲାଗି ମାନଙ୍କ ପାଣି ପ୍ରଚାରନ୍ତି ନଦେଲେ ବନଢିକାହର । ଏବେ ବନସ୍ଥେ ତାଙ୍କୁ ଏକା କରି । ଏହି ନେତ୍ରେ ଏହା ଦେଖିଲାଇଁ ଖଳିଗଲେତ ଦାରୁଣ ହରି ଗୋ । ସଜନୀ । ତରୁ ଲତାଏ ତୁମ୍ଭେ ସିନା ସାକ୍ଷୀ । ସବୁ ଶୁଣେ ଦେଖିବୁ ଏହି ଅଖି । ଇଷିତେ ଅଭିମାନକୁ ଉପେକ୍ଷିବେ ବୋଲି ପ୍ରବୋଧନ୍ତି ସଖୀ ଯେ । ଏମନ୍ତ । ॥ ୧୪୦ ॥

ଶ୍ରୀମତୀ ମନୁ ମାନ ତେଜି ଧାଳନ୍ତି କୃଷ୍ଣରେ ଅନୁରାଗବହି । ଏକା ବନେ ସେ ହୋଇ ଥିବେ କାହିଁ । ମୁହିଁ ସିନା ଏକା ସଙ୍ଗତରେ ଥିଲି ସଖୀଏ ନାହାନ୍ତି କେହି ସେ । ବନରେ । ଅପଥରେ ଯିବାରୁ ତାଙ୍କ ପାଦ । ବ୍ୟଥା ପାଇ ଲଭୁଥିବେ ବିଷାଦ । ଲତାନ୍ତରେ ଥାଇ କୃଷ୍ଣ ଶୁଣି ହସି ହୁଅନ୍ତି ମନେ ପ୍ରମୋଦ ଯେ । ମୋହନ । ॥ ୧୪୧ ॥

ମନକୁ ଜାଣି ତୁଙ୍ଗବିଦ୍ୟା କହନ୍ତି ନାଗରବର ପୀତବାସ । ବିଚ୍ଛେଦରେ ଅଧିକ ପ୍ରେମରସ । ରସଭୋଗ ସୁଖେ କରିବ ମାନସେ ନୁହ ସଜନୀ ବିରସ ଗୋ । ସଜନୀ । ଯେହ୍ନେ ଜଗତେ ମହାଁ ବଳଅର । ଏକା ହେଲେ କାସ ଭୟ ତାହାର । ପୁଣ ବନେ ଏବେ ଯିବା ଗୋପିଙ୍କି ଲୋଡ଼ୁଥିବେ ବଂଶୀଧର ଗୋ । ସଜନୀ । ॥ ୧୪୨ ॥

ସଜନୀ ବଚନ ଶୁଣି ସବୁ ସଖୀ ପୁଲକ ବଦନରୁ ଚଳିଲେ । ଗୋପୀଗଣଙ୍କ ସଙ୍ଗରେ ମିଳିଲେ । ଶ୍ୟାମଳା ମଙ୍ଗଳା ଭଦ୍ରା ମଧୁମତୀ ଅନଙ୍ଗମଞ୍ଜରୀ ମେଳେ ଯେ । ଦେଖିଲେ । ଏ ସମସ୍ତେ ଅଛନ୍ତି ଯୂଥେଶ୍ୱରୀ । ସର୍ବେ ଚନ୍ଦ୍ରାବଳୀଙ୍କି ଅନୁସରି । ସୁହୃଦ ପକ୍ଷ ପ୍ରତି ପକ୍ଷ ତଟସ୍ଥ ପକ୍ଷ ମେଳେ ହୋଇ କହି ଯେ । ବୋଲନ୍ତି । ॥ ୧୪୩ ॥

ଜାଣିଲକି ସଖୀ ଶଠ ନାଗରକୁ ପାଶରେ ସୁଖେ ଯେନ ଥାଇ । ବକ୍ର ଅଧିକ ତାହାରଟି ଦେଖ । ନିର୍ଦ୍ଦୟ ଚତୁର ଦୁଃଖ ଦେଖି କହିତେ ଦୟାକୁ ବହାଇନାହିଁ ଗୋ । ସଜନୀ । ନାଶେ ପୂତନା ଯେଣୁ ବାଳ କାଳେ । ଯୁବାକାଳେ ଏତେ ସ୍ତ୍ରୀ ନାଶିଲେ । ଯେ ବସ୍ତ୍ର ବୃକ୍ଷରେ ନବଶୃଙ୍ଗରେ ତାର କାସ ଗଲୁ ଅମ୍ଭେ ମଲେ ଗୋ । ସଜନୀ । ॥ ୧୪୪ ॥

ଗତ କେଳ ସ୍ଥାନ ମାନ ବୁଲି ଅଙ୍ଗ ଅଲଗି ଅଙ୍ଗରାଗ ଦେଖି । ମତି ପ୍ରବଳ ନପାରନ୍ତି ରଖି । ପୁଣ ପୁଣ କାମ ଅଧିକେ ଗଞ୍ଜର ପାରୁଛିକେ ସବୁ ସୁମୁଖୀ ଗୋ । ଏମନ୍ତ । ଛଡା ଚନ୍ଦନ ମାଳକୁ ବହନ୍ତି । ବ୍ରଜସ୍ଥଳ ଧୂଳି ବୋଳି ହୁଅନ୍ତି । ଚମକଇ ହିଅ ଚରୋଇ ଚଞ୍ଚରେ ଯେ ଗତି ଥବକି ଗତି ଯେ । ଚତୁରୀ । ॥ ୧୪୫ ॥

କୃଷ୍ଣ ପ୍ରସନ୍ନ ହେଲା ପ୍ରାଏ ମଣନ୍ତି ଅଗ୍ରତେ କାନ୍ତ ପୁଣି ଛନ୍ତି । ସତେ କୃଷ୍ଣ ସଙ୍ଗେ କି ରମିଲୁଇ । ନଖ ଦଶନ ଚନ୍ଦ୍ର ଅଙ୍ଗେ ଗୃହିଣୀ ପୁଣିହିଁ ଧରତେ ପାଇ ଯେ । ଚତୁରୀ । ନାଥ ବୋଲି ଲୋଟନ୍ତି ଭୂମି ତଳେ । କେଶ ବସନ ଫିଟି ଅସମ୍ଭାଳେ । ବେଦନ କରନ୍ତି ଗୁଣ ମାନ ଗାଇ ସମସ୍ତ ଗୋପୀ ବଳକେ ଯେ । ଚତୁରୀ । ॥ ୧୪୬ ॥

ଯେଉଁ ଦିନୁ ତୁମ୍ଭ ଜନମ ଗୋକୁଳେ ଜୟଯୁକ୍ତ ଲକ୍ଷ୍ମୀ ଆଶ୍ରିତ । ଆମ୍ଭ ସ୍ୱଜନ ନାଥ ତୁମ୍ଭେ ସତ । ଦେଖ ପଦ୍ମଶ୍ରୀ ଗୋକୁଳ ନାଗରୀ କରୁଣା କର ତୁରିତ ହେ । ମୋହନ । ସରସିଜ ଶୋଭା ହର ନୟନ । କଟାକ୍ଷରେ ଯେଯିକ କଲ ନିଧନ । ଅଜା କାହିଁ ଧନୁର ଶର ପ୍ରୟୋଗରେ ହରୁଛ ଗୋପୀ ଜୀବନ ହେ । ମୋହନ । ॥ ୧୪୭ ॥

ବିଷଜଳୁ ଅଘା ବରଷା ବତାସ ଅଗ୍ନିମୁଖରୁ ଉଦ୍ଧାରିଲ । ପୁଣି ଷଣ୍ଢାସୁର ଭୟୁଁ ତାରିଲ । ବନସ୍ତେ ଅନାଥା କରଣ ଅମ୍ଭଙ୍କୁ ସମସ୍ତ କୀର୍ତ୍ତି ନାଶିଲ ହେ । ମୋହନ । କେ ବୋଲଇ ନନ୍ଦ ଗୋପୀ କୁମର । ସତ୍ୟେ ତୁମ୍ଭ ମହିମା ଅଗୋଚର । ଅବନୀ ଭାର ଉତ୍ସାଧ ଅର୍ଥେ ଦେବ ସ୍ତୁତିରୁ ଏ ଅବତାର ହେ । ମୋହନ । ॥ ୧୪୮ ॥

ଅମ୍ଭେତ ଧରଣୀ ଭାର କୋନ୍ତୁ ଶୀଘ୍ରେ ଦର୍ଶନ ଦିଅ ଶ୍ୟାମ ଘନ । ଭୟ ହରଣ ଜୀବନ କାରଣ । ମନ୍ଦା ମଲୁ ନାଶି ଅମ୍ଭଙ୍କୁ ଅଭୟ ଦେଇ କଲ ଉଦ୍ଧାରଣ ହେ । ମୋହନ । ମୃଦୁ ମଞ୍ଜୁଳ କୋମଳ ଶ୍ରୀକର । ସର୍ବ କାମଦ ସର୍ବ ଦୁଃଖ ହର । ସେହୁ ଶ୍ରୀକର ଦେଇ ଅମ୍ଭ ସମସ୍ତଙ୍କ ସମସ୍ତ ବିଷାଦ ହର ହେ । ମୋହନ । ॥ ୧୪୯ ॥

କେ ବୋଲେ ହେ ବୀର ମଉଳ ମଣ୍ଡନ ବ୍ରଜ ଜନ ଅର୍ତ୍ତି ଖଣ୍ଡନ । ସ୍ମିତେ ବରଣ କର ନିଜ ଜନ । ଈଷିତେ ଧ୍ୱଂସନ ଜନ ସର୍ବ ସୁଖ ସଢୁରେ ହୁଅ ପ୍ରସନ୍ନହେ । ମୋହନ । କରୁ ଅଛୁ ବନିତି ଗୋପୀ ଜନ । ଦିଅ ଦର୍ଶନ ପଙ୍କଜ ବଦନ । କେ ବୋଲେ ନାଥ ତୁମ୍ଭ ପାଦ ଶରଣ ଜନ ଦୁରିତ ନାଶନ ହେ । ମୋହନ । ॥ ୧୫୦ ॥

ଯେମନ୍ତ ପଙ୍କଜେ ବଜ୍ରାଙ୍କୁ ବଜେ ଜମ୍ବୁ ଚକ୍ରିତ ରକ୍ତ ପଦ୍ମ ଧ୍ୱଜେ । ମହିଁ ସ୍ୱର୍ଗ ଉଷ୍ମସିଛ ସମ୍ପଜେ । ଶ୍ରୀନିବାସ ଫଣି ଫଣା ବିମର୍ଦ୍ଦନ ଯାଙ୍କୁ ବ୍ରହ୍ମା ନିତ୍ୟେ ବନ୍ଦେ ଯେ । ଚରଣ । କୁଚେ ଦେଇ ତୁମ୍ଭର ପଦ୍ମପାଦ । ମନ୍ମଦନ ଶର ତାପ ଛେଦ । ବିନାଶ ଯେମନ୍ତ ଏ ଗୋପ ଯୁବତୀଙ୍କ ମାନସ କର ଆନନ୍ଦେ । ମୋହନ । ॥ ୧୫୧ ॥

କେ ବୋଲେ ଅହେ ପଙ୍କଜାକ୍ଷ ମଧୁର ବଚନେ ହର ବୋଧ ମନ । ଯେଣୁ ବାକ୍ୟେ ମୋହିତ ଗୋପୀଜନ । ସେହି ହେତୁରୁ କୃପା କର ଅଧରାମୃତକୁ ଦିଅ ବଦନ ହେ । ମୋହନ । ତୁମ୍ଭ କଥା ଅମୃତ ରସାୟନ । ଶାନ୍ତ କରାଇ ସନ୍ତାପେ ଜୀବନ । କବି ଜନରେ ବନ୍ଦନୀୟ ବିଶେଷ ଶ୍ରବଣେ ପାପ ନାଶନ ହେ । ମୋହନ । ॥ ୧୫୨ ॥

ପୁଣି ଶ୍ରୀମନ୍ତ ମହତ ବନ୍ଦନୀୟ ସୁଧାନନ୍ଦିତ ଯେଉଁ ବାଣୀ । ତାପ ଛେଦିବ ଗୋପୀଗଣ ଶୁଣି । ମନୁ ସମସ୍ତ ଦୁଃଖ ଛେଡ଼ି ସଧୀର କର କହ ବେଣୁପାଣି ହେ । ମୋହନ । ତୁମ୍ଭ ହର ହାସ ପ୍ରେମ ଲକ୍ଷଣ । ପୁଣି ଧ୍ୟାନ ମଙ୍ଗଳର କାରଣ । ଏକାନ୍ତ ବିହାର କହିବା ଭଙ୍ଗିକି ଚନ୍ଦ୍ର ଯୋଗ୍ୟ ହୋଏ ମନହେ । ମୋହନ । ॥ ୧୫୩ ॥

ଅତି ପ୍ରେମଭରେ ପୁଣି କେତେ ଗୋପୀ ବୋଲଇ ଅହେ ପ୍ରାଣନାଥ । ଗାଈ ଚରାଇ ଯାଅ ବନ ପଥ । ବନେ ତୁମ୍ଭ ଦୁଃଖ ଛନ୍ତି ଶୂଦ୍ର କୂଟେ ନଥାଇ ଅନ୍ତର ଚଳେ ହେ । ମୋହନ । ଅତି ସୁନ୍ଦର କୋମଳ ପଦ୍ମର । ଶିଳା ତୃଣାଙ୍କୁରେ କର ସଞ୍ଚାର । କଣ୍ଟକ ବିଧଥାଏ ଭେଦର ଅଧୀର ହୋଏ ମାନସ ଅମ୍ଭର ହେ । ମୋହନ । ॥ ୧୫୪ ॥

ଏବେ ଏ ଦଶାରେ କଣ୍ଟକ ଭୂଣରେ କେମନ୍ତେ କରୁଅଛ
ଗତି । ପୁଣି ବୋଲେ ରହି ଏକ ଯୁବତୀ । ମଦନ ଶର
ମୁଖେ ଦେଲେହେଁ ବୀର ଏ ତୁମ୍ଭର କେଉଁ ଗତି ହେ ।
ମୋହନ । ସନ୍ଧ୍ୟାକାଳେ ବନୁ ଧେନୁ ଚଳାଇ । ଅସ୍ତଥାଅ ମୁଖ
ପଦ୍ମ ବୁଲାଇ । ନୀଳ କୁନ୍ତଳ ଶୋଭଭ ହୋଇଥାଇ ଗୋ-ରଜେ
ଭୂଷିତ ହୋଇ ହେ । ମୋହନ । ॥ ୧୫୫ ॥

ପୁଣି ପୁଣି ଗୃହି ସେ ଶୋଭ୍ର ଆନନ୍ଦ ହେଉଥାଉ ଗୋପୀ
ସମୂହ । ବାରେ ଏବେ ଅମ୍ଭଙ୍କୁ ଦେଖା ଦିଅ । ଗୋପୀଙ୍କି
ଦଶାରେ ବନେ ଛାଡ଼ି କପାଁ ଦାରୁଣ ଚିତ୍ତରେ ବଦ ହେ ।
ମୋହନ । କେ ବୋଲଇ ତୁମ୍ଭ ପଦ୍ମ ଚରଣ । ବ୍ରହ୍ମାଙ୍କରଇ
ଜ୍ଞାତବ୍ୟରେ ସ୍ମରଣ । ଅର୍ପିତ କାମଦ ଧରଣୀ ମଣ୍ଡନ ସବ
ବିପଦ ଖଣ୍ଡନ ହେ । ମୋହନ । ॥ ୧୫୬ ॥

ରହି କାଳେ ସ୍ତନ ପରେ ଧରିଥାଉ ହୋଇ ଅତିହି ସ୍ନେହ
ଭର । ଏବେ ଦର୍ଶନ ଦିଅ ଯେ ସତ୍ୱର । ନକର ବିଳମ୍ବ
ସବୁରେ ଏ ଅମ୍ଭ ମଦନ ତାପକୁ ହର ହେ । ମୋହନ ।
ପୁଣି କେ ବୋଲେ ସୁରତ ବର୍ଦ୍ଧନ । ବଂଶୀ ରମ୍ଭି କର ଶୋକ
ନାଶନ । ଜନକ ଅନ ଅନୁରାଗ ମାନ ଯେ କରଇ ଶୀଘ୍ର
ଧ୍ୱଂସନ ହେ । ମୋହନ । ॥ ୧୫୭ ॥

ଦେଇ ଅମ୍ଭଙ୍କୁ ଯେ ଅଧରୁ ଅମୃତ ଶୀଘ୍ର ଦୂର ବାଧା
ତୁଟାଅ । କେ ବୋଲଇ ବନକୁ ଯେବେ ଯାଅ । ତୁମ୍ଭ
ଅନ୍ତର କ୍ଷଣକ ଯୁଗ ପ୍ରତ୍ୟେ ମଣୁ ଗୋପିକା ସମୂହ ହେ ।
ମୋହନ । ପୁଣି ଏବେ ପାଉ ତୁମ୍ଭ ଦର୍ଶନ । ମୁଖ କୁଟିଳ
କୁନ୍ତଳେ ମଣ୍ଡନ । ବିଧାତାକୁ ନିନ୍ଦା କରୁ କପାଁ ନେତ୍ରେ
ପଲକ କଲା ରଚନ ଯେ । ମୋହନ । ॥ ୧୫୮ ॥

ହେ ବୋଲେ ମଧୁର ବଂଶୀ ନାଦେ ପଶି ସ୍ମର ଭାବର ଭ୍ରାନ୍ତ ତେଜି । କୁଳ ଲଙ୍ଘିଲୁ ତୁମ୍ଭ ପ୍ରେମ ମନ୍ତ୍ରେ । ଧୂର୍ତ୍ତମତିରେ ଅବଳାଙ୍କୁ ରାତିରେ ତେଜିଗଲ କାହିଁ ଦେଖି ହେ । ମୋହନ । ତୁମ୍ଭ ଏକାନ୍ତ ଆଳାପ ରଙ୍ଗରେ । ସ୍ମର ଉଦୟ ପ୍ରେମ ପ୍ରସଙ୍ଗରେ । ହସି ଆନନରୁ ପ୍ରେମ ବୀକ୍ଷଣରୁ ଗୋପୀ ମୋହିତ ସବୁରେ ସେ । ମୋହନ । ॥ ୧୫୯ ॥

କେ ବୋଲେ ହେ ଜଗନ୍ମଙ୍ଗଳ ଦାୟକ ବ୍ରଜବାସୀ ଜନ ନାୟକ । ନଷ୍ଟେ ଦୁଷ୍କୃତ ଧ୍ୱଂସନ କାରକ । ଇତେକ ତୁମ୍ଭେ ଆମ୍ଭ ଆଶା ନନାଶ ଅଟ । ଆମ୍ଭେ ତୁମ୍ଭଲୋକ ହେ । ମୋହନ । କେହ୍ନୁ ବୋଲେ ତୁମ୍ଭ ପଦ୍ମଚରଣ । ସ୍ତନେ ଧୀରେ ଦେଉ ଥାଉ ଭୟେଣ । ଅତି କଠିଣରୁ ବ୍ୟଥିତ ହୋଇବ ବୋଲି ମନେ ବିଚାରଣ ହେ । ମୋହନ । ॥ ୧୬୦ ॥

କେ ଯେ ପଦ ଏବେ କାନନ ଗମନରେ ହେଉଥିବ ପରା ବ୍ୟଥିତ । ଲାଗି ପାଷାଣ କଣ୍ଟକରେ କ୍ଷତ । ଏହି କଥାକୁ ଚିନ୍ତାକରି କରଇ ଭ୍ରମୁଅଛୁ ଆମ୍ଭ ଚିତ୍ତହେ । ମୋହନ । ଯେଣୁ ଅଟ ତୁମ୍ଭେ ଆମ୍ଭ ଆୟୁଷ । ଏବେ ରଖ ଦେଇ ମୁଖ ପୀୟୂଷ । କୁଳ ଛାଡ଼ି କାମ ସାଗରେ ବୁଡ଼ିଲୁ ଉଦ୍ଧାର ଏ ଗୋପୀ ବଂଶ ହେ । ମୋହନ । ॥ ୧୬୧ ॥

ନୃହଇ କ୍ରୋଧରେ ଅତି ପ୍ରେମବଶେ ଗୋପୀ ବିଳାପ ବାଣୀ ଭଣି । ସାତ୍ତ୍ୱିକରେ ପୁଲକ ବେନୁପାଣି । ପ୍ରେମେ ଲୋତକ ନେତ୍ରୁ ବହେ ଗଦ୍ଗଦେ ମୁଖରୁ ନ ଆସେ ବାଣୀ ସେ । ମୋହନ । ରତି ପତିରେ ମତି ଅଶଙ୍କିତ । ଲତା ଅନ୍ତରୁ ବାହାର ହୁଅନ୍ତ । ଲୁଚ ଲୁଚ ଗୋପୀ ମେଳରେ ମିଳିଲେ ଭର୍ତ୍ସନାକୁ ଡ଼ରି ଚିତ୍ତ ସେ । ମୋହନ । ॥ ୧୬୨ ॥

ଜଳଦେ ବିଜୁଳି ପ୍ରାୟେ କଟିତଟେ ଅତି ଶୋଭେ ପୀତ ଦୁକୂଳ । ଉରେ ଶୋଭିତ ହାର ବନମାଳ । କୋଟି ମଦନମୋହନ ମୂର୍ତ୍ତି ହାସେ ସୁନ୍ଦର ମୁଖ କମଳ ଯେ । ମୋହନ । ଦେଖି ଅନନ୍ଦ ଗୋପୀଗଣ ମନେ । ରହୁପାଇଲେ ଦରିଦ୍ର ଯେସନେ । ପୁଷ୍ପ ଶଯ୍ୟାପରେ ହରିଙ୍କି ସମସ୍ତେ ବସାଇଲେକ ଯତନେ ଯେ । ହରଷେ । ॥ ୧୬୩ ॥

ନାରଦ ନଳକୁବେରଙ୍କୁ କହନ୍ତି ଶୁଣ ଧନପତି, ନନ୍ଦନ । ଶ୍ରୀକୃଷ୍ଣଙ୍କୁ ପାଇଲେ ଗୋପୀଗଣ । ଉତ୍ତମ କୃଷ୍ଣ ଅଳାପ ତାଙ୍କ ଚେଷ୍ଟା ଉଦାସ୍ୱୀସ୍ୱ ତାଙ୍କ ଗୁଣ ଯେ । ଗାନରେ । ଏତେ ସ୍ୱବେ ଶ୍ରୀକୃଷ୍ଣଙ୍କୁ ପାଇଲେ । ତେଣୁ କୃଷ୍ଣ ଅଙ୍ଗ ସଙ୍ଗୀ ହୋଇଲେ । ଅତି ତୋଷମନ ହୋଇଲେ ଗୋପୀଏ ଗତ ଜୀବନ ପାଇଲେ ଯେ । ଏମନ୍ତ । ॥ ୧୬୪ ॥

ବସ୍ତ୍ର ତେଜି ସର୍ବେ ସ୍ୱବରେ ଭଜିଲେ ନେତ୍ର କମଳେ ପୂଜା କରି । ନମସ୍କାର ପଲକ ବସ୍ତ୍ର କରି । ଚଉପାଶେ ବେଢ଼ି ବଚ୍ଛେଦକୁ ଚନ୍ଦ୍ର ଅକୁଳେ ସକଳନାରୀ ଯେ । ଏମନ୍ତ । ଶୋକେ ବୋଲନ୍ତି ବରଜ ଯୁବତୀ । ବନେ ଛାଡ଼ିଲ କବ ରସବତୀ । ଗୋପ ବାଳଙ୍କ ଅନାଥା କରିବାକୁ ଅଣିଥିଲ ମନେ ଚନ୍ଦ୍ର ହେ । ମୋହନ । ॥ ୧୬୫ ॥

ମନେ ହସି କୃଷ୍ଣ କହନ୍ତି ବଚ୍ଛେଦେ ଅତି ଅନୁରାଗ ବଢ଼ାଇ । ନେଲ ଅନ୍ତର ଏଥିପାଇଁ ସହି । ଯେତେ ଯାଅ ସଖୀ ତେତେ ମୁହିଁ ତୁମ୍ଭ ସଙ୍ଗତେ ଥିଲି ଗୋଡ଼ାଇ ରେ । ସଜନୀ । ତୁମ୍ଭେ ବନରେ ପୃଚ୍ଛ ଯେତେ ବାଣୀ । ମୁଁଯେ ଉଲ୍ଲାସ ହେଉଥାଇ ଶୁଣି । ନିନ୍ଦା ଭର୍ତ୍ସନା ତର୍କନା ବନ୍ଦନା ମୋ ଅଙ୍ଗ ଚତୁଃସମ ଜାଣି ରେ । ବାମାଏ । ॥ ୧୬୬ ॥

ଲଳିତା ବିଶାଖା ସୁଧାଙ୍କୁ ଲଗାଇ କୃଷ୍ଣଙ୍କୁ କହନ୍ତି ଏପରି । ଅହେ ନାଗର ମଦନମୋହନ । ଶୋଭା ନଦିଶଇ ଅମ୍ଭ ଯଦି ନାହିଁ ନବୀନଜଳ ଘୋର ବନ ହେ । ମୋହନ । ଯେତ ଅଙ୍ଗନା ସଖୀ ବ୍ରଜସୁତା । ତାଙ୍କୁ ଦେଲ ଅଣି ଏତେ ଅବସ୍ଥା । ଅତି ନିର୍ଦ୍ଦୟ ନିଷ୍ଠୁରପଣ ଅଚିର ଶିଖିଲ କାଳକୁ କଥା ହେ । ମୋହନ । ।୧୬୭।

ଅତି ଅଶୋଭା ଦିଶୁଛ ତୁମ୍ଭ ସ୍ୱନ୍ଧୁ ଶିର ଖସିଲା ପ୍ରାୟେ ହେଲ । ପୁଷ୍ପ ଗନ୍ଧ ପର୍ଯ୍ୟେ ଯେମନ୍ତ ଥିଲ । ତୁମ୍ଭର ଏମନ୍ତ ସାତି ବାସ ବେଗ କରଣ ପକାଇଦେଲ ହେ । ମୋହନ । କାମରାଜାକୁ ଗୁହାରି କରିବୁ । ବନେ ବିବେକ ମଦନ ସାରିବୁ । ବାହିଁ ରଖିଅଛ ଅଣିଦିଅ ଏବେ ନୋହିଲେ ଛାଡି ନ ଦେବୁ ହେ । ମୋହନ । ॥୧୬୮॥

ନାଗର ଶୁଣି କହନ୍ତି ମନେ ହସି ସଖୀ ତୁମ୍ଭେ ରୋଷ ନକର । ଶିର ସ୍ୱନ୍ଧରୁ ଅନ୍ତର ଯାହାର । ଲୋଡିଲେ ଅଉ କି ଭେଟି ପାଇବ ସେ ମାନସେ କର ବିଚାର ଗୋ । ସଜନୀ । ତୁମ୍ଭ ପାଇଁ ସେ ଅମ୍ଭଙ୍କୁ ଛାଡ଼ିଲେ । ସ୍ୱନ୍ଧେ ନଥାନ୍ତେ ଖସି ସେ ପଡ଼ିଲେ । ବନଦେବୀ ସଙ୍ଗତରେ ଥାଇ ତୁମ୍ଭ ପାଶେ ଅଣି ମିଳାଇଲେ ଗୋ । ସଜନୀ । ॥୧୬୯॥

ଶୋଭା ନୋହେ ସଖୀ ତାହାଙ୍କ ବନ୍ଧନେ ରୂପ ଉତ୍ସବେ ଯେ କାରଣି । ଅଉ କହୁଛ ଏକ କଥା ଶୁଣି । ସମସ୍ତେ ଏବେ ତୁମ୍ଭ ସଖୀଙ୍କି ଲୋଡ ଯେମନ୍ତ ପାଇବ ପୁଣି ଗୋ । ବାମାଏ । ପ୍ରସନ୍ନରେ ବସାଅ ମୋର କୋଳେ । ଅଭପେକ୍ଷ କର ପ୍ରେମ ଯତ୍ନଲେ । ଶ୍ରୀକୃଷ୍ଣ ଏମନ୍ତ ମୃଦୁବାଣୀ କହି ବାଳାଙ୍କ ମନ ମୋହିଲେ ଯେ । ମୋହନ । ।୧୭୦।

ଛଡବା ବଚନ ମାନ ଶେଷି ସବେ ଏକ ଆରକେ ମୁଖ ଚାହିଁ । ପୁଣି ଗୁପତେ ହେଲେ କୁହାକୁହି । ନର୍ମଳେ ମନସୁ ମାନ ଶେଷି ପ୍ରେମ ଛଳେ ଶ୍ରୀକୃଷ୍ଣଙ୍କୁ ଚାହିଁ ସେ । କହନ୍ତି । ନଭଜିଲେ ଯେ ପୁଣି ନଭଜନ୍ତି । ଯେଉଁ ଭଜିଲେ ସେ ପୁଣି ଭଜନ୍ତି । ନଭଜିଲେ ଯେଉଁ ଭଜଇ ଭଜିଲା ଜନଙ୍କୁ ଯେ ନ ଭଜନ୍ତି ହେ । ମୋହନ । ॥ ୧୭୧ ॥

ଏ ଗୂଢ଼ କଥା ସନ୍ଦେଶ ଯେହ୍ନି କହ ଚତୁରବର ଶିରୋମଣି । କୃଷ୍ଣ କହନ୍ତି ମନ୍ଦେ ହସି ପୁଣି । କହିବା ଗୋଷ୍ଠି ଗୋଷ୍ଠି ଯେ ଶୁଣ ଏବେ ସମସ୍ତ ରମଣୀ ମଣି ଗୋ । ସୁମୁଖୀ । ପରସ୍ପର ସଂସାର ସାର ରସ । କାନ୍ତ ସଖ୍ୟ ବାତ୍ସଲ୍ୟ ପୁଣି ଦାସ୍ୟ । ତୁମ୍ଭେ ମୋ ପ୍ରାଣୁ ଅଧିକ ଏବେ ଶୁଣ ସ୍ଥିର କରଣ ମାନସ ଗୋ । ସଜନୀ । ॥ ୧୭୨ ॥

କାନ୍ତ ନଭଜିଲେ ନଭଜେ ମାନିନୀ ଭଜିଲେ ଭଜେ ସଖ୍ୟ ସତ । ସୁତ ନଭଜେ ଭଜେ ତାତମାତ । ଦାସ ଭଜିଲେ ନ ଭଜେ ପ୍ରଭୁ ତାକୁ ଶୁଣ ସଜନୀ ସମସ୍ତ ଗୋ । ଏମନ୍ତ । ଏହି ପ୍ରକାରେ ପଙ୍କଜ ଲୋଚନ । କହି ମଧୁର କୋମଳ ବଚନ । ସମସ୍ତ ଗୋପୀଙ୍କ ହୃଦୟେ ବର୍ଷିବା ଅମୃତ କଲେ ସେଚନ ସେ । ମୋହନ । ॥ ୧୭୩ ॥

ଶୁଣି ସକଳ ବାଳା ପୋଛି ବଦନ ଏକ ଆରକେ ମୁଖ ଚାହିଁ । ପୁଣି ସମସ୍ତେ କଥାକୁ ଉଠାଇ । ବୋଲନ୍ତି ଏ ଗୂଢ଼ ଲକ୍ଷଣ ସଂଶୟ ନରଖି କହ ଫିଟାଇ ହେ । ମୋହନ । ତପ ବାଦେ ଅପବାଦେ ପ୍ରମାଦେ । ବେଦ ବିବାଦେ ଭ୍ରବଅନୁବାଦେ । ଏକାକୀ ନାରୀ ଦେଖିଲ କାନନରେ କହ ଏଭେଦ ପ୍ରମୋଦେ ହେ । ମୋହନ । ॥ ୧୭୪ ॥

ଶ୍ରୀକୃଷ୍ଣ ଏମନ୍ତ ବଚନକୁ ଶୁଣି ରହିଲେ ବଦନ ନମ୍ରାଇ । ସକଳସଖୀ ମଉନ ହୋଇ ରହି । ବୃନ୍ଦା ସମାପ୍ୟା କହ ବୋଲି ପୁଛନ୍ତି ସାର ଶୁକକୁ ଅନାଇଁ ଯେ । ଏମନ୍ତ । ଶୁକ ଭାଷନ୍ତି କଉଶିକ ଋଷି । ତପ ବାଦେ ମେନକାକୁ ନେବାକି । ପ୍ରୀତି ଯେହ୍ନେ ଶାପ ନ ଦେବାରୁ ତାଙ୍କୁ କହନ୍ତି ନାହିଁର ଋଷି ଯେ । ମୁନି କି । ॥ ୧୭୫ ॥

ଅପବାଦେ ରାମ ତେଜିଲେ ସୀତାଙ୍କୁ ଏକ ପତ୍ନୀ ବ୍ରତ ମାନସ । ମଧ ନାହିଁର ଦଶରଥ ଶିଷ୍ୟ । ଦେବ ତବାଦେ ନଳ ଦମୟନ୍ତୀକି ତେଜିଲେ କନା ଦୋଷେ ଯେ । ଏମନ୍ତ । ଗରଷ୍ଟ ନାହିଁର ସଙ୍ଗ ବର୍ଜନ । ଏତେ କହି ଶୁକ ହେଲା ମଉନ । ଲଳିତା କହେ ଭିନ କଥା କହିଲ ନକହି ଏକ ବଚନ ଯେ । ସ୍ୱସ୍ୱରେ । ॥ ୧୭୬ ॥

ସାର ମଧେ ବସି କହଇ ଏ କୃଷ୍ଣ ଅଟନ୍ତି ପ୍ରେମ ଅନୁବାଦେ । ଅନୁରାଗେ ରାଧାଙ୍କୁ ବହି ସ୍କନ୍ଧେ । ଅଟନ୍ତି ନାହିଁର ଦୋଷ ତହିଁରେ ତେଜିଗଲେ ବନ ମଧେ ହେ । ଏମନ୍ତ । ଶୁଣି ଲଜ୍ଜିତ ହୋଇଲେ ଶ୍ରୀହରି । ବୃନ୍ଦା ରସଜ୍ଞା ଦନ୍ତେ ଚାପି କରି । ନେତ୍ରାନ୍ତେ ଶାରିକା ନିବାରି କହନ୍ତେ ରାଧା ତୋଷ ଶୁଣି କରି ଯେ । ବଚନ । ॥ ୧୭୭ ॥

ଗୋବିନ୍ଦ ନବେଦ ଦେଖିଣ ଶ୍ରୀମତୀ ମାନ ତେଜିଣ ତୋଷ ମତି । ପ୍ରେମେ ପୂରିତ କରି ମନ ଅତି । କେମନ୍ତେ ଶ୍ରୀକୃଷ୍ଣ ପାଶରେ ମିଳିବ ବୋଲି ବିଚାର କରନ୍ତି ଯେ । ଶ୍ରୀମତୀ । ଗୃହିଁ ଶ୍ରୀମତୀଙ୍କ ମତି ତରଳ । ବେଲୁ ବେଲୁ ହୋଏ କାମ ପ୍ରବଳ । କୁନ୍ଦଲତା ରାଧା କର ଧରି କହେ ବସି ଶ୍ରୀକୃଷ୍ଣ କୋଳର ରେ । ସଜନୀ । ॥ ୧୭୮ ॥

ତରୁଣୀଗଣ ଶିରୋମଣି କୃଷ୍ଣଙ୍କୁ ଧରି ଗୋ ହସ୍ତ ଅଭିଷେକ । ସର୍ବେ ସ୍ନାୟୀ ନୀଳପରେ ଉଷୁକ୍ତ । ସୁହୃଦ ମତେ ଯୂଥେଶ୍ୱରୀ ସମସ୍ତେ କହିଲେ ହୋଇ ପକ୍ଷକ ସେ । ଏମନ୍ତ । କୃଷ୍ଣ କୋଟେ ବପ ରୋଜ୍ନ ବଳଇ । ନାହିଁ କରନ୍ତ ବଦନ ହଳଇ । ବେନି ନ ଜାଣି ଥିଲ ଏବେ ମହତ୍ୱ ଜାଣ କପଟ କପାଇଁ ସେ । ତେଣୁ । ॥ ୧୭୯ ॥

ସଖୀ କର ଧରି ଚାହାଁନ୍ତି ନଅନ୍ତେ ଚରଣୁ ଆଗ ଟଳେ ମନ । ହରି ପାଶ୍ଚେଷ୍ଟି ଧଇଲେ ବନ୍ଧନ । ମନ୍ଦର ଆପନେ ଯାଇ ବଳେ କଲେ ତୋଷେ ରାଧା ଶ୍ୟାମପଦ ହେ । ସନ୍ତରେ । ନବ କାମ କୋଳେ ଶୋଭ୍ୟ ରତି କି । ହେଲେ ମୋହିଲେ ଗୋପୀଙ୍କ ମତିକି । ବୃନ୍ଦା ଦେବ୍ୟେ ପୁଷ୍ପ ଧନୁଃଶର ଧରି ନାଶିଲେ ଗୋପୀ ଧୂର୍ତ୍ତ କପେ । ମୋହନ ॥ ୧୮୦ ॥

ଶରଦ ପୋନ ଷଡ଼ ଋତୁ ଯେବନ୍ତ ସମସ୍ତ ଅନୁକ୍ରମେ ମିଳ । ସଖିଗଣେ ଦିଅନ୍ତ ହୁଳହୁଳ । ମଙ୍ଗଳେ ଅତି ଉତ୍ସବେ ଗୋପୀ ମଣ୍ଡେ ଆନନ୍ଦ ସିନ୍ଧୁ ଉଚ୍ଛୁଳ ସେ । କାଳରେ । ପାରୁସରେ ଯେବନ୍ତ ଯେ ଯାହାରେ । ଛତ୍ର ଚାମର ତାମ୍ବୂଳ କେ ଧରେ । କେ ଶଢି ଅଲଠ ଚାମର ଦର୍ପଣ ରହି ଝରି ଧରି କରେ ସେ । ଖଟନ୍ତି । ॥ ୧୮୧ ॥

କର୍ପୂର ତାମ୍ବୂଳ ଚତୁଃସମ କେହୁ ଅତି ସୁଷମେ ପୁଷ୍ପ ହାର । ଝିନ୍ନ ବାସ କେ ଯେନ୍ନ ଅଳଙ୍କାର । ଏହିରୂପେ ନାନାମତେ ନଯୋଜିଲେ ଯେତେ ରାଜ ଉପଚାର ସେ । ପ୍ରକାରେ । ବୃନ୍ଦା ପୁଷ୍ପରେ କଲେ ଅଭିଷେକ । ଦେଖି ସର୍ବ ନାରୀ ଭାବେ ଧୁଳକ । ବାଦ୍ୟ ନୃତ୍ୟ ଗୀତ ରଙ୍ଗରେ ମଣ୍ଡନ ବୃନ୍ଦ ସମସ୍ତେ ପୁଲକ ସେ । ହୋଇଲେ । ॥ ୧୮୨ ॥

ନବଘନେ ଯେହ୍ନେ ସ୍ଥିର ତଡ଼ିତ ବିଶଇ ଅତିହିଁ ରଞ୍ଜନ । ରାଧାକୃଷ୍ଣ ଏହିରୂପେ ଶୋଭନ । ବୃନ୍ଦା ଜଣାନ୍ତି ମଧ୍ୟେ ମଣିମା ମଣିମା ନୃତ୍ୟେ ହୁଅ ସାବଧାନ ଯେ । ମୋହନ । ନାହିଁ ନୋହିବ କଥିବ ଏମନ୍ତ । କନ୍ୟାଗଣ କରନ୍ତି ତହିଁ ନୃତ୍ୟ । ଅପୂର୍ବ ବାଦ୍ୟମାନ ଦେଖି ହୋଇଲେ କଉତୁକେ ତୋଷ ଚିତ୍ତ ଯେ । ମୋହନ । ॥ ୧୮୩ ॥

ଏକ ଅରବେ ନୃତ୍ୟ ଦେଖି ସମର୍ପି ଦେଲେ ପ୍ରସାଦ ଶାଢ଼ି ମାଳ । ରାଜ କନ୍ୟା ତା ନାମ ଚନ୍ଦ୍ରକଳା । ନବ କିଶୋରୀ ସୁନ୍ଦରୀ ଶ୍ରେଷ୍ଠ ଅଟେ ନୃତ୍ୟ ରସରେ କୁଶଳା ଯେ । ଚତୁରୀ । ରୂପ ଗୁଣରେ ହରି ମନ ମୋହି । ପ୍ରେମେ ହସି କଟାକ୍ଷେ ବକ୍ରେ ଚାହିଁ । ଦକ୍ଷିଣେ ରଙ୍ଗଦେବୀ ଥିଲେ ଶ୍ରୀକୃଷ୍ଣ ଆଜ୍ଞା ଦେଲେ ତାଙ୍କୁ ରାଇ ଯେ । ଏମନ୍ତ । ॥ ୧୮୪ ॥

ଭ୍ରମର କର ଲଗିଥିବ ଏହାଙ୍କୁ ନତି କରୁଥିବ ଯେବନ । ଆଜ୍ଞା ଘେନ ରଖ ତାଙ୍କୁ ବଚନ । ନିଜ ସେବା ବାସ ଭୂଷଣକୁ ଦେଲେ ହୋଇ ଅତି ତୋଷମନ ଯେ । ସୁମୁଖୀ । ବୀଣା ବାଦ୍ୟକୁ ଦେଇ ତାଙ୍କ ହସ୍ତେ । ସମର୍ପିଲେ ରାସେଶ୍ୱରୀ ଅଗ୍ରତେ । କର ବନ୍ଧୁମାନ କହିଲେ ଶ୍ରୀକୃଷ୍ଣ ସେବାରେ ଥାଅ ନିରତେ ଗୋ । ଚତୁରୀ । ॥ ୧୮୫ ॥

ରତ ଶତ ଗୁଣେ ଅଧିକ ହରଷେ ମନସିଜ ଅନୁରାଗରେ । ରାଧାକୃଷ୍ଣ ଏକ ପରମ୍ପରରେ । ଅଙ୍ଗେ ଅଙ୍ଗ ଛନ୍ଦି ମୁଖେ ମୁଖ ଦେଇ ପୁଣି ବିଚ୍ଛେଦ ଭୟରେ ଯେ । ଏମନ୍ତ । ଏକ ବେଣୁ କରେ କରେ ଯତ୍ନରେ । ଗୀତ ଅଧରେ ଅଧରେ ଉଚ୍ଚାରେ । ବେଢ଼ି ଯୁବତୀ ରାସ ରସେ ଗାଆନ୍ତି ବାଇ ତାଳ ହରଷରେ ଯେ । ଏମନ୍ତ । ॥ ୧୮୬ ॥

ଯମୁନା କୂଳରେ ସୁନ୍ଦର ବନରେ ମାନିନୀ ମାନ ଧ୍ୱଂସନରେ । ଅତି ଶୋଭ୍ର ଚନ୍ଦ୍ର ବଦନରେ । ଗୋପୀଙ୍କର ମନ ଭେଦନେ ମୋହନ ବଜେ ମକର ଯାନରେ ସେ । ସୁଷମା । ଉର ଉଲ୍ଲାସେ ମଧୁର ବଚନ । ଭେଦେ ମରମେ ପଙ୍କଜ ଲୋଚନ । ମୋ ପ୍ରାଣ ଅଧିକା ରାଧିକା ଉଛରେ ମୁରଲୀ ମର୍ଦ୍ଦଳ ସ୍ୱନ ସେ । ଏମନ୍ତ । ॥ ୧୮୭ ॥

ଏମନ୍ତ ଅଥ ମଦନ ରସେ ଅତି ପ୍ରମତ୍ତ ନୃତ୍ୟ କାରୀଗଣ । ତାଳ ଦସ୍ତକ ଅଙ୍ଗ ଭଙ୍ଗି ମାନ । ସଙ୍ଗୀତ ଅଛି ନୃତ୍ୟେ ଦେହେ ଦୀପ୍ତିବନ୍ତ ଦିଶନ୍ତି ରତ୍ନ ଭୂଷଣ ସେ । କାଳରେ । ଶ୍ରମ ଜଳ ଜନିତ ସର୍ବ ଅଙ୍ଗ । ମିଶି ଚନ୍ଦନ କସ୍ତୁରୀର ସଙ୍ଗେ । କୁସୁମ ମାଳ ମାନଙ୍କ ସଉରଭ ଚହଟେଲ ଚଉଦିଗେ ସେ । କାଳରେ । ॥ ୧୮୮ ॥

ବୃନ୍ଦା ବଧାନେ ମକର ଯାନ ତାଳ ସଙ୍ଗେ ଅତି ରଙ୍ଗେ ଚଳଇ । ଘୂର୍ଣ୍ଣ ଚକ୍ର ଗତି ପ୍ରାୟେ ଭ୍ରମଇ । ଶ୍ରୀରାଧା ଗୋବିନ୍ଦ ଅଙ୍ଗ ଅବଲମ୍ବେ ଅତିହିଁ ପ୍ରମତ୍ତ ହୋଇ ସେ । ଏମନ୍ତ । ଜୟ ଧ୍ୱନି ଶୁଭେ ସର୍ବ ବଦନେ । ପୁଷ୍ପ ବରଷେ ତରୁ ଲତା ଗଣେ । ମଣ୍ଡଳ ବେଢ଼ିଣି ନୃତ୍ୟେ ସର୍ବ ବାଳୀ ଗୋବିନ୍ଦ ସଙ୍ଗ ମିଳନେ ସେ । ଆନନ୍ଦେ । ॥ ୧୮୯ ॥

ମନେ ବଢ଼ୁର କରନ୍ତି ଏବେ ଏବେ ମୋହନରେ କୃଷ୍ଣ ଅନୁରାଗ । ରାଧା କାନ୍ତିରେ ଶ୍ୟାମ କୋଟି ଯୋଗ । ଭ୍ରମେ ଗଉର ବର୍ଣ୍ଣ ଏକ ଦିଶନ୍ତେ ହୋଇଲେ ଗୋପୀ ସର୍ବ୍ବାଗ ସେ । ଏମନ୍ତେ । ପ୍ରେମଭରେ ବଢ଼ନ୍ତି ଉଲ୍ଲାସେ । ରାଧା ସଙ୍ଗ ଭେଟି କୃଷ୍ଣ ମୋ ପାଶେ । ସ୍ୱରେ ମିଶାଇ ଗାୟନ କରି ବାଇ ମୃଦଙ୍ଗ ଖଞ୍ଜରି ତୋଷେ ସେ । ସମସ୍ତେ । ॥ ୧୯୦ ॥

ବୃନ୍ଦାବନବାସୀ ଦେଖିଲେ ରଜନୀ ସଙ୍ଗେ ଶର୍ବରୀ ଉପଭୁକ୍ତ । କୃଷ୍ଣ ଅଙ୍ଗରେ ଯେଉଁ ସେବା ଯୁକ୍ତ । ସେହିରୂପେ ସ୍ୱେବେ ସେହ କୃଷ୍ଣ ସଙ୍ଗ ଲଭ୍ୟ ହେଲେ ତୋଷ ଚିତ୍ତ ସେ । ବାମାଏ । ଶେଷ ବ୍ରହ୍ମା ଶଙ୍କରେ ଯେ ଦୁର୍ଲ୍ଲଭ । ସ୍ୱେବେ ଗୋପୀଙ୍କି ହୋଇଲେ ସୁଲଭ । ବହୁଧ ବାଦ୍ୟ ଛଡ଼ାଇ ନିବର୍ତ୍ତିଲେ ହରଷେ ରାସ ଉତ୍ସବ ଯେ । ହରଷେ ॥ ୧୯୧ ॥

ଅନେକ ମୂର୍ତ୍ତି ଏକ ହେଲା ବରଷା ଜଳ ସିନ୍ଧୁ ସଙ୍ଗ ପରାୟେ । ରାସ ତାପାର୍ଥ ରାଧାକାନ୍ତମୟେ । ଶ୍ୟାମଘନ ସେହୁ ରସକୁ ଉଦ୍ଧର ବୃଷ୍ଟି କଲେ ଅତି ସ୍ନେହେ ଯେ । ମୋହନ । ଘନରସେ ଗୋପୀ ତାପ ଶୀତଳେ । ସ୍ୱବେ ମଣ୍ଡିଲେକ ଆନନ୍ଦ ଜଳେ । କୃଷ୍ଣଙ୍କୁ ବେଢ଼ି ବସି କର ମଳୟ ପବନେ ଶ୍ରମ ନାଶିଲେ ସେ । ସମସ୍ତେ । ॥ ୧୯୨ ॥

ଗୋବିନ୍ଦେ ଗୋପୀଙ୍କି ବୋଲନ୍ତି ଶ୍ରମ ଯେ ପାଇଅଛ ନୃତ୍ୟ ରଙ୍ଗରେ । କେଳି କରିବା ଏବେ ଯମୁନାରେ । ଶୀତଳ ଜଳରେ ଶ୍ରମକୁ ହରିବା ବୋଲି ହରଷ ମନରେ ଯେ । ଶ୍ରୀହରି । ରାଧା ସଙ୍ଗରେ ମଗ୍ନ ହୋଇଲେ । ଯାଇଁ ସକଳ ଗୋପୀକା ଗହଣେ । କୂଳରୁ ଖସନ୍ତେ ଜଳକା ପରାୟେ ଧାଇଁ ମନ୍ଥର ଘଷଣେ ଯେ । ଜଳରେ । ॥ ୧୯୩ ॥

ଚଉପାଶରେ ବେଢ଼ିଣ ଗୋପବଲ୍ଲୀ କର କମଳେ ଜଳ ତୋଳି । ରାଧାକୃଷ୍ଣ ଶ୍ରୀଅଙ୍ଗେ ଦେଇଁ ଢାଳ । ଅଭିଷେକ କର ସକଳ ଗୋପୀକା ଆରମ୍ଭିଲେ ଜଳ କେଳି ଯେ । ହରଷେ । ଏକ ଅନେକେ ଜଳ ମଧ୍ୟରେ । ବୁଡ଼ି ଉଠନ୍ତି ହୋଇ ଅସ୍ଥିର । ଲୀଳାରେ ପଦ୍ମ କୁମୁଦ ତୋଳି ହେନ୍ତି ଏକ ଅନେକରେ ମାରି ଯେ । ହରଷେ । ॥ ୧୯୪ ॥

ଭ୍ରମରେ ସ୍ନାନ ନ ପାରଣ କରନ୍ତି ଗୋପୀଙ୍କ ବଦନ ପଦ୍ମରେ । କରେ ନିବାରନ୍ତି ଅତି ଉତ୍ସବରେ । ଉର ବସନ ମାନ ଭିନ୍ନ ଜଡ଼ିଣ ଦିଶେ ସର୍ବାଙ୍ଗ ବ୍ୟକ୍ତରେ ସେ । ଏମନ୍ତ । ଦେଖି ଏସାଭ ହସନ୍ତି ଶ୍ରୀହରି । ଅନମ୍ଭାନେ କୃଷ୍ଣଙ୍କୁ ବୋଲ କରି । ମଦରୁ ଉଚ୍ଛାଇ ଗୋପୀଙ୍କି ସମ୍ଭାଳ ଶ୍ରୀକରେ ଦୃଙ୍ଗ ନିବାରେ ସେ । ମୋହନ । ॥ ୧୯୫ ॥

ଝିନ୍ନ ବସନେ ଅଙ୍ଗ ଶୋଭା ରସିକ ବୀର ଦେଖନ୍ତି ମନ ତୋଷେ । ଜଳ ଶୀତଳ ପାତଳ ବଶେଷେ । ଝଲଝଲ ବାଲି ହୀରକ ସମାନ ଜଳରେ ସ୍ଥଳରେ ଦିଶେ ସେ । ଏମନ୍ତ । ଯେନି ଗୋପୀଙ୍କି କରନ୍ତି ବିହାର । କରଣୀ ମଧ୍ୟେ ଯେସନ୍ତ କରିବର । ଏକ ଏକ ପରେ ଜଳ ମାନ ଢ଼ାଳି କରନ୍ତି ତୋଷେ ବିହାର ସେ । ମୋହନ । ॥ ୧୯୬ ॥

ଦଶବଂଶ ମେଳ ହୋଇ ଗୋପୀ ଜଳ ଢାଳନ୍ତି ଶ୍ରୀକୃଷ୍ଣ ଅଙ୍ଗରେ । କୃଷ୍ଣ ସଙ୍ଗେ ଜଳ ଯୁଦ୍ଧ ରଙ୍ଗରେ । ନପୀର ଗୋପୀ ପଳାନ୍ତି ଉର ଜୁର କରନ୍ତି ପ୍ରେମ ଉଙ୍ଗରେ ସେ । ମୋହନ । କେଶ ବସନ ଭୂଷଣ ଅସ୍ଥିରେ । ନଖ ରେଖାମାନ ଦୀପ୍ତମାନରେ । ତରସ୍ତ ଗୃହି ଶ୍ରୀକୃଷ୍ଣ କର ଧରି ତୋଷିଲେ ଚୁମ୍ବ ଦାନରେ ସେ । ମୋହନ । ॥ ୧୯୭ ॥

ରାଧା ଚନ୍ଦ୍ରାବଳୀ ଆଦି ସର୍ବ ବାଳୀ କରନ୍ତି କୃଷ୍ଣ ସଙ୍ଗେ କେଳି । ହସ୍ତ ଧରାଧରି ହୋଇ ମଣ୍ଡଳି । ଜଳ ମାରନ୍ତେ ମନ୍ଦେ କରି ମଧୁରେ କହନ୍ତି ଶ୍ରୀବନମାଳୀ ସେ । ଏମନ୍ତ । ତୁମ୍ଭେ ଶୁଣ ସକଳ ନାରୀଗଣ । ପଶି ଭାଳଦୀ ତୁମ୍ଭରେ ଶରଣ । ସନ୍ଧ୍ୟେ ତୁମ୍ଭ ଧରି ଏବେ ମୋହରେ ଅଭିଷେକ କରେ ଜାଣ ଗୋ । ବାମାଏ । ॥ ୧୯୮ ॥

ପଦ୍ମ କୁମୁଦ ପୁଟେ ଅତି ନର୍ମଳେ ପୂଜା କରଣ ଅଛୁ ପୁଣି । ଦେଖ ତରଙ୍ଗ ଏ ଭ୍ରମର ଶ୍ରେଣୀ । ତେଥି ପ୍ରତିବିମ୍ବ ଦର୍ପଣ ଦେଖାଇ ଦ୍ୱିଜରେ ମଙ୍ଗଳ ଧ୍ୱନି ଯେ । ନିଜାଙ୍ଗ । ଯୋଗିଣ ଅବରଣ ଅନେକ । ମସ୍ୟ ଅଦି ଅବତାର । ସୁଗନ୍ଧ ଅନିଳେ ସୁସ୍ୱାଦୁ ସଲିଳେ ସେବ ଅତିଥି ତୃଷ୍ଣା ଯେ । ଏମନ୍ତ । ।୧୯୯।

ଚତୁର୍ଥୀ ବୋଲନ୍ତି ଶୁଣ ବର ସର୍ବଗୁଣ ତୁମ୍ଭଙ୍କୁ ଏକା ସେବେ । ଜଗି ବହ୍ମାଣ କର ଏଥି ତୁମ୍ଭେ । ଏଡ଼ି ଯେନ ଶ୍ୟାମଘନ ତାରାକର ମଧ୍ୟରେ ଅଟୁ ଆମ୍ଭେ ହେ । ମୋହନ । ତୁମ୍ଭ ଦର୍ଶନ ନଗି ଆମ୍ଭେ ଲଭୁ । ତାଙ୍କ ପାଶୁଁ ଥାଉ ଆମ୍ଭେ ସେବୁ । ଶ୍ରୀକୃଷ୍ଣ ବୋଲନ୍ତି ଗଉର ହେଲେନି ତୁମ୍ଭ ଅଙ୍ଗ ସଙ୍ଗ ସ୍ପୃହେ । ବାମାଏ । ।୨୦୦।

ତୁମ୍ଭର କୁଚ କୁଙ୍କୁମ ଚନ୍ଦନରେ ଅମ୍ବର କାନ୍ତିକୁ ଢାଙ୍କିଲେ । ତୁମ୍ଭ ରୂପ ଗୁଣରେ ଯେ ମଜ୍ଜିଲେ । ନାରଦ କହନ୍ତି ନଳକୁବେରଙ୍କୁ ଏତେ ସ୍ତବରେ ବଢ଼ିଲେ ହେ । ଗୋପୀଏ । ଗୋପୀ ଗୋବିନ୍ଦ କେଳି ସମାଧାନେ । ସୂର୍ଯ୍ୟ ତନୟା ସେବନ୍ତି ବଧାନେ । ସର୍ବ ତୀର୍ଥରୁ ଯେଣୁ ଜଳ ବିହାର କରନ୍ତି ଅନନ୍ଦ ମନେ ଯେ । ମୋହନ । ୨୦୧ ।

ପୁଣ୍ୟନାସ୍ତି ଏ ନବ କାଶ୍ମୀ କୁଞ୍ଜଶ୍ରୀ ଶୁଣ ସ୍ଥିର କର ମତି । ବେନି ପାର୍ଶ୍ୱେ କାବେରୀ ଗୋମତୀ । ଗୋଦାବରୀ ପୁନଃପୁନ ରେବା ବକ୍ଷୁ ପ୍ରଦି ବୃନ୍ଦାବାଦ ଖ୍ୟାତି ଯେ । ଏମନ୍ତ । ଶୁଣ ମସ୍ତକ ବ୍ରାହ୍ମୀ କୃଷ୍ଣବେଣୀ । ପୃଷ୍ଠ ପୁଚ୍ଛ ଦେବ ବଇତରଣୀ । ଏମନ୍ତ ଗଙ୍ଗେ ବସି ଲାବଣ୍ୟ ଅଙ୍କୁଶ ଅଦ୍ଭୁତ କରଣ ପୂର୍ଣ୍ଣ ଯେ । ମୋହନ । ।୨୦୨।

ଏହିରେ ଯମୁନା ସ୍ନାନ କରନ୍ତି କୃଷ୍ଣଙ୍କ ସଉଭାଗ୍ୟ ହୋଇ । ଗୋପୀ ମାନଙ୍କୁ ଅନୁରୋଧ ଧାଇ । ରାଧାଙ୍କୁ କମଳ ପୁଷ୍ପେ ପୂଜା କରନ୍ତି ଅତିହିଁ ଆନନ୍ଦ ହୋଇ ସେ । ଯମୁନା । ଚନ୍ଦ୍ରାବଳୀଙ୍କି ଅର୍ଘ୍ୟ କୁସୁମେ । ମଙ୍ଗଳା ଯୂଥେଶ୍ୱରୀ କେ କନକେ । ଶ୍ୟାମଳା ନୀଳନଳିନୀ ଭଦ୍ରା ପୁଣ୍ଡରୀକେ ପୂଜିଲେ ଅତି ପ୍ରମୋଦେ ସେ । ଯମୁନା । ।୧୦୩।

ଯମୁନା ପୂଜା ସାରେ ସର୍ବେ ଆନନ୍ଦ କୃଷ୍ଣ ଭକ୍ତେ ଗଜ ବାହନେ । ଜଳ ସିଞ୍ଚନ୍ତି ଅତି ତୋଷମନେ । ଶ୍ରୀକୃଷ୍ଣ ଏମନ୍ତ ଶୋଭନ୍ତ ଗଜେନ୍ଦ୍ର ହରିରେ କି ପଦ୍ମବନେ ସେ । ଏମନ୍ତ । ଗୋପୀ ଗୋବିନ୍ଦ କାଳିନ୍ଦୀ ବିହାର । ବର୍ଣ୍ଣିବାକୁ ସାଧ୍ୟ ଅଛି କାହାର । ମଦନ ସାରେ ଶୀତେ ଅଙ୍ଗ ବାହାର ହେଲେ ଜଳୁ ସରସର ସେ । ସମସ୍ତେ । ୧୦୪।

ବାହାର ସମସ୍ତେ ବାସକୁ ସଂଯୋଗି କୂଳେ ରଖିଥିବା ବସନ । ପିନ୍ଧି ସ୍ୱବେଶ ହୋଇଲେ ବହନ । ମନ ନଭଶ୍ଚାଳ କୃଷ୍ଣଙ୍କୁ ବରନ୍ତି ଗୋପୀଏ ଆନନ୍ଦ ମନ ସେ । ସମସ୍ତେ । ହୋଇ ରତିରେ ଉତ୍ସୁକ ବାଳୀ । ତ ଚେତନ୍ତି ଶ୍ରୀକୃଷ୍ଣ ଜଳକେଳି । ଭଳମ୍ଭ କୃଷ୍ଣଙ୍କର ଦେଖି ମନରେ ବିଚାରନ୍ତି ସର୍ବ ବାଳୀ ସେ । ଏମନ୍ତ । ॥ ୧୦୫ ॥

ଅମ୍ଭଙ୍କୁ ଗୋ ହରି ଲୁଚିଲେ ବନରେ ଏବେ ଲୁଚିବା ଅମ୍ଭେ ମାନେ । ବୋଲୁଥାନ୍ତି ମୋର ସଙ୍ଗ ବିହୀନେ । ଲୁଚାଇ ପାରିବକି ତୁମ୍ଭ ତନୁକୁ ଜାଣିମା ଏବେ କେସନେ ଗୋ । ଦେଖିବେ । ଜାଣିବା ଗୋ କୃଷ୍ଣଙ୍କ ଅନୁରାଗ । କେଉଁଠି କେମନ୍ତେ କୁଞ୍ଜେ ହେବେ ସଙ୍ଗ । ଯେ ଯାହାମତେ କରୁଁ ଅଭିସ୍ଥିଲେ ଏମନ୍ତ ପ୍ରକାରେ ରଙ୍ଗ ସେ । ସେକାଳେ ୧୦୬

ସ୍ୱୀୟା ଚନ୍ଦ୍ରବଳୀ ବୃନ୍ଦାଦି ଭୂଗୋଳ ଶତବୃନ୍ଦକଲେ ରଚନ । ପୁଣି ଯତନ୍ତ୍ର ଦକରେ ଗଢନ । ସପ୍ତ ଦ୍ୱାର ସପ୍ତ ଅବରଣ ରଚିଲେ ଅତି ଯତନ ଯେ । ସଭୃରେ । ଯମୁନାକୁ ସେ କମଳ ବାନ୍ଧିଲ । ସଦା ସ୍ୱୀୟା ମାଧବଙ୍କ ବନ୍ଧାର । ଚିନ୍ତାମଣି ବୃନ୍ଦାବନ ଭୂବ ଦେବ ମାନବରେ ଅଗୋଚର ଯେ । ମହିମା । ॥ ୧୦୭ ॥

ସପ୍ତ ଦ୍ୱାର ଜଗିଛନ୍ତି ଦୁଆର ପ୍ରଥମେ ମିହିର ଦୁହିତି । ଦ୍ୱିତୀୟ ଦ୍ୱାରେ ରହେ ବୃନ୍ଦାବନ୍ତୀ । ଜଗତରେ ଯାର ନାମରେ ଏ ବନ ହୋଇଛି ଅତି ବଖ୍ୟାତି ଯେ । ଏମନ୍ତ । ତୃତୀୟ ଦ୍ୱାରେ କଶଟି ବାନରୀ । ରଙ୍ଗଣୀ ମୃଗ ଚତୁର୍ଥ ଦୁଆରୀ । ପଞ୍ଚମେ ତାଣ୍ଡବୀ ମୟୂର ଯାହାର ନୃତ୍ୟେ ତୋଷ ସ୍ୱୀୟା ହର ଯେ । ଏମନ୍ତ । ॥ ୧୦୮ ॥

ଦକ୍ଷ ନାମେ ଶୁକ ଷଷ୍ଠମେ ମଞ୍ଜୁଳା ସାର ସପ୍ତମଦୁଆରେ । ଅଷ୍ଟଦଳ ପଦ୍ମ ତହିଁ ମଧ୍ୟରେ । ଅଷ୍ଟ ସଜନୀ ରହିଲେ ଅଷ୍ଟ କୁଞ୍ଜେ ନାମ ଅତି ପ୍ରସିଦ୍ଧରେ ଯେ । ଏମନ୍ତ । ପୁଣି ଉତ୍ତର ଦିଗେ ଅନୁପମ । ମଞ୍ଜୁ କୁଞ୍ଜ ମଦନ ସୁଖ ଧାମ । ମୂଳ ପ୍ରକୃତି ଈଶ୍ୱର ଅରାଧନା କଲେ ଲଳିତା ସୁଷମ ଯେ । ହରଷେ । ॥ ୧୦୯ ॥

ଈଶାନ୍ୟେ ଆନନ୍ଦ ସୁଖଦ କୁଞ୍ଜରେ ବଶାଖା ବୈଶ୍ୱରୀ ଭଜେ । ପୂର୍ବରେ ଚିତ୍ରା ଆନନ୍ଦଦା କୁଞ୍ଜେ । ଏକ ମନ ହୋଇ ସ୍ୱୀୟା ଦେବତାଙ୍କୁ ଅତିହି ଆନନ୍ଦେ ଭଜେ ଯେ । ଏମନ୍ତ । କଳାଷ କୁଞ୍ଜେ ଅନଳ କୋଣରେ । ଇନ୍ଦୁଲେଖା କୃଷ୍ଣ ପ୍ରିୟ ସ୍ୱମରେ । ଚମ୍ପକ କାନନ କୁଞ୍ଜେ ଚମ୍ପକଲତା ସ୍ୱୀୟପଶ୍ୱୀଙ୍କ ସ୍ମରେ ଯେ । ଦକ୍ଷିଣେ । ॥ ୧୧୦ ॥

ସୁଖଦ କୁଞ୍ଜେ ନୈଋତେ ରଙ୍ଗଦେବୀ ଗୋପେଶ୍ୱରୀଙ୍କି
ସେବେ ସଦା । ପଶ୍ଚିମରେ ତୁଙ୍ଗବିଦ୍ୟା-ନନ୍ଦଦା । ନିର୍ଣ୍ଣୋଦେବୀ
ପାଦପଦ୍ମ ନିତ୍ୟରେ ସେବା କରେ ତୁଙ୍ଗବିଦ୍ୟା ଯେ । ଏମନ୍ତ ।
ସୁଖଦ କୁଞ୍ଜେ ବାୟୁକୋଣେ ଥାଇ । କୃଷ୍ଣ ପୂଜିତା ସୁଦେବୀ
ପୂଜାଇ । ଏରୂପେ ଅଷ୍ଟ ସଖୀ ଅଷ୍ଟ କୁଞ୍ଜରେ ଅଷ୍ଟ ନାମ
ଇଷ୍ଟେ ଧାଇ ଯେ । ହରଷେ । ।୨୧୧।

ମଧ୍ୟେ ଶ୍ରୀକୃଷ୍ଣ ଶୋଭାବନ ସୁବର୍ଣ୍ଣ ପୀଠ ରତ୍ନସିଂହାସନ ।
ଚିନ୍ତାମଣି ରତ୍ନେ ହେମ ନିର୍ମ୍ମାଣ । କଳ୍ପ ପାଦପ ଛାୟାରେ
ଅଦ୍ଭୁତ ହୋଇଣ ଅତି ସୁଶୋଭନ ଯେ । ଏମନ୍ତ । କାମ
ସଙ୍ଗ୍ରାମେ ଏହୁ ପଦ୍ମବ୍ୟୂହ । ଗୋବିନ୍ଦରେ ଭେଦ ଅନ୍ୟରେ
ଅଜୟ । ଦ୍ୱାସ୍ଥ ନ ଗାଢ଼ ପଶିଲେ ସ୍ୱଥା ଚନ୍ଦ୍ରାବଳୀ ଗୋପିକା
ସମ୍ପଦ ଯେ । ହରଷେ । ।୨୧୨।

ପ୍ରଥମ ଆବରଣେ ରହେ ଶ୍ୟାମଳା ଦ୍ୱିତୀୟରେ ରହେ
ମଙ୍ଗଳା । ତୃତୀୟରେ ଭଦ୍ରା ଅତି ମଞ୍ଜୁଳା । ଚତୁର୍ଥ ଆବରଣେ
ଧନ୍ୟା ଅତିହିଁ ଆନନ୍ଦେ ହୋଇଣ ଭୋଳା ଯେ । ବାମାଏ ।
ପଞ୍ଚ ମା-ବରଣେ ମଦନାତଙ୍କ । ଷଷ୍ଠ ଅବରଣେ ଯେ ମଧୁମଙ୍ଗ ।
ସପ୍ତ କାଞ୍ଚନକ ଅବରଣେ ଚନ୍ଦ୍ରାବଳୀ ସଖୀଙ୍କ ସଙ୍ଗତି ଯେ ।
ରହିଲେ । ।୨୧୩।

କର୍ଣ୍ଣିକା ମଧରେ ରାଧିକା ବଳାସ୍ତେ ଯେନ ସଙ୍ଗରେ ସଖୀ
ଗଣ । ଏହୁ ଅଷ୍ଟ ଯୂଥେଶ୍ୱରୀ ପ୍ରମାଣ । ଏକ ସହସ୍ର ଯୂଥେ
ଯେଝା ଯମର କୁଞ୍ଜରେ ରହିଲେ ପୁଣ ଯେ । ଏମନ୍ତେ ।
ପାଞ୍ଜୁଳା ଗୋଷ୍ଠ ଗୋଟିକେ ଯତନ । ଗୃହ ପୁଷ୍କରଣୀ ଯେ
ଗୃହ ବନ । ଏକାନ୍ତ ହୋଇଣ ସମସ୍ତେ ରହିଲେ ଅତିହିଁ
ଆନନ୍ଦ ମନରେ । ଏମନ୍ତ । ।୨୧୪।

ଯେତେ ଯୁବତୀ ତେତେ କୃଷ୍ଣ ସମସ୍ତେ ବୃନ୍ଦାବନଙ୍କ କରଗତ । ଯେଝା କୃଷ୍ଣେ ରହିଲେ ତୋଷ ଚିତ୍ତ । କୃଷ୍ଣ ଆଗମନ ପଥକୁ ନିରେଖି ସବେ ହୋଇ ଉତ୍ସୁକିତ ଯେ । ଏମନ୍ତ । କୃଷ୍ଣ ଏମନ୍ତ ଯାର ଜନ କେଳ । ପାଶେ ଉଦେଖି ରାଧା ଚନ୍ଦ୍ରାବଳୀ । ପ୍ରଥମଦ୍ୱାରେ କାଳନ୍ଦୀକ ରଖିଣ ଚଳିଲେ ଶ୍ରୀବନମାଳି ଯେ । ଭିତରେ । ॥ ୨୧୫ ॥

ପଦ୍ମ ବୃନ୍ଦ ଭେଦି ଏକ ଏକ ଯୂଥେଶ୍ୱରୀ ସଙ୍ଗେ ହେଲେ ମିଳନ । ଦକ୍ଷିଣ ନାୟକ ପ୍ରେମ ଅଧୀନ । ସପ୍ତଦ୍ୱାର ସାତ ଆବରଣ ଗୋପୀ ହୋଇଲେ କୃଷ୍ଣ ଅଧୀନ ଯେ । ସମସ୍ତେ । ଅଷ୍ଟଦଳ ପଦ୍ମ ମଧ୍ୟେ କେଶର । ରାଧା ସଖୀଙ୍କ ସଙ୍ଗତେ ପ୍ରଖର । ମଧ୍ୟସ୍ଥ କୃଷ୍ଣେ ଶ୍ରୀମତୀଙ୍କ ସଙ୍ଗତେ ମିଳି ରସିକ ନାଗର ଯେ । ହରଷେ । ॥ ୨୧୬ ॥

ସେବା ପର ରୂପମଞ୍ଜରୀ ଆଦିରେ ସଜ୍ଜାଦି ଉପହାର ମାନ । ଖଟି ରାଧାକୃଷ୍ଣଙ୍କ ସନ୍ନିଧାନ । ଚନ୍ଦ୍ରାବଳୀ ଆଦି ଶ୍ରୀକୃଷ୍ଣ ସଙ୍ଗତେ ଅଭିନ୍ନ ଲୀଳା ବିଧାନ ଯେ । ସମସ୍ତେ । ଯେତେ କୃଷ୍ଣ ତହିଁ ତେତେ ଯୁବତୀ । ଯେତେ ନାରୀ ହରି ତେତେ ମୂରତି । ଏକେ ଏକେ ହରି ରମଣୀ ମାନସେ ଆନନ୍ଦ ହୋଇଲେ ଅତି ଯେ । ଗୋପୀଏ । ॥ ୨୧୭ ॥

ହରଷ ରଙ୍ଗେ ସ୍ଥାନେ ସ୍ଥାନେ ବିହାର କେହି କାହାକୁ ନ ଜାଣନ୍ତି । କେହୁ ସୁବେଶ କୃଷ୍ଣଙ୍କୁ କରନ୍ତି । ପିନ୍ଧାଇ ସରୁ ଝିନ୍ନ ବାସ ଯତନେ ଚୂଳ ବାନ୍ଧି ତୋଷ ମତି ଯେ । ଏମନ୍ତ । କେକୀ ଚନ୍ଦ୍ରିକା ଅଳକା ଆବଳୀ । ଶୋଭି ଗୁଞ୍ଜି ଅସ୍ଥିର ହୋଇ ବାଳୀ । ଚନ୍ଦନ ତିଳକ ଗୁରୁ କପୋଳରେ ଗୋପୀଙ୍କ ଚିତ୍ତ ନ ଟଳେ ଯେ । ଦର୍ଶନେ । ॥ ୨୧୮ ॥

ମକର କୁଣ୍ଡଳ କର୍ଣ୍ଣଯୁଗଳରେ ଦିଶେ ଅଛିନ୍ତି ଯେ ସ୍ୱଚ୍ଛ ।
ନାସାପୁଟେ ଗଜ ମୋତି ରଞ୍ଜନ । କର୍ପୂର ତାମ୍ବୂଳ ଚର୍ବ୍ବି କରି
ରଙ୍ଗେ ଅଛନ୍ତି ଆନନ୍ଦ ମନସେ । ମୋହନ । କଣ୍ଠେ ଯତନେ
ଯୋଡ଼ ମୋତି ହାର । ବନମାଳ ମଣ୍ଡନ ହୃଦୟର ।
ବାହେ ବାହୁଟି କରେ ହେମ କଙ୍କଣ ରତନମୁଦ୍ରିକା କର
ସେ । ଶୋଭନ । ॥ ୨୧୯ ॥

କଟିରେ କିଙ୍କିଣୀ ସର୍ବାଙ୍ଗରେ ପୂର୍ଣ୍ଣ କର୍ପୂର ଚନ୍ଦନକୁ
ବୋଳି । ଦେଇ ଚରଣେ ନୂପୁରକୁ ବାଳି । ବେଣୁ ବଜାଇ
ଗୋପିକା ଗଣ ଦେଇ ଅନନ୍ଦରେ ହୁଳହୁଳି ସେ । ଏମନ୍ତ ।
କେଉଁ କୁଞ୍ଜେ ଭୋଜନ ଲୀଳା ସାର । କାହା ସଙ୍ଗେ ଖେଳନ୍ତି
ପଶା ହାର । କାହାସଙ୍ଗେ ବନେ କରନ୍ତି ଭ୍ରମଣ କାହାସଙ୍ଗେ
ଲୀଳା କର ସେ । ମୋହନ । ॥ ୨୨୦ ॥

ଚୂଆ ଚନ୍ଦନ ଗୋଳ କାହା କୁଚରେ ଲେଖନ୍ତି ହସ
ପତ୍ରାବଳୀ । କାହିଁ ସଙ୍କେତ ସଖୀ ସଙ୍ଗେ କେଳି । ହୋଇ
ରସିକ ବିପରୀତ ରତି ଧନ ଆନନ୍ଦ ଶ୍ରୀବନମାଳି ସେ ।
ସେକାଳେ । କାହା ସଙ୍ଗେ ଖେଳନ୍ତି ପଞ୍ଚସାରି । ଗୋପୀଙ୍କୁ ବେ
ଷ୍ଟାନ ମନ ବୁଝାଇ । କେବଳ କୁଞ୍ଜେ ଦୋଳି ବସି ଖେଳନ୍ତି
ମନ୍ଦ ମରୁତ ବହଇ ସେ । ଏମନ୍ତ । ॥ ୨୨୧ ॥

କାହାର ଉର ଅପଗରେ ଆଉଛି କହନ୍ତି ଶଶିକ ଅନାଇଁ ।
ଦେଖ ଚନ୍ଦ୍ର ତୋ ମୁଖ ସମ ହୋଇ । ଶ୍ୟାମ ଲାଞ୍ଛନ ଏକା
ତୋ ହୃଦୟେ କଳଙ୍କରେ ନନ୍ଦିତ ସେହି ଗୋ । ଏମନ୍ତ ।
ଏବେ ଉଦ୍ଧ୍ୱେ ନିଜ ପୁରେ ଯାଅ । ମୋର ଲାଗି କଳଙ୍କି
ତୁମ୍ଭେ ନୁହ । ଗୋପୀ ବୋଲେ ଶ୍ୟାମ ମୃଗମଦେ ହୋଏ
ଅଛନ୍ତି ସୁନ୍ଦର ଦେହ ହେ । ମୋହନ । ॥ ୨୨୨ ॥

ନବୀନ ନୀରଦ ତନୁ ଅନୁରାଗ ଅଙ୍ଗ ଫୁଟି ଦିଶେ ବାହାରେ । ଯେହ୍ନି ପାଇ କୃପା ଥାଇ ଯାହାରେ । ଲେଖିଲେ ଅନ କାନ୍ତ ତା ପାଇବ ଏହ୍ନି ମେଦନୀର ପରେ ହେ । ମୋହନ । ଛର ଏ ସୁଖ ସ୍ନେହକୁ ଅନ୍ତର । ଯିବୁ ପୁଣିହିଁ ଅମ୍ଭେ ନିଜ ପୁର । ଛଥାଇବ ପିଠି କଠିଣ କୁଚରେ ବସନ୍ତ ଦେବ ମଧୁର ହେ । ମୋହନ । ॥ ୨୨୩ ॥

ଶୁଣି ନାଗର ପ୍ରେମଭରେ ଶ୍ରୀମୁଖେ ଲୋଉଟାଇ ଦେଲେ ଚୁମ୍ବନ । ଦକ୍ଷିଣ ନାୟକ ସର୍ବ ସମାନ । ଏମନ୍ତେ ଜାଣି ନବ ଘଡି ଶୃଙ୍ଗାରେ ହରଷ ସକଳ ମନ ଯେ । ଏମନ୍ତ । ନିଦ୍ରା ଅଣେ କଲା ଲକ୍ଷ୍ମୀନୟନେ । ପ୍ରିୟେ କୋଳେ ପୁଷ୍ପ ଶଯ୍ୟା ଶୟନେ । ଛନ୍ଦିଣ ତନୁ ଲପନ ନପନିକୁ ଦେଇ ନିଦ୍ରା ସୁଖ ମନେ ଯେ । ସମସ୍ତେ । ॥ ୨୨୪ ॥

ଗୋବିନ୍ଦ ସଙ୍ଗେ ଯେତେ ଯେତେ ବିହାର ଦେଖନ୍ତି ନିଦ୍ରାରେ ସ୍ୱପନ । ଏ ସମୟେ ରଜନୀ ଯେ ସମ୍ପୂର୍ଣ୍ଣ । କପୋତ ତାମ୍ରଚୂଡ ଧ୍ୱନି ପ୍ରବଳ ପୂର୍ବ ଦିଗ ଶୋଭାବନ୍ତ ଯେ । ସମୟେ । ଦିଜରାଜ ବାରୁଣୀ ଯନ୍ତୁଁ ଲଙ୍ଘି । ଦେଖୁ ଦେଖୁ ସେ ନିଜ ତେଜ ହାରି । ତାରକା ଗଣ ମଳିନ କାନ୍ତ ବନୁ ଜାଣି ନୀରସକୁ ଲଙ୍ଘି ଯେ । ଏମନ୍ତ । ॥ ୨୨୫ ॥

ଦେଖି ତରସ୍ତେ ବୃନ୍ଦା ଶୁକ ପାଖଙ୍କି ପଢ଼ ବୋଲିଣ ଆଜ୍ଞା ଦେଇ । ଶୁଣି ଶୁକ ଏ ବଚନ ଘୋଷଇ । ଗୋକୁଳ ନାୟକ ଜଗଦାନନ୍ଦକ ଦେଖ ଜାଣି ନାଶ ହୋଇ ହେ । ଶ୍ରୀହରି । ଜଗନ୍ମୋହନ ରାଧା ପ୍ରାଣବନ୍ଧୁ । ଧଇର୍ଯ୍ୟ ମେରୁ ମର୍ଯ୍ୟାଦାରେ ସିନ୍ଧୁ । ନିଦ୍ରାକୁ ତେଜି ପୁରକୁ ବଜେ କର ଅସ୍ତ ହୋଇଲେ ଇନ୍ଦୁ ହେ । ମୋହନ । ॥ ୨୨୬ ॥

ସାର ଘୁଷଇ ହେ ନୃପଶ୍ରଜନନ୍ଦିନୀ ଶ୍ରୀକୃଷ୍ଣଚନ୍ଦ୍ର ପ୍ରାଣଧନୀ । ଝିଟି ଅଳଙ୍କାର ଜଗତ୍ ବନ୍ଦିନୀ । ରାଧେଶ୍ୱରୀ ପୁରେ ବଜେ ଇଭ ଅସି ନାଶ ହେଲନ୍ତ ରଜନୀ ଗୋ । ଶ୍ରୀମତୀ । ବଳମ୍ବ ଅଉ ନକର ଏଥର । ଲୋକ ଗହଳ ହୋଇବେ ପଥର । ଶୁଣି ରାଧାକୃଷ୍ଣ ଉଭୟେ ଶଯ୍ୟାକୁ ଛାଡ଼ି ଉଠିଲେ ସତ୍ୱର ସେ । ଦେଖାଲେ । ॥ ୨୨୭ ॥

ବଳ୍ଲେବ ଚନ୍ଦ୍ର ବୁନ୍ଦେ ଖେଦ ମାନସେ ମିଳିଲେ ସଜନୀ ମଞ୍ଜରୀ । ବୃକ୍ଷେ ଡାକିଲା କଶଠୀ ବାନରୀ । ଜଟିଳା ଅଛିଲା ଏ ବାଣୀ ଶ୍ରବଣେ ଅତଙ୍କ ଶ୍ରୀମତୀ ହରି ସେ । ଏମନ୍ତ । ବେନ୍ଦ ମାନସେ ଅତି ମେନ୍ଦ୍ର ପୁରି । ଯାଇ ପ୍ରବେଶ ହେଲେ ନଜ ପୁରୀ । ଯେଯାହା ପୁରେ ମାନସ ଆନନ୍ଦରେ ପଲଙ୍କେ ଶୟନ କରି ସେ । ହରଷେ । ॥ ୨୨୮ ॥

ହରଷ ମାନସେ ଗୋପ ନାରୀଗଣ ମନ୍ଦିରେ ପ୍ରବେଶ ହୋଇଲେ । ନୀତି ମତେ ଯେ ଗୃହ କୃତ୍ୟ କଲେ । ଅତି ଆନନ୍ଦ ମାନସରେ ଗୋବିନ୍ଦ ଲୀଳା ସୁମରି ଗାଇଲେ ସେ । ଗୋପୀଏ । ପ୍ରଭୁଃ ଉଠି ଯଶୋଦା ଡାକି ନନ୍ଦ । କୃଷ୍ଣ ମୁଖ ଚାହିଁ ଲଭି ଆନନ୍ଦ । ନାରଦ ନଳ କୁବେରଙ୍କୁ କହନ୍ତି ପୂର୍ଣ୍ଣ ହେଲା ଶାପ ରସ ହେ । ଏମନ୍ତେ । ॥ ୨୨୯ ॥

ଶ୍ରୀରାଧେଶ୍ୱରୀ ଶ୍ରୀକୃଷ୍ଣ ପାଦ ପଦ୍ମ ଧ୍ୟାନ କରି ନିଜ ମାନସେ । ସଙ୍ଗ ଗୋପୀଙ୍କି ସେବ ଅତି ତୋଷେ । ଜଗନ୍ନାଥ ନାରାୟଣ ଦେବ ରାସ ଲୀଳା କହିଲେ ଏରସେ ସେ । ହରଷେ । ଏତୁ ବୃନ୍ଦାବନଚନ୍ଦ୍ର ବିହାର । ଏଥେ ବିଶ୍ରାମ ଚତୁର୍ଦ୍ଦଶ ଲୀଳାର । ସୁଜନେ ଦେଇନ ମାନସ ସାବଧାନେ ଏ ମୋର ଦୋଷ ନଧର ହେ । ସୁଜନେ । ॥ ୨୩୦ ॥



## ଏଠାରେ ବଶ୍ରାମ ଚତୁର୍ଦ୍ଦଶ ପ୍ରକାଶ ।

—•—

ରାଗ । କାନଡ଼ା ।

ପ୍ରଭାତୁ କୃଷ୍ଣ ଉଠି ଯେନ୍ନ ସଖାଙ୍କୁ ଗୋଷ୍ଠେ ଗାବ ମାନ ଦୁହାଇ । ପୁରେ ପ୍ରବେଶିଲେ କ୍ଷୀର ବୃହାଇ । ସ୍ନାନ ସାର ହୋଇ ସୁବେଶ ଭୋଜନ ଅନ୍ତେ ଅତି ତୋଷ ବଦି ସେ । ମୋହନ । ଅଚମନ ସାର ଭୂକ୍ତି ତାମ୍ବୂଳ । ଯେନ ସଙ୍ଗେ ସବ ଗୋପବାଳ । ଅତି ଆନନ୍ଦେ ଗୋଧନକୁ ଚଲୁଇ ବୃନ୍ଦାବନେ ହେଲେ ମେଳ ସେ । ମୋହନ । ।୧୩୧।

ବ୍ରଜ ନାରୀ ମନ ଖେଦଭର କୃଷ୍ଣ ବିଚ୍ଛେଦେ ହୃଦୟରେ ଦୀନ । ଚନ୍ଦ୍ର ନ ଦେଖି ଚକୋର ଯେସନ । ଦଶ ବଂଶ ମେଳ ହୋଇ ବର୍ଣ୍ଣନ୍ତି ଶ୍ରୀକୃଷ୍ଣ ଚରିତ ମାନ ସେ । ସମସ୍ତେ । ଯେଉଁ କାଳେ କଲେକ ଯେତେ ଲୀଳା । ଏକ ଆରକେ କହନ୍ତି ଅବଳା । କେ ବୋଲେ ଶ୍ରୀକୃଷ୍ଣ ବଂଶୀଧ୍ୱନି ଶୁଣି ଜଗତ ହୃଅନ୍ତି ଭୋଳ ସେ । ସଜନୀ । ।୧୩୨।

କେ କହେ ସ୍ନାନ ଭୋଜନ ସୁବେଶ କରାଇ ବନକୁ ଯିବାର । କେ କହଇ ବୃନ୍ଦାବନ ବିହାର । କେ କହେ ଉତ୍ତର ଗୋଷ୍ଠୁ ବଜେ କେହ୍ନୁ କହର ବେଶ ବହାର ସେ । ଏମନ୍ତ । ପୁରେ ଯଶୋଦା କୃଷ୍ଣ ଯାନ୍ତେ ବନ । ଲଭି ବିଷାଦ ଛନ୍ନଛନ୍ନ ମନ । ଆରତେ ଗୋପୀଙ୍କି ପୁଛନ୍ତି ତୁମ୍ଭେ କି ଦେଖିଲ ମୋର ନନ୍ଦନ ଗୋ । ବାମାଏ । ।୧୩୩।

ଶ୍ୟାମଳ କୋମଳ ତନୁ ବଜସ୍ତରୁ ନଇଲେ ଏତେ ବେଳ ଯାଏ । କୃଷ୍ଣ ସ୍ୱଷପ ଯାଡ଼ିବ ମୋ ଚକ୍ଷେ । ନ ସରେ ଦିନ ଝୁରଇ କୃଷ୍ଣ ବନୁ ମାନସ ଅକୁଳ ହୁଏ ଗୋ ! ବାମାଏ ! ଯେତେ ନାହିଁ କଲେ ଗଣେ ଗୋଧନ । ବୋଲେ ଅର୍ଜ୍ଜିବା ମାଏ ବସ୍ତୁ ଧନ । ଏକାଇ ବସି ଶ୍ରଦ୍ଧା ଗୁଙ୍ଗି ନୁହଇ ମନ ମୋର ଛନ୍ଦ ଛନ୍ଦିଗୋ । ବାମାଏ । ॥ ୨୩୪ ॥

ଯମୁନାକୁ ଯାଇ ମୋର ନନ୍ଦନକୁ ଦେଖିଛ କଗୋ ତୁମ୍ଭେ କେହି । ଗୋପୀ କହନ୍ତି ଅତି ତୋଷ ହୋଇ । ଯେମନ୍ତେ ଶ୍ରବଣେ ଯଶୋଦା ମାନସ ଆନନ୍ଦ ହୋଇବ ତହିଁ ସେ । କହନ୍ତି । ଯାଇଥିଲୁ ଯମୁନା କୂଳେ ଆଜ । ବଂଶୀ ବାଉଥିଲେ ତୁମ୍ଭ ତନୁଜ । ପାଣି କୁମ୍ଭ ପେନ ଆଣି ନପାରିଲୁ ଦେବେ ନ ରହିଲା ଲାଜ ଗୋ । ଯଶୋଦେ । ॥ ୨୩୫ ॥

ଶ୍ରବଣ ମାତ୍ରକେ ସମସ୍ତ ସଜନୀ ଯାଇଁଲୁ ଅତି ଶ୍ରଦ୍ଧାରେ । ତୁମ୍ଭ ସୁତ ଗୋପସୁତ ମଧ୍ୟରେ । ଅଦି ପୁରୁଷ କ ସ୍ୱର ଶିଷ୍ଟ ମଧ୍ୟେ ପ୍ରକାଶ ଅତି ଛନ୍ଦରେ ଗୋ । ଯଶୋଦେ । ତରୁତଳେ ତ୍ରିଭଙ୍ଗ ଛନ୍ଦେ ରହି । ବମ୍ବଅଧରେ ମୁରଲୀ ବଜାଇ । କୋମଳ ଅଙ୍ଗୁଳି ସ୍ୱପତ ରନ୍ଧ୍ରରେ ଗୃନ ଜଗତ ମୋହଇ ଗୋ । ଯଶୋଦେ । ॥ ୨୩୬ ॥

ଖଗ ମୃଗାଦି ବନଚର ବଇର ତେଜିଣ ଅତିସ୍ନେହ ହୋଇ । ତରୁ ଲତା ପୁଷ୍ପିତେ ମଧୁ ବହି । ଫଳଭରେ କୃଷ୍ଣ ଚରଣେ ପଡନ୍ତି ନମସ୍କାର ବଧ ବହି ଗୋ । ଯଶୋଦେ । ଯହିଁ ଅଚେତ ଏସନ ଚରିତ । ସଚେତ କ ମୋହିତ ଅଚମ୍ଭିତ । କୃତ୍ୟ ଗଙ୍ଗେ ଶ୍ରମ ପାଇ ତରୁ ତଳେ ବିଶ୍ରାମି ଅନନ୍ଦ ଚିତ୍ତେ ସେ । ମୋହନ । ॥ ୨୩୭ ॥

ଶୀତଳ ଜଳ ସିଞ୍ଚି ଗୋପ କୁମାରେ ପଲ୍ଲବେ କୃଷ୍ଣଙ୍କୁ ବିଞ୍ଚନ୍ତି । ଜ୍ୟେଷ୍ଠ ଭ୍ରାତ କୃଷ୍ଣ ଗୃହିଁ କହନ୍ତି । ଭୋକ ଲାଗୁଛି କି ଖାଇବା ବୋଲନ୍ତେ ଗୋପ ସୁତଙ୍କୁ ପୁଚ୍ଛନ୍ତି ସେ । ଶ୍ରୀରାମ । ପୁରୁ କେ କିସ ଆଣି ଅଛ କହ । କ୍ଷୁଧାରେ ଆକୁଳ କୃଷ୍ଣ ଦେହ । ଆଣିଛୁ ନାନାମତେ ବୋଲି କହନ୍ତି ଘୋଷେ ଗୋପାଳ ସମୂହ ସେ । ଶ୍ରୀରାମ । ॥ ୧୩୮ ॥

ଶିଖରଣି ଚଂପା ଖଣ୍ଡ ନବନୀତ ଲଡୁ ମୋଦକ ଛାଳ ମୁଆଁ । ପୁଣି ନବାତ ସଙ୍ଗେ ମୁଗଧୁଆ । ଇକ୍ଷୁ ସଇଡ଼ା ପାଧୁଡ଼ା ପୁଣି ଛେନା ଖରଜା ଖଣ୍ଡ ନଡ଼ିଆ ସେ । ଏମନ୍ତେ । ସର୍ବେ ଦେଖନ୍ତି ତୋଷେ ପଦ୍ମମୁଖ । ଆଜ୍ଞା ଦେଲେ ବନ୍ଧୁକୁ ତୁମ୍ଭେ ଦେଖ । କି ଆଣିଛ ତୁମ୍ଭେ ବୋଲନ୍ତେ କହାଇ ମୁ ଆଣିଛି ମାଣ୍ଡୁ ଶ୍ରୀକ ଦେ । ମୋହନ । ॥ ୧୩୯ ।

ଅଗ ହୋଇ ପତ୍ର ପାଡ଼ିଣ ବସିଲେ ହସନ୍ତି କୃଷ୍ଣ ଚାହିଁ ଗୃହିଁ । ବସି ମଣ୍ଡଳ ପାଣି ପତ୍ର ଦେଇ । ପରସନ୍ତି ଅତି ଆନନ୍ଦ ମାନସେ ହୋଇଣ ସୁବଳ ଚହିଁ ସେ । ମେଳାଳେ । ମଧ୍ୟେ ବସି ଭୁଞ୍ଜନ୍ତି ବେନି ଭାଇ । ଯେତେ ପରଶିଲେ ସେ ନ ସରଇ । ସୁସ୍ୱାଦ ଫଳ ବନ କନ୍ଦମୂଳକୁ ଠୁଳ କରିଥିଲେ ଚହିଁ ସେ । ଗୋପାଳେ । ॥ ୧୪୦ ॥

ଭୁଞ୍ଜି ସକଳେ ହରଷେ କୃଷ୍ଣ ସଙ୍ଗେ ସୁବଳ ବସି ଯେ ଭୁଞ୍ଜିଲେ । ବାସ ଜଳରେ ଆଚମନ କଲେ । ମୁଖ ବାସ ସାର କୋମଳ ପଲ୍ଲବ ଶେଯେ କୃଷ୍ଣ ପହୁଡ଼ିଲେ ସେ । ହରଷେ । ବସ୍ତ୍ରେ ବାସେ କେ ପାଶେ ବସିକରି । କେହୁ ଗୋପାଳ ପାଦ ସେବା କରି । ପାଶେ ବସି ରାମକୃଷ୍ଣ ଅଙ୍ଗ ଆଉଂସନ୍ତି ତୋଷରେ ସେ । ଯଶୋଦେ । । ୧୪୧ ।

ସୁରଭି ସବୁ ନିତି ଅସି କୃଷ୍ଣଙ୍କ ନିଜ ପାଶରେ ବେଢ଼ି ଯୋଇ । ନିରାଖନ୍ତେ ଦେଖୁଥିବୁ ରହି । କେ କହିବ ତୁମ୍ଭ ପୁତ୍ରର ମହିମା ଜଗତେ ସମାନ ନାହିଁ ଗୋ । ଯଶୋଦେ । ବନେ ଦୁର୍ଦିନେ ଯହିଁ ଗଲେ ପୂଜା । ରାଜା ଆଗ୍ରଧନେ ସେପରି ପରଜା । ସାକ୍ଷାତ ବସ୍ତୁ କି ହେଲେ କର ଛନ୍ତି ରେଖି ଅନନ୍ତ ଶଯ୍ୟା ଗୋ । ଯଶୋଦେ । ୨୪୨ ।

ଗୋପୀଙ୍କ ବାଣୀ ଯଶୋଦା ଶୁଣି ଅତି ଆନନ୍ଦ ଭରେ ଷ୍ଟବେ ସ୍ତନ । ଓଷ୍ଠ ଧରି ପୁଛନ୍ତି ପୁଣ ପୁଣ । ଲୁଚ ଯାଇ ଆଉ କେ କ୍ଷୀର ଶୁଣିଛ କହ ମୋହରେ ବହନ ଗୋ । ବାମାଏ । ପୁଣି କେଉଁ ଗୋପୀ କହେ ଏସନ । ବଳ ବାନ୍ଧବା ତୁମ୍ଭର ନନ୍ଦନ । ଗୋପ ସୁତ ମେଳେ ତାରାଗଣ ମଧ୍ୟେ ସମ୍ପୂର୍ଣ୍ଣ ଚନ୍ଦ୍ର ସମାନ ଗୋ । ଯଶୋଦେ । ୨୪୩ ।

ଶ୍ରୀକୃଷ୍ଣଙ୍କ ହୃଦସ୍ଥରେ ଶୋଭିବନ୍ତ ନବ ପଲ୍ଲବ ଫୁଲମାଳ । ଭୋଳ ଗୁଞ୍ଜି ଯେମନ ବ୍ରଜବାଳ । କାରଂଶ କଙ୍କଣ ଅଙ୍ଗରେ ବସନ୍ତ ମାଷ୍ଟ ଅଛିହିଁ ମଞ୍ଜୁଳ ସେ । ଏମନ୍ତ । ରଙ୍ଗ ଜାମ ଡାଳରେ ପୃଷ୍ଠ ଗୁଚ୍ଛ । ଘଣ୍ଟି ଘାଗୁଡ଼ି ଆଗ ପଚ୍ଛ କାଛ । ଥୋପି ଥୋପିରେ ଫୁଲ ଗୋଷ୍ଠ ଗୋଷ୍ଠରେ ଗୁଞ୍ଜମାଳ ଅତି ସ୍ୱଚ୍ଛ ସେ । ଶୋଭନ୍ତ । ୨୪୪ ।

କର୍ଣ୍ଣେ କର୍ଣ୍ଣିକାର ଶିରେ ଚୂଳ ନଟବର ବେଶରେ ବନମାଳ । ରଙ୍ଗେ ନାଚ ଗାଇ ବଜାଇ ତାଳ । ନୀଳମଣିକି ବେଢ଼ି ସବୁ ଗୋପାଳେ ଆପଣେ ଆନନ୍ଦେ ମିଳି ସେ । ଗୋପାଳେ । ମେଳ କରି ସୁରଭିଙ୍କି ଅଡାଇ । ବନ ଜୀବେ ପଛେ ଲେଉଟେ ଗୋଡାଇ । ଗୁଳନ୍ଦ ଯୁବତୀ ପଥରେ ଉଗାଳ ଦେଖନ୍ତି ଆନନ୍ଦେ ରହି ଗୋ । ଯଶୋଦେ । ୨୪୫ ।

ଅନନ୍ତର ବନଚର କୃଷ୍ଣ ପଛେ ପାଶେଟ ଅସନ୍ତ ସଙ୍ଗରେ । କୋଟି ମଦନ ମୂର୍ତ୍ତି ସେ ଗୋ ସତେ । ଧନ୍ୟ ଧନ୍ୟ ମାଏ ତୁମ୍ଭର ଉଦର ନାହିଁ ସମାନ ଜଗତେ ଗୋ । ଯଶୋଦେ । ଅମ୍ଭେମାନେତ ନପାରୁ ପାସୋର । ତୁମ୍ଭେ ଅଟତ ତାଙ୍କ ଗର୍ଭଧାର । ନଦେଖି ପ୍ରାଣ ରହିଛୁ ଯାହା ଚନ୍ଦ୍ର ମଣ୍ଡଳୁ ଗୋପ ନାଗରୀ ଗୋ । ଯଶୋଦେ । ।୧୮୬।

ଯଶୋଦା ବୋଲନ୍ତି ତାହାର ବଚନେ ହସି ପାଇ ମୁସେ ଗଞ୍ଜଣା । କେତେ ବେଳକୁ ହୋଇବେ ମାର୍ଜ୍ଜଣା । ଗୋରୁ ଗୋପାଳତ ପଥେ ନଦିଶନ୍ତି ଅଥବା ହୋଇଲେ ବଣା ଗୋ । ବାମାଏ । ଏସମୟେ ସନ୍ଧ୍ୟା ହେଲା ପ୍ରବେଶ । ଦିନ ଶେଷ ରବ ତାପ ନାରଧ । ହିଙ୍ଗୋ ବେଣୁ ଧ୍ୱନି ବଜାଇ ଗୋବିନ୍ଦ ଅସନ୍ତି ହୋଇ ହରଷ ସେ । ସେକାଳେ । ।୧୮୭।

ଅଗେ ପଛେ ଧେନୁ ଚଳାଇ ଗୋପାଳ ପୁଅଙ୍କୁ ଘେନିଣ ସଙ୍ଗରେ । ଧ୍ୱନି ଶୁଣି ସବୁ ଗୋପୀ ବେଗରେ । ଉତ୍ସୁକ୍ତ ହୋଇ ଥାଇଁଲେ ମୁରଲୀ ନାଦ ସଙ୍ଗେ ତରଙ୍ଗରେ ସେ । ସମୟେ । ଏକ ଏକରେ ମୁରଲୀ ଶୁଣାଇ । ପୁଣି ସଙ୍କେତ ମାନଙ୍କୁ ଜଣାଇ । କେଉଁ ଗୋପୀଙ୍କି ବୋଲନ୍ତି ଆଜ ହଣି ତୁମ୍ଭ ପୁରେ ରହିବ ମୁହିଁ ରେ । ସଜନୀ । ।୧୮୮।

କାହାକୁ କଦମ୍ବ ମୂଳକୁ ସଙ୍କେତ କାହାକୁ ଯମୁନା କୂଳରେ । ପୁଣି କାହାକୁ କହି ଏକାନ୍ତରେ । କାଲି ବନ ବୁଲି ଦୁଃଖୀ ହୋଇଅଛୁ ଆଜ ରହିବ ତୋର ପୁରରେ । ସଜନୀ । କାହାକୁ ବୋଲନ୍ତି ତୁ ଯାଅ କୁଞ୍ଜ । ଯତ୍ନେ ସେଜାଇଥିବୁ ପୁଷ୍ପ ସେଜ । କାହାକୁ ବନପ୍ରେ କହନ୍ତି ଶ୍ରୀହରି ସଦନେ ମିଳବ ଆଜ ରେ । ସଜନୀ । ।୧୮୯।

ତାହାଙ୍କୁ ସଙ୍କେତ କହ ଗତ ସ୍ତ୍ରୀନ ପାନ୍ତ୍ର ପଢ଼ି ଶ୍ରେଣୀ
ପ୍ରମାଣ ; କଣ୍ଠ ତାହାଙ୍କୁ ପୂଜନ କାରନ । ତାହାଙ୍କୁ ତଉଷ୍ଟ
ସ୍ପର୍ଶରେ ତାହାଙ୍କୁ ଶ୍ରୀକୁଞ୍ଜ ସମୀପ ବନ ଯେ । ଏମନ୍ତ । ସବେ
ସଙ୍କେତ ଯେଝାମତେ ପାଇ । ତନୁ ପୁଲକେ ଉର ଉଲ୍ଲାଇ ।
ଏମନ୍ତେ ହରି ମନ୍ଦିରେ ପରବେଶ ତାତ ମାତ ସୁଖ ବଢ଼ି
ଯେ । କୋକନେ । ॥ ୧୫୦ ॥

ଜନନୀ ସ୍ନାନ ପ୍ରବେଶ ସାଉ ଷଡ ରସରେ ଭୋଜନ
କରାଇ । ତଥା ରଜନୀ ଦ୍ରବ୍ୟମାନ ଦେଇ । ଭୋଜନ ଅନ୍ତେ
ତାମ୍ବୂଳ ଭୁଞ୍ଜି କୃଷ୍ଣ ପଲଙ୍କେ ଶୟନ ଯାଇ ଯେ । ମୋହନ ।
ହେଲେ ଯେଝା ସଙ୍କେତରେ ମିଳନ । ଲଭ କୃଷ୍ଣଙ୍କୁ ଗୋପୀ
ତୋଷ ମନ । ତାହାର ବିହାର କେହି ନଜାଣନ୍ତି ନାନା
ବକ୍ରେ ଲୀଳାମାନ ଯେ । ହରଷେ । ॥ ୧୫୧ ॥

ଏରୂପେ ଗୋପେ ଗୋବିନ୍ଦ ଲୀଳା ଶୁଣି ସୁଜନେ ମାନସରେ
ଧର । ଭାଗବତ ସିଦ୍ଧାନ୍ତ ସାରାସାର । ସାର ରସ ବୋଲି
ଏ ବ୍ରଜ ବିହାର କଲ୍ପ ଜଗତେ ପ୍ରଗଟ ହେ । ସୁଜନେ ।
ନଳ କୁବେର ବନ୍ଦନ୍ତି ନାରଦ । ଏହା ଉତ୍ତାରୁ ଶୁଣ କେଶୀ
ବଧ । ଯେଉଁ ଶ୍ରୀକୃଷ୍ଣ ମହିମା ନଜାଣନ୍ତି ବ୍ରହ୍ମା ଶିବ ସୁର
ସିଦ୍ଧ ଯେ । ସୁଜନେ । ॥ ୧୫୨ ॥

କଂସ ପାଞ୍ଜାନ ଏ ଗୋପ ନଗରକୁ ଆସିବା କୁହର
ଘ୍ରାଜନ । ଯେଉଁ ମହା ମଲ୍ଲଙ୍କର ମରଣ । ଅତି ଉନ୍ମାଦର
ହୋଇ ସେ କେଶୀଙ୍କି ପେଶିଲା ପୂର୍ଣ୍ଣ ବନ୍ଧନ ସେ । ରାଜନ ।
ଛଳ ଧର ଆସଇ ମହା ବୀର । ଯୋଗେ ପ୍ରବେଶିଲା ବୃନ୍ଦା-
ବନର । ଅଶ୍ୱ ରୂପରେ ହ୍ରେଷା ରବେ କ୍ରୋଧରେ ଅବନୀରେ
ମାରେ ଖୁର ଯେ । ରାକ୍ଷସ । ॥ ୧୫୩ ॥

ଜଳ ମେଘ ପ୍ରାଏ ଶରୀର ଭ୍ରୁଏ ଉପୁଜି ଧ୍ୱଜ ବେଷ ବାଏ । ପୁଚ୍ଛ ଗୃଳନେ ଗିରି ଉଡ଼ି ଯାଏ । ଚକ୍ର ଗତି ଭୂମି ହୁଅଇ ଅଭାସେ ଦେଖି ଦେବେ କଲେ ଭୟେ ସେ । ସେକାଳେ । ଧୂଳ ଉଚ୍ଛୁଳ ନ ଦିଶଇ ଦିଶ । ଗୋପଜନେ ଅତି ଭୟ ମାନସ । ଅତି ଉତୁଙ୍ଗ ଶରୀର ଲୋକଜନରେ ଧରଣୀ ହୁଅଇ ନାଶ ସେ । ଏମନ୍ତ ॥୨୫୪ ॥

ଘୋର ଗର୍ଜନ ନାଦେ ମହୀ କମ୍ପଇ ଲୋକେ ପଳାନ୍ତି ଭୟ କରି । ବୀର ଅସଇ ପାଟିକ ବସ୍ତାରି । ଗ୍ରାମ କୃଷ୍ଣେ ପଶି ଶରଣ ଗୋପାଳେ ବୋଲନ୍ତି ହୁଙ୍କାର ହରି ସେ । ସମସ୍ତେ । କୃଷ୍ଣ ଗୋପାଳଙ୍କର ଆରତରେ । ଅଗ ହେଲେ ତାଙ୍କୁ ରଖି ପଛରେ । ବାହୁ କରେ ମାରି ବୋଇଲେ ମୋ ସଙ୍ଗେ ଯୁଦ୍ଧ କର ଅଛି ବାରେ ରେ । ଘୋଷଣ । ॥ ୨୫୫ ॥

ଅଶ୍ୱ ରୂପ ଧରି ଲୋକଙ୍କୁ ଡ଼ାକୁଡ଼ି ବଦନ କରଣ ପ୍ରସାର । ନର ବାହ୍ନନ ଏତେ ବଳ ତୋର । ଷଣ୍ଢାସୁର ସଙ୍ଗେ ଆଜ ରୁ ଭେଟିବୁ ଶୁଣି କେଶୀ କ୍ରୋଧଭର ସେ । ଧାଇଁଲା । କୃଷ୍ଣ ଅଙ୍ଗେ ମାଇଁଲା ନେଇ ଲାତ । ଦେହେ ନବାକୁ ଧରି ଗୋପୀନାଥ । ଚକ୍ରପ୍ରାଏ ବୁଲାଅନ୍ତେ କେଶୀ ମୂର୍ଚ୍ଛି ରୁଧିର ହୋଏ ସଂଜାତ ସେ । ସେକାଳେ । ॥ ୨୫୬ ॥

ବକ୍ତ୍ରି ହୋଇଣ ରୁଧିର କଂସରାଜା ଅସ୍ତାନେ ପଡ଼ିଲାକ ଯାଇ । ଭୟ କରି କଂସ ଉଠି ପଳାଇ । ଗୋକୁଳ ଲୋକେ ରୁଧିର ପଡ଼ନ୍ତେଣ ଅତିହିଁ ଚମ୍ଭ ହୋଇ ସେ । ସମସ୍ତେ । ହରି ବୁଲାଇ ଫିଙ୍ଗିଦେଲେ କେଶୀ । ମଥୁରା ଭଡାରେ ପଡ଼ିଲାକ ଆସ । ଗରୁଡ଼ ଯେସନେ ସର୍ପକୁ ଫିଙ୍ଗନ୍ତେ ଛୁଟଲେ ରହେ ପଳାଇ ସେ । ଘୋଷଣ । [ ୨୫୭ ]

ଯାଇଁଲା ପୁଣି ମହାବଳୀ ଗିଳିବ ବୋଲି କରି ପାଟି ବିସ୍ତାର । ଦେଖି ତାର ତୁଣ୍ଡ ମହାଁ ଗହ୍ୱର । ପ୍ରବେଶ କଲେ ଭୁଜଦଣ୍ଡ ଦେଇଣ ହରି, ଅତିହିଁ ସତ୍ୱର ସେ । ଶ୍ରୀହରି । ଯେବେଛେ ବିବରେ ଅହି ପ୍ରବେଶଇ । ଲୋକେ ଗିଳିଲା ବୋଲି ଶୋକେ ଗୃହିଁ । ହା କୃଷ୍ଣ ବୋଲି ଧରଣୀ ଲୋଟି କେଶ ବାସ ଅସମ୍ଭାଳ ହୋଇ ସେ । ସମସ୍ତେ । ।୨୫୮।

ବେଦନ କରନ୍ତି କାହିଁ ଥିଲା ଏଡ଼େ କାଳ ବଦନ ଅସି ପୁଣି । ଅତି ମୃଦୁ ମଞ୍ଜୁଳ ପଦ୍ମପାଣି । ଗିଳିଲା ଗଜ ବଜ୍ରଲତା ପରାୟେ ବୋଲି ଲୋଟନ୍ତି ଧରଣୀ ସେ । ସମସ୍ତେ । କୃଷ୍ଣ ଗୋପାଳ ବଳଲେ ପ୍ରଚଣ୍ଡ । ତପ୍ତ ଲୋହ ପରାୟେ ଭୁଜଦଣ୍ଡ । ଦନ୍ତ ପନ୍ତି ସବୁ ଛିଡ଼ିଣ ରସନା ପଡ଼ି ହେଲା ଖଣ୍ଡ ଖଣ୍ଡ ସେ । ଦନୁଜ ! ।୨୫୯।

କଣ୍ଠ ରୁଦ୍ଧ ଶ୍ୱାସ ନଆସେ ଉଦର ଫୁଲି ନେତ୍ର ବେନି ଉଲ୍ଟି । ଅନ୍ତ ଭିତରେ ମନ୍ଥି ଭୁଜ ମୁଷ୍ଟି । ଜୀବନ ବଳଲେ ଝୁରି ମାରେ ଝୋଳ ବହେ ପ୍ରତି ଲୋମେ ଫୁଟି ସେ । ଦନୁଜ । ଫେରି ମୁଖ ଗୃହିଁ ପ୍ରାଣ ଛାଡ଼ିଲା । ଫୁଟି--କାକୁଡ଼ି ପରାୟେ ପଡ଼ିଲା । ପଞ୍ଚ ପ୍ରାଣ କୃଷ୍ଣ ଅଙ୍ଗେ ପଶି ପୂର୍ବ ଶାପରୁ ମୁକତ ହେଲା ସେ । ଦନୁଜ । ।୨୬୦।

କୃଷ୍ଣ ଭୁଜ କେଶୀ ମୁଖରୁ କାଢ଼ିଲେ ଦେବେ କୁସୁମ ବରଷିଲେ । ଶ୍ରୀନିଧି କେଶବ ନାମେ ଡାକ ଦେଲେ । ଅମୃତ ନଉଜି ଅଭିଷେକ କଲେ ଅତିହିଁ ଆନନ୍ଦ ହେଲେ ସେ । ସୁମନେ । ଗୋପୀ ଗୋପାଳ ସନ୍ନିଧେ ମିଳିଲେ । ବାସ ଜଳରେ ବାହୁ ପଖାଳିଲେ । କୃଷ୍ଣଙ୍କୁ ବେଢ଼ି ଆନନ୍ଦ ହୋଇ ଜଣଜଣଙ୍କେ ପ୍ରଶଂସା କଲେ ସେ । ଗୋପାଳେ ।୨୬୧।

କୃଷ୍ଣ ବାମ ଭୂଜ ଧରଣ ଗୋପାଳେ ସ୍ନେହେ ଅନ୍ତଃପୁର ମଧ୍ୟରେ । ଯେନ କୃଷ୍ଣଙ୍କୁ ରତ୍ନ ସିଂହାସନରେ । ଶୁଭରେ ବସନ୍ତେ ମିଳନ୍ତେ ଯଶୋଦା ଦେଖି ଅତି ସ୍ନେହ କରେ ଯେ । ହରଷେ । ସ୍ନାନ ପ୍ରବେଶ ଭୋଜନ କରାଇ । ପୁଣି ତାମ୍ବୂଳ ଭୋଜନ କରାଇ । ହଂସତୁଳ ଶୁକ୍ଳ ପଲଙ୍କରେ ଶ୍ରୀହରି ତୋଷେ ପହୁଡ଼ିଲେ ଯାଇ ଯେ । ମୋହନ । ॥ ୨୬୨ ॥

ଏମନ୍ତରେ ଶୁଣି ଯାମ ଅନ୍ତେ କୃଷ୍ଣ ଅଣାଇଁ ସନ୍ନିଧିକୁ ଦୂତି । କେଶୀ ବିନାଶ ବାରତା କହନ୍ତି । ସଙ୍କେତ କୁଞ୍ଜେ ରାଧାଙ୍କୁ ଯେନ ଆସ ବୋଲି କୃଷ୍ଣ ଆଜ୍ଞା ଦେନ୍ତି ଯେ । ଦୂତିକି । କୃଷ୍ଣ ସନ୍ଦେଶ ଯେନ ଚଳେ ଦୂତି । ହେଲା ପ୍ରବେଶ ଶ୍ରୀମତୀଙ୍କ ଛତି । କେଶୀ ବଧ ବାର୍ତ୍ତା କହନ୍ତେ ଶ୍ରୀଅଙ୍ଗୁ ଭୂଷଣ ଦେଲେ ଫିଟି ଯେ । ଶ୍ରୀମତୀ । ॥ ୨୬୩ ॥

ସଙ୍କେତ କୁଞ୍ଜକୁ ଡକେଇଛନ୍ତି ବୋଲି କହିଲାକ ଦୂତି ଏସନ । ଶୁଣି ଶ୍ରୀମତୀ ଉଦବେଗ ମନ । ସୁବେଶ ହୋଇଣ ଅତିହି ହରଷ ମନେ କଲେକ ଗମନ ଯେ । ଶ୍ରୀମତୀ । ସଖୀଗଣ ସଙ୍ଗେ ହେଲେ ପ୍ରବେଶ । ଦେଖି କୃଷ୍ଣଙ୍କୁ ମନ୍ଦମନ୍ଦ ହାସ । ଅଲିଙ୍ଗନ କରି ଶ୍ରୀକୃଷ୍ଣ ସ୍ନେହରେ ବସନ୍ତି ପୁଣି ଏ ରସ ଯେ । ମୋହନ । ॥ ୨୬୪ ॥

କର୍ପୂର ଚନ୍ଦନ ସୁଖକୁ ନହୁଇ ଶ୍ରୀମ୍ବର ଅଙ୍ଗ ସଙ୍ଗ ବିନୁ । ଅତି ଶୀତଳ ଯେଣୀ ଶ୍ରମ ଗନ୍ଧ । ନବ ନବ ଶ୍ରମ ପୀରତି ପାସୋର ନଯାଇ ମୋହର ମନୁରେ । ସୁନ୍ଦରୀ । ନାନା ମତ ଲୀଳାର ବିଧାନରେ । ଦୋଳା ମଙ୍ଗଳ କୁଞ୍ଜର ଯାନରେ । ମନୋରଥ ଆଜି ରଥ ଲୀଳା ଆଶେ ପୂର୍ଣ୍ଣ କର ମୋର ମନରେ । ସୁନ୍ଦରୀ । ॥ ୨୬୫ ॥

ଶୁଣି ସ୍ଥିଥା ବୃନ୍ଦା ମୁଖ ଚାହିଁ ଅଜ୍ଞା ଦେଲେ ହର କୃଷ୍ଣ ବଚନ । ବୃନ୍ଦା ଜାଣି ହୋଇଲେକ ମଉନ । ନେତ୍ର ଲୋଚକ ପୂର୍ଣ୍ଣରେ ବୃନ୍ଦାବନ୍ତ ରହିଲେ ପୋତି ବଦନ ସେ । ଏମନ୍ତ । ହୃଦ ଚଞ୍ଚଳ ମାନସ ହରଷେ । ଜାଣି ଶ୍ରୀକୃଷ୍ଣ ବୃନ୍ଦାଙ୍କୁ ଚାହିଁଲେ । ମୋହନ ବଂଶୀ କରେ ଦେଇ ବୃନ୍ଦାଙ୍କୁ ଏମନ୍ତ ବାଣୀ କହିଲେ ସେ । ମୋହନ । ॥ ୨୬୬ ॥

ବଂଶୀ ଶ୍ରବଣେ ସକଳ ଦ୍ରବ ହୋନ୍ତି ଅଙ୍ଗ ନାଶ ତାଙ୍କ କେମନ୍ତ । ହେବ ବୋଲି ଚନ୍ତାର୍ଥୀ ତୁମ୍ଭ ଚଉ । ବଂଶୀକ ତୁମ୍ଭେ ରଖିଥାଅ ଅଙ୍ଗନାର ଅଙ୍ଗ କର ରଞ୍ଜିତ ଗୋ । ସୁମୁଖୀ । ସ୍ୱଧେ ତୁମ୍ଭେ ବୃନ୍ଦାଙ୍କୁ ଦିଅ ଅଜ୍ଞା । ଯେଉଁ ରୂପେ ନକରିବେ ଅବଜ୍ଞା । ଶ୍ରୀମନ୍ତ ନେତ୍ରାନ୍ତେ କହନ୍ତେ ସେ ବୃନ୍ଦାବନ୍ତ କଲେ ଶୀଘ୍ରେ ଅଜ୍ଞା ସେ । ପଞ୍ଚରେ ॥ ୨୬୭ ॥

ନାନା ନୃତ୍ୟ ରସେ ସରଧାଇଛନ୍ତି ଶ୍ରୀକୃଷ୍ଣ ଅଙ୍ଗ ସଙ୍ଗ ପାଇ । ରଙ୍ଗେ ଅଙ୍ଗନା ଚକ୍ର ପରି ହୋଇ । ପାଦ ଅଙ୍ଗୁଳି ଧରି ଚକ୍ର ପରାଏ ରହିଲେ ଚଉସଠି ଚହିଁ ସେ । ଏମନ୍ତେ । ଶୋଳ ହାଳ ଅଶ ବଳେ ରହିଲେ । ଶୋଳ ନାୟିକା ସ୍ତମ୍ଭ ପରି ହେଲେ । ପୀଠ ପଦ୍ମ ପୁଷ୍ପ ଆସନ ପ୍ରସ୍ଥରେ ଶୋଳ ଯୁବତୀ ରହିଲେ ସେ । ଏମନ୍ତେ । ॥ ୨୬୮ ॥

ଚଉଦ୍ୱାରେ ତୋରଣ ପ୍ରସ୍ଥ ମଣ୍ଡରେ ଯେ ଅଷ୍ଟ ନାୟିକା ପୁଣି ରହି । ତିନି ଅନ୍ତରେ ଗୃହ ଗୃହ ହୋଇ । ପଞ୍ଚକ କଳଶରେ ଅଷ୍ଟ ନାୟିକା ଏମନ୍ତେ ଶୋଭାଙ୍ଗ ହବି ସେ । ଯତନେ । କେଶ ପତାକା କୁସୁମ ଭୂଷଣେ । ପତ୍ରି ପାଗୁଡ଼ି କିଙ୍କିଣୀ ଘୋଷଣେ । ଘଗ ବସ୍ତ୍ରେ ବିଶ୍ୱକର୍ମା ନପାରି ହାରସିବ ସେ ନିର୍ମାଣେ ସେ । ଏମନ୍ତେ । ॥ ୨୬୯ ॥

ରତିପତି ମନୋରଥ ପାଇ ହୃଦ ବୃନ୍ଦାବନ୍ତଙ୍କୁ ପ୍ରଶଂସିଲେ । ନାନା ମୋତି ମୟୂରଚୂଳ ଦେଲେ । କୃଷ୍ଣ ପ୍ରସାଦ ପାଇଣ ବୃନ୍ଦାଦେବୀ ଅତିହିଁ ଆନନ୍ଦ ହେଲେ ଯେ । ସମସ୍ତେ । ମକର ଧ୍ୱଜ ରଥବର ନାମ । ମୀନକେତନ ବାନା ଅନୁପମ । ଯହିଁ ମନ କଲେ ତହିଁ ପ୍ରବେଶଇ ହୋଇ ଅତି ମନୋରମ ଯେ । ଶଧାଙ୍ଗ । ॥ ୨୭୦ ॥

ରଥ ମଦନସାରଥି ବାନ୍ଧେ ବୃନ୍ଦାବନଚନ୍ଦ୍ର ରଥୀ ତହିଁରେ । ଧର ଉରଜ ଚକ୍ର ବଜ୍ର କରେ । ପୀତବାସ ବସନ ପୁଷ୍ପ ଚୂଳ ମୁକୁଟ ମାନ ଅତି ଶୋଭାକର ଯେ । ମୋହନ । ହେମ ଝଗ୍ରିଷ୍ଟ ବଦନ ମଣ୍ଡଳ । ଗଣ୍ଡେ ମଣ୍ଡିତ ମକର କୁଣ୍ଡଳ । ଉରେ କଉସ୍ତୁଭ ନିର୍ମଳ ଆକାରେ ଅଦିତ୍ୟ ପ୍ରାୟେ ମଣ୍ଡଳ ଯେ । ଶୋଭିତ । ॥ ୨୭୧ ॥

ବାନ୍ଧେ ବାହୁଟିକଙ୍କଣ କରେ ଶୋଭେ ଅଙ୍ଗୁଷ୍ଠେ ରତ୍ନ ମୁଦି ଗଣ । କଟି ମେଖଳାରେ ଅତି ଯତନ । ଚରଣେ ବୀର ତୋଡର ବାନ୍ଧେ ଉଡ଼େ ବୀର କେତ ବାନା ପୁଣ ଯେ । ମୋହନ । କାନ୍ତ ଅଙ୍ଗ ଜୈଧାରି ନେତ୍ର ଦଯନ । ଅତି ଶୋଭିତ ଭୂରୁ ଶରାସନ । ମରମ ଭେଦ କୃତ ପୁଣି କଟାକ୍ଷ ବାଣ ଅତିହିଁ ଚଞ୍ଜନଗେ । ମୋହନ । ॥ ୨୭୨ ॥

ଅଦ୍ଭୁତ କନ୍ଦର୍ପ ଏ ରଥେ ବିଜୟେ ପ୍ରିୟବନ୍ତି ମତି ମୋହନେ । ନୃପ ପ୍ରାୟେ ଶୋଭିତ ବୃନ୍ଦାବନେ । ଟବେଥ ବିନୋଦ ରସ ଜାଣିତ କନ୍ୟା ପ୍ରାୟ ରହିଁ ରାଧା ମନେ ଯେ । ବଗ୍ରହ । ରଥୁ ଓହ୍ଲାଇ କାନ୍ତଙ୍କୁ ଜଣାଇ । ନାଥ କନ୍ୟାଏ ବସ୍ତୁ ପ୍ରାପ ପାଇ । କନ୍ୟାଙ୍କୁ ରହିଁ ବୋଲନ୍ତ ମାଗ ମାଗ ଭୁମ୍ଭ ଅନୁରାଗ ଯହିଁ ଗୋ । ବାମାଏ । ॥ ୨୭୩ ॥

ଲଳିତା ବୋଲନ୍ତି କି ମାଗିବୁ ଆମ୍ଭରେ ସର୍ବଦା ଅନୁଗ୍ରହ ଥାଉ । କୃଷ୍ଣ ବିଚ୍ଛେଦ କଷ୍ଟେ କଷ୍ଟ ସହୁ । ଶୁଣିମା ହେଉ ଠାକୁରାଣୀ ତୁମ୍ଭର ବିଚ୍ଛେଦ କ୍ଷଣେ ନ ସହୁ ଗୋ । ହେ ଦେବୀ । ପଦ ଧୂଳି ସର୍ବଦା ଥିବୁ ଧରି । ଦିଅ ଏ ବର ବୃନ୍ଦାବନେଶ୍ୱରୀ । ହସି ଗୃହିଁ ହେଉ ବୋଲନ୍ତେ ରଥରୁ ଓହ୍ଲାଇ ମିଳିଲେ ହରି ସେ । ସେଠାରେ । ॥ ୧୭୪ ॥

ରଥ ଚକ୍ର ଫିଟି ରାଧାକୃଷ୍ଣ ପାଦେ ଓଳଗି ବଢ଼ି ଅନୁରାଗ । ଏହିମତେ ହେଲେ ସେ ନାନା ରଙ୍ଗ । ଖଟେ ଶୟନ କରନ୍ତେ ସର୍ବସଖୀ ଅନ୍ତର ହୋଇଲେ ବେଗ ସେ । ସମସ୍ତେ । ଯୋଗ ମାୟା ନିଦ୍ରା ଯାରେ ଜୟନ । କୃଷ୍ଣ କୋଳରେ ନିଦ୍ରିତେ ଶୟନ । ଅଚେତେ ପିଠିକର ରାଧା ଶୟନେ ନିଶା ହେଲା ଅବସାନ ସେ । ସମସ୍ତେ । ॥ ୧୭୫ ॥

ନିଦ୍ରାରେ ରାଧା ସ୍ୱପନ ଦେଖି କୃଷ୍ଣ ବିଚ୍ଛେଦେ କରନ୍ତି ରୋଦନ । କୋଳ ଶୂନ୍ୟ ନଦେଖି ମୋହନ । ଯତ ପ୍ରାଣେ ମୁହିଁ ରୋଦନ କରନ୍ତି ଛାଡ଼ିଗଲ ଶ୍ୟାମଘନ ହେ । ମୋହନ । ନାଥ ଏତେକ ପୀରତି ବଢ଼ାଇ । ଏକାବେଳେ ଦେଲ ଛାଡ଼ି ଏଡ଼ାଇ । ଛାଡ଼ିଗଲ ମୋତେ ଏକା କରି ଏବେ କେଉଁ ଅପରାଧ ଗୃହିଁ ହେ । ମୋହନ । ॥ ୧୭୬ ॥

ଏ ମଦନ ତାପୁଁ ଉଦ୍ଧର ଦର୍ଶନ ଦିଅ ପୂର୍ଣ୍ଣ ଚନ୍ଦ୍ରବଦନ । ଧରିପାରିବି କେମନ୍ତ ଜୀବନ । ତୁମ୍ଭ ଅଧରୁ ସୁଧା ଦେଇ ଏ ମୋର ପରାଣ ରଖ ବହନ ହେ । ମୋହନ । ତୁମ୍ଭ ଆଲିଙ୍ଗନ ବିନୁ ମୋ ଅଙ୍ଗ । ଅନୁକ୍ଷଣରେ ଦହିବ ଅନଙ୍ଗ । ଆକୁଳ ନେତ୍ର ମୋ ହୋଏ ଏବେ ମୋତେ ଦର୍ଶନ ଦିଅ ଶ୍ରୀ ରଙ୍ଗ ହେ । ମୋହନ । ॥ ୧୭୭ ॥

ଏମନ୍ତ ରୋଦନ ଶୁଣି ସଖୀଗଣ ସଭ୍ଭରେ ଅସିଣ ମିଳଲେ । କୃଷ୍ଣ କୋଳେ ଧରିଛନ୍ତି ଦେଖିଲେ । ବୋଲନ୍ତି ସଜନୀ ବନ୍ଧୁକ ହୋଇଲୁ ଦେଖ ଅଛୁ କୃଷ୍ଣ କୋଳେ ଗୋ । ସଜନୀ । କଅର୍ଥରେ ଉଛାରୁ ଶୋକ ବାଣୀ । ଦେଖି ସ୍ୱପନ ସତ ପ୍ରାଏ ମଣି ସଖୀ ବଚନେ ରେଖି ଗୃହେଁ ଶ୍ରୀକୃଷ୍ଣ ବଦନ ରମଣୀ ମଣି ସେ । ଗୃହିଁଲେ । ॥ ୨୭୮ ॥

ଲଜ୍ଜାବରେ କହ ନବହି ମଉନ ମାନିନୀ ପ୍ରେମବରେ ପୁନଃ । ପ୍ରିୟ ମାନ ଦେଖି ଚନ୍ଦ୍ରଲୋଚନ । ଗଦଗଦେ ଅତି ବଳସ୍ୱ ମତିରେ କହନ୍ତି ଗୃହି ବଚନସେ । ମୋହନ ॥ ପିବ ବରନୀ ଧଁରି ମଉନ । କବା ନଦ୍ରାରେ ଦେଖିଲ ସ୍ୱପନ । ମଧ୍ୟେ ଅନ୍ତର ହୋଇବ ବୋଲି ଦୂର କରଇ · ବାସ ଚନ୍ଦନ ରେ । ସଜନୀ । ॥ ୨୭୯ ॥

କବଜରେ କଣ୍ଠି ଅଙ୍ଗେ ଅଙ୍ଗ ଏଥେ ବଚ୍ଛେଦ କାହୁଁ ହେଲ୍ଲ ଧନ । ବନା ଅପରାଧରେ ଦୁଃଖ ମନ । ସଦା ମୋ ହୃଦେ ରହ ବହି ସଦସ୍ୱ ସ୍ୱମୁଖୀ ହୁଅ ପ୍ରସନ୍ନରେ । ସଜନୀ । ତୋର ମୋର ସଖୀ ମନ ଏକଭୂ । ଏଥେ ବଚ୍ଛେଦ କାହୁଁ ହେଲ୍ଲ ମିଛ । ସେ ସଖୀ ଯୋଗେ ବଚ୍ଛେଦ ହେଲେ ଚନ୍ଦ୍ରା ନକଉବ ତୋର ଚତୁ ରେ । ସଜନୀ । ॥ ୨୮୦ ॥

କଥା ଛଡେ଼କେ ପ୍ରିୟଙ୍କୁ ବୋଧ ପୁଣପୁଣ ବଦନକୁ ଅନାଇଁ । ମଦବାଣ ପ୍ରକାଶ କର ରହିଁ । ଶ୍ରୀକୃଷ୍ଣ ବଦନ କଣ୍ଠହିଁ ପ୍ରେମବରେ କହି ନଯାଉନ୍ତି ଗୃହ ସେ । ସମସ୍ୱେ । ହେଲ୍ଲ ଏଅନ୍ତେ ଅରୁଣ ଉଦସ୍ୱ । କୁଞ୍ଜୁ ବାହାରଲେ ହୋଇ ସବସ୍ୱ । ଶ୍ରୀକୃଷ୍ଣ ପୁରେ ପ୍ରବେଶ ହେଲେ ରାଧାଙ୍କ ଘେନ ସଖୀଚସ୍ୱ ସେ । ଯେକାଳେ । ॥ ୨୮୧ ॥

ସ୍ୱପନ୍ନ ବଧାନ ସଖୀଙ୍କି କହନ୍ତେ ବୃନ୍ଦା ତେଜିଲେ ମାନସ-ରେ । କଥା ଭୁଲାଇ ପ୍ରକାଶ ନକରେ । ଏମନ୍ତେ ସଖୀଙ୍କ ସଙ୍ଗତେ ଶ୍ରୀମଣ୍ଡ ପ୍ରବେଶିଲେ ନାଜ ପୁରେ ସେ । ସେକାଳେ । ନାଥ୍ୟକୃତ୍ୟ କଲେକ ଗୀତି ମତେ । କହେ ନାରଦ ଧନପତି ସୁତେ । ସମ୍ପୂର୍ଣ୍ଣ ଏହିଠାରୁ ବ୍ରଜ ବିହାର କହିଲୁ ଭୁମ୍ଭ ଅଗ୍ରତେ ହେ । ଏମନ୍ତ । ॥ ୨୮୨ ॥

ପୂତନା ଅଦି କେଶୀ ଯାଏ ଶ୍ରୀରାମକୃଷ୍ଣ ନାଶିଲେ ଗୋପେ ଏତେ । ନର ଲୀଳାରେ ମୋହିତ ସମସ୍ତେ । ଯାଗଧ୍ୟ ଯୋଗ ବୀର ଯୋଗକୁ ଗୋକୁଳେ କଲେ କୃଷ୍ଣ ନାନାମତେ ହେ । ଏମନ୍ତ । ଶୂର ବୀର ଧୀର ଧାର୍ମିକ ଗୁଣେ । ମଦନମୋହନ ସୁନ୍ଦରପଣେ । ଏହି ମାନୁଷୀ କ୍ରୀଡ଼ାକୁ ଅତନ୍ତିଲେ ଶୁଣ ତୋଷେ ସାଧୁଗଣ ହେ । ଏମନ୍ତ । ॥ ୨୮୩ ॥

ନଳ କୁବେର ନାରଦଙ୍କୁ ପୁଚ୍ଛନ୍ତି ବନ୍ଦେ ଅଶ୍ରୁ ପୁଲକିତ । ବୃନ୍ଦା କପାଇଁ ହେଲେ ବରଜିତ । ମୁରଲୀ ଯେଜ ପୁଣ ସେ କାସ କଲେ ଯୋ ମୁନ କହ ଭୂତତ ହେ । ସଂକ୍ଷେପି । ରାଧା ବୃନ୍ଦାରେ କହିଲେ ସ୍ୱପନ । ନକହିତ ସେହି କଲେ ଗୋପନ । ତସ୍ୟାର କାରଣ କହିବା ଯୋମୁନ ସଂଶୟ କର ଛେଦନ ହେ । ମୋହନ । ॥ ୨୮୪ ॥

ମୁନ ବୋଲନ୍ତି ଶୁଣ ନଳକୁବର ବୃନ୍ଦାଙ୍କୁ କଲ୍ପ ଦରଶନ । ଯେଯେ କହିଲେ ଏସନ ବଧାନ । ବ୍ରଜ ମାନୁଷୀ ଲୀଳା ପୂର୍ଣ୍ଣ ହୋଇଲା ଶୁଣ ସ୍ଥିର କର ମନ ହେ । ଏମନ୍ତ । ଷଷ୍ଠ ମାସ ଏକାଦଶ ବରଷ । ନର ଲୀଳାକୁ କଲେକ ପ୍ରକାଶ । ଗୁପତ ପରକୀୟ ରସ ସମ୍ପୂର୍ଣ୍ଣ ଏଣିକ ସ୍ୱକୀୟ ରସହେ । ଅଗମ । ॥ ୨୮୫ ॥

ମଥୁରାରେ ତେର ବରଷ ଛମାସ ପଞ୍ଚିଶ ବରଷ ସମ୍ପୂର୍ଣ୍ଣ । ଶତେ ବରଷ ଦ୍ୱାରକା ଭୁବନ । ମାନୁଷୀ ଲୀଳା ବିହାର ଏଥେ ପୂର୍ଣ୍ଣତମ ପୂର୍ଣ୍ଣତର ପୂର୍ଣ୍ଣ ସେ । ଏମନ୍ତ । ଗୋକୁଳ ମଧୁପୁର ଦ୍ୱାରକାରେ । ଗୋପୀ କୁବ୍ଜା ପଟ୍ଟ ମହିଷୀରେ । ସମର୍ଥା ସାଧାରଣ ସାମଞ୍ଜସ୍ୟାରେ ହୋଇ ଅତି ଆନନ୍ଦରେ ସେ । ମୋହନ । ॥ ୧୮୬ ॥

ମଧୁର ନର ଦେହେ ଐଶ୍ୱର୍ଯ୍ୟ ଭିନ୍ନ ସ୍ଥାନରେ ଗୋବିନ୍ଦ ବିହାର । ଗୋପ କନ୍ୟା କୃଷ୍ଣ କଲେ ସଞ୍ଚାର । ଏବେ ତୁମ୍ଭ ମନୋରଥ ପୂର୍ଣ୍ଣ ହେଲା ଘରୁରେ ଗମନ କରହେ । ସ୍ୱେମୂନ । ଏମନ୍ତ ଶୁଣି ପୁଚ୍ଛିଲ୍ଲ ବୃନ୍ଦାଙ୍କୁ । କହିବା ହେଲା ତବ ବିଦ୍ୟାକୁ । ମଥୁରା ଲୀଳା ହେବ ବୋଲି କେମନ୍ତେ ଜାଣିଲ କହ ଆମ୍ଭଙ୍କୁ ଗୋ । ସ୍ୱୋଦେବୀ । ॥ ୧୮୭ ॥

ଶ୍ରୀବୃନ୍ଦାବନବାଚ ॥ ବନଦେବୀ କହେ କାଲି ଅଇଶ୍ୱର୍ଯ୍ୟ ଲୀଳାରେ କୃଷ୍ଣ କଲେ ମନ । ତୁମ୍ଭ ଆଗେ କହିଲି ଏ ଗୋପନ । ଘରୁରେ ଯାଇ ତୁମ୍ଭେ କଂସ ରାଜାକୁ ଉଚ୍ଚାଟ କର ବଦନ ହେ ସ୍ୱୋମ୍ନନ । ବନ ଦେବୀଙ୍କ ଆଜ୍ଞା ଘେନି ଚଳି । ଶତ୍ରୁନ ସ୍ତ୍ରୀଲେ କୃଷ୍ଣ ପାଶେ ମିଳି । ବହୁତ ରୂପେ ସ୍ତୁତି କଲି ପ୍ରସନ୍ନ ହେଲେ ମୋ ରେ ବନମାଳୀ ହେ । ସ୍ୱଜନେ । ॥ ୧୮୭ ॥

ବର୍ତ୍ତମାନ କଥା ଜଣାଇଲି ରାଧା ସ୍ୱପନେ ଦେଖିଥିଲେ ଯାହା । ଭବିଷ୍ୟତ୍ ରୂପେ କହିଲି ମୁ ଯାହା । ଧନୁ ଯାତ୍ରା କର ଅକ୍ରୂରକୁ କଂସ ପେଷୁଛି କହିବ ତାହାରେ । ମୋହନ । ବେନି ଭାଇ ରଥରେ ଯିବ ବସି । ଦ୍ୱାରେ କୁବଳୟ୍ୟ କର ବିନାଶି । ଚାଣୂର ମୁଷ୍ଟିକ ମଲ୍ଲଙ୍କୁ ମାରିବ ପୃଥିବୀ ଭାର ଉଦ୍ଧାରିବେ ହେ । ମୋହନ । ॥ ୧୮୯ ॥

ତୁମ୍ଭଙ୍କୁ ଦେଖି କଂସ ଅସ୍ଥାନ୍ ପଡ଼ି ଭେଟିବ ସେ ଜନ ଜୀବନ ।
ଯଦୁବଂଶ କରିଣ ସମାଧାନ । ଉଗ୍ରସେନଙ୍କୁ କରୁଣାହୃଦସ୍ୱରେ
କରିବ ତହିଁ ରାଜନନ୍ଦେ । ମୋହନ । ଏଥେ ସନ୍ତୋଷ
କଲ ଦୁଷ୍ଟ ନାଶି । ତହିଁ ଯେମନ୍ତ ଦେଖି ଦେବ ତୋଷି ।
ତହୁଁ ଦ୍ୱାରକାରେ ହୋଇବ ବିହାର ଯେ ଅଷ୍ଟ ପଟ୍ଟମହିଷୀ
ସେ । ମୋହନ । ॥ ୨୧୦ ॥

ଗୋଳ ସହସ୍ର ରାଜ କୁମାରୀଙ୍କି ଥିବ ନାରକାସୁର ଠୁଳ
କରି । ତାଙ୍କୁ ଆଣିବ ଭୌମାଙ୍କୁ ସଂହାରି । ତୁମ୍ଭର ଅନେକ
ହେବେ ପୁତ୍ର ନାତି ଜିଣିବ ସମସ୍ତ ପୁରୀ ହେ । ମୋହନ । ଦନ୍ତ
ବକ୍ର ସାଲ୍ୱ ଶିଶୁପାଳଙ୍କୁ । ରାଜା ମାରି ତାରି ମହିପାଳଙ୍କୁ ।
ଅବନୀ ସ୍ଥିର କରିବ ମୁହିଁ ଏବେ କହୁଛି ଯାଇ କଂସକୁ ହେ ।
ମୋହନ । ॥ ୨୧୧ ॥

ମଥୁରାପୁରେ ସମ୍ମତି ଜାଣି ଏତେ ଜଣାଇ ମେଲାଣି
ହୋଇଲୁ । କଂସ ଭୂପଙ୍କେ ଏକାନ୍ତେ ମିଳିଲୁ । ବିଶ୍ୱାସ କରି
ସମସ୍ତ ରୀତି ତାଙ୍କୁ ଯତନ କରି କହିଲୁ ହେ । ସୁମନ ।
ଅଚଳା ହୋଇ ଅଛୁ ଭୋଜପତି । ହେଲା ମରଣ ତୋର ଅତି
କଟି । ଯେତେ ମଲ୍ଲଙ୍କୁ ପେଶିଲ ତାଙ୍କ ପ୍ରାଣ ନେଇଗଲେ କୃଷ୍ଣ
ଝଟତି ଯେ । ରାଜନ । ॥ ୨୧୨ ॥

ଶୁଣି ସେ କଂସ ହିତ ପାଇ ଅମ୍ଭଙ୍କୁ ଅନେକ ମତେ ପୂଜା
କଲେ । ମୁଁ ଯେ କହନ୍ତେ ବ୍ରହ୍ମା ତୋଷ ହେଲେ । ଅନେକ
ମତେ ଆଶ୍ୱାସି ଅମ୍ଭଙ୍କୁ ବହୁମତେ ପ୍ରଶଂସିଲେ ହେ । ସୁମନ ।
ଏବେ ତୁମ୍ଭରେ ହୋଇଲେ ମୁଁ ଚରଣ । ଧନ୍ୟ ତୁମ୍ଭେ ଏ ବ୍ରହ୍ମ
ପରାୟଣ । ଅଶେଷ ବ୍ରଜବିହାର ଲୀଳା ତୁମ୍ଭ ଯିବ ସେ ହେଉ
ପ୍ରସନ୍ନ ହେ । ସୁମନ । ॥ ୨୧୩

ଦଶ ଦିବସରେ କହିଲୁ ଅମ୍ଭଙ୍କୁ ମେଳାଣି ଦିଅ ଏବେ ତୋତେ । ଶୁଣି ଧନପତି ସୁତ ସନ୍ତୋଷେ । ନାରଦଙ୍କୁ ପୁଚ୍ଛେ ସ୍ୱୋମୁନ ପରମ କାରଣ କହ ବଖାଣେ ହେ । ସ୍ୱୋମୁନ । ନାହିଁ ଯାର ଅଦି ଜନ୍ମ ମରଣ । କପାଁ କଲେ କୁତ୍ସିତ ଅଚରଣ । ସ୍ୱକୀୟ୍ୟ ତାଙ୍କୁ ତେଜି କଲେ କପାଁ ପରକୀୟାରେ ପ୍ରବୀଣ ହେ । ସ୍ୱୋମୁନ । ॥ ୨୯୪ ॥

ଅଜ୍ଞାନ ଜନ ଗୁଣ ଧରି ମତିକି କଲେ କପାଁ ଗୋପୀ ରତିରେ । କେତେ ବନତି କହିଲେ ଦୂତିରେ । ନିର୍ଦ୍ଧୟ ହୋଇ ଗମନ କଲେ ଏକା ବନରେ ଘୋର ରାତିରେ ହେ । ସ୍ୱୋମୁନ । ନାନା ଉଦଯୋଗରେ ଉଦବେଗ । କେବେ ମିଳଣ କେବେ ଅଶା ଭଙ୍ଗ । କେତେ ଅବସ୍ଥା ହତି ହତି ସନ୍ତାପ କରେ ନରତେ ଅନଙ୍ଗ ହେ । ସ୍ୱୋମୁନ । ୨୯୫ ।

ବୋଲନ୍ତି ନାରଦ ଶୁଣହେ ବଡ଼ ହେତୁରେ କୃଷ୍ଣ ନର ମୂର୍ତ୍ତି । ଏକେ ଏକେ କହିବ ଶୁଣ ମତି । ବୃନ୍ଦାବନ ନାଭ୍ୟ ସ୍ଥଳ ମୂଳ ଦ୍ରୁମ । ଅଗ୍ର ଗୋଲୋକ ବଖାଣି ହେ । ସ୍ୱମନ । ଅନନ୍ତ ବଇକୁଣ୍ଠ ଡାଳ ଡାଳ । କୃଷ୍ଣ ସ୍ୱରୂପ ନାମ ଅଦିମୂଳ । ଅନନ୍ତ ବ୍ରହ୍ମାଣ୍ଡ ପ୍ରକାଶେ ବନାଶ ବାହାର ପ୍ରଳୟ କାଳ ହେ ସ୍ୱମନ । ॥ ୨୯୬ ॥

ଅନନ୍ତ ବୈକୁଣ୍ଠ ଉତ୍ପତ୍ତି ସେ ମହା ପ୍ରଳୟ ହେଲେ ମୂଳେ ସ୍ଥିତି । ରାଧାକୃଷ୍ଣ ଲୀଳା ନିତ୍ୟ କରନ୍ତି । ଲୀଳା ସନ୍ଧିରେ ସଖୀ ଅନୁପମରେ ଅଛନ୍ତି ଅନନ୍ଦ ମତି ହେ । ଏମନ୍ତ ଲୀଳା ମଧ୍ୟେ ମାନୁଷୀ ଲୀଳା ସାର । ମନ ବଳୁ ଅନେ ନାହିଁ ପ୍ରଚାର । ଦିବ୍ୟ ଦେହରେ ଗୋଲୋକେ ରାଧା କୃଷ୍ଣ ଐଶ୍ୱର୍ଯ୍ୟ ଲୀଳା ପ୍ରଚାର ହେ । ଏମନ୍ତ । ॥ ୨୯୭ ॥

ଏକ ଦିନେ କୃଷ୍ଣ ବିରଜାଙ୍କୁ ଗଲେ ଦ୍ୱାରେ ଜଗାଇ
ସୁଦାମଙ୍କୁ । ସଖୀଗଣ କହିଲେ ଶ୍ରୀରାଧାଙ୍କୁ । ଶୁଣି ଶ୍ରୀମତୀ
ଯେ ଶ୍ରୀକୃଷ୍ଣ ଥିବାର ମାନସେ ଯାଇ ବାଧାକୁ ଯେ । ସତ୍ୱରେ ।
ସଙ୍ଗେ ବିରଜା ପୁରେ କେଳି ଧାମରେ । ଦେଖି ସୁଦାମ ନିରୋଧିଲେ
ଦ୍ୱାରେ । ରାଧା ଶାପ ଦେଲେ ଦବର ସ୍ୱରୂପ ଧର ବୋଲି
କ୍ରୋଧରେ ଯେ । ଏମନ୍ତ । ॥ ୨୯୮ ॥

ବିରଜା ନଦୀ ହୋଇ ବସ୍ତି ବୋଲନ୍ତେ ଶୁଣି ସୁଦାମ
ଦେଲେ ଶାପ । ତୁମ୍ଭେ ହେ ଦେବୀ ଧର ନର ରୂପ ।
ନପୁଂସକ ପଣେ ଲଭ କୃଷ୍ଣ ଲାଗି ଦୁର୍ବାଦ ପାଅ ଅମାପ ଗୋ ।
ଏମନ୍ତ । ଶାପ ଦେଇ ପରସ୍ପରରେ । ବିରଜା ନଦୀ ବହି
ଗୋଲୋକରେ । ବୋଇଲେ ମୁଁ ହେବ ନର ରୂପ ଭକ୍ତ
ବଚନକୁ ଅଙ୍ଗୀକାରେ ଯେ । ସ୍ନେହଦେବୀ । ॥ ୨୯୯ ॥

ପରକୀୟା ରସେ ରସି କୃଷ୍ଣ ସଙ୍ଗେ ବିରଜାଙ୍କର ନଟେଜିବ ।
ଅବଶେ ଭକତଙ୍କୁ ଡାକିବ । ଏକଥା ମୋ ଅନ ନୋହିବ
ମଧୁର ରସ ବିସ୍ତାର କରିବ ହେ । ମଧ୍ୟରେ । ଏମନ୍ତ ଶାପ
ହୋଇଥିଲା ପୂର୍ବେ । ମାନବ ରୂପ ପ୍ରକଟିଲେ ଏବେ । ପୁଣ
ରାଧାକୃଷ୍ଣ ଯୁଗଳେ ବିହାର କରୁଥିଲେ ଗୋଲୋକେ ପୂର୍ବେ ହେ ।
ପ୍ରେମରେ । ॥ ୩୦୦ ॥

ରାଧା ଜଣାଇଲେ ହେ ପୁରୁଷୋତ୍ତମ ଏଥୁ ଅଧିକ କେଉଁ
ରସ । କହ ସୁଦୟା କରଣ ମାନସ । ଶୃଙ୍ଗାର ଉଜ୍ଜ୍ୱଳ ରସ
ମଧ୍ୟେ ସାର ଏଥୁ କି ଅଛି ବିଶେଷ ହେ । ସ୍ନେହରୁ । କୃଷ୍ଣ
କହନ୍ତି ଶୁଣ ପ୍ରାଣପ୍ରିୟେ । ଶୃଙ୍ଗାର ରସ ଅତି ସୁଖୋଦୟେ ।
ଐଶ୍ୱର୍ଯ୍ୟ ସ୍ୱକୀୟା ମାଧୁର୍ଯ୍ୟ ବିଶେଷ ପରକୀୟା ରସ ହୋଏ ଗୋ
ସଜନୀ । ॥ ୩୦୧ ॥

ମାଧୁର୍ଯ୍ୟ ବିଶେଷ ପରକୀୟାରୁ ରସ ପ୍ରେମ ଅଧିକ ପ୍ରକାଶଇ । ଶୁଣ ସଜନୀ ଏକଚିତ୍ତ ହୋଇ । ଇନ୍ଦ୍ରିଲି ଅଙ୍ଗ ଗୋବିନ୍ଦଙ୍କ ଯେ ସୁଖ ଅଛୁ ଅତି ଲୋଭ୍ୟ ହୋଇ ଯେ । ଏମନ୍ତ । ଦେବୀ ବୋଇଲେ ଯେତେବେଳେ ଉତ୍ତମ । ତୃପ୍ତ କରନ୍ତୁ ପୁରୁଷୋତ୍ତମ । ମୋହରେ ସ୍ନେହ ଥିବ ଯଦି ତୁମ୍ଭେ ଦେଖାଇବ ସେହି ପ୍ରେମ ହେ । ମୋହନ । ॥ ୩୦୨ ॥

କୃଷ୍ଣ ବୋଲନ୍ତି ଆମ୍ଭରେ ଯେ ନୁହଇ ଭକ୍ତ କୃପାରେ ହୋଏ ଖ୍ୟାତି । ସେ ପ୍ରଳମ୍ବ ଅଟନ୍ତି ଅଲକ୍ଷିତି । ଗୋଲୋକ ଦୃଶ୍ୟ ର ତା'ଲବ ମାତ୍ରକୁ ହୋଇବ ସମାନ କୃତି ଗୋ । ସଜନୀ । ପୂର୍ବେ ଥିବାରୁ ଏମନ୍ତ ବିଗ୍ରହ । ସୁଦାମ ହେତୁରେ କଲେ ପ୍ରଗ୍ରହ । ଏକ ଦିନ ବଇକୁଣ୍ଠବାସୀ ଛିଦ୍ରକୁ ରଖି ଗଲେ ଦ୍ୱାର ଯେ । ମୋହନ । ॥ ୩୦୩ ॥

ତହିଁରେ ସଖୀ ନୃତ୍ୟ ଛଳେ ତରୁଣୀ ନୃତ୍ୟେ ମୋହିତ ହେଲେ ହରି । ଜାଣି ଶାପ ଦେଲେକ ରାସେଶ୍ୱରୀ । ଅଦମ ଦେଖି ଏ ପୁଂସ ଛାଡ଼ି ଦେଲୁ ମର୍ତ୍ତ୍ୟେ ଜନ୍ମ ନର ରୂପ ଧର ଯେ । ଛିଦ୍ରର । ମର୍ତ୍ତ୍ୟ ଭୁବନ ଭିନ୍ନ ଜନ୍ମ ହେବୁ । ଜଗତ ବଡ଼ର ବଳ ପାଇବୁ । ଶୁଣି ଯେ ରାଧା କୃଷ୍ଣଙ୍କୁ ସ୍ତୁତି କଲେ ଉଦ୍ଧାର କରିବା ପ୍ରଭୁ ହେ । ମୋହନ । ॥ ୩୦୪ ॥

ଅତି ବିନୟେ ଜଣାଅନ୍ତେ ଶ୍ରୀହରି ପ୍ରିୟାଙ୍କୁ କହନ୍ତି ମଣାଇଁ । ଗୋଲୋକ ନାଥ ଚଳାର୍ଥ କପାଇଁ । ମାନସରେ ଯେବେ ଏ ମୋହର ଶାପ ଅନ୍ୟଥା କେବେ ନୁହଇ ହେ । ଗୋଲୋକନାଥ । ସୁର ଯେତେକ ପ୍ରାର୍ଥନା କଲେ ତାଙ୍କେ । ଦୁଷ୍ଟ ନାଶନେ ଜାତ ଯଦୁ କୁଳେ । ଦେବକୀ ବସୁଦେବ ତାତ ଜନନୀ ବନ୍ଦୀ ଗୃହରେ ମିଳିଲେ ଯେ । ଏମନ୍ତ । ॥ ୩୦୫ ॥

ଗୋପରେ ଜନମ ହୋଇଥିବୁ ଆମ୍ଭେ ଛିଦ୍ରଲା ଆମ୍ଭ ସଙ୍ଗେ ଜାତ । ଏଥି ମିଳିବ ଅମୃତ ସଙ୍ଗତ । ଏଣିକି ଥୋଇ ସ୍ପୃହା ପାଳିବାଇ କେବେ ବଂଶ ହସ୍ତ ଶୂନ୍ୟ ପଥ ଯେ । ଚଳିବେ । ଆମ୍ଭ ସଙ୍ଗରେ ଥାଇ ଦୁଷ୍ଟ ନାଶ । ରୁକ୍ମିଣ୍ୟାଦି ଦ୍ୱାରକାରେ ବିଳାସ । ମହି ଭାର ନାଶି ବଇକୁଣ୍ଠେ ଯିବୁ କରି ନର ଲୀଳା ଶେଷ ହେ । ହେନାଥ । ॥ ୩୦୬ ॥

ଏମନ୍ତ ଶାପ ଶ୍ରବଣରୁ ଯେଦିରୂପେ ନର ଲୀଳା କରି ଉଦିତ । ଭଜୁଥିଲେ ଯେ ଅଦ୍ଭୁତ ଭକତ । ବହୁ କାଳ ହେଲା ଅଭିଶୂର୍ଯ୍ୟେ କୃଷ୍ଣ ନପାଇ କାତର ଚିତ୍ତ ଯେ । ସମସ୍ତେ । ଯେବେ କୃଷ୍ଣ ନରଦେହ ଧରିବେ । ତେବେ ଗୋପ କନ୍ୟା ହୋଇ ବରିବେ । ପ୍ରକାଶି ମାନୁଷ ଦେହକୁ କରୁଣା କରଣ ଭକତ ଘରେ ଯେ । ଏମନ୍ତ । ॥ ୩୦୭ ॥

ଲୋକେଶ ଭବ ଅନୁରୂପେ ଦ୍ୱିତୀୟ ଶ୍ୱେତ ବରାହ କଳପରେ । ବର୍ତ୍ତମାନ ପ୍ରଥମ ଦିବସରେ । ଶୁଣ ହେ ମାନବ ଦେଇ ତେର ଦଣ୍ଡ ତେଇଶ ଲକ୍ଷରେ ଯେ । ହର୍ଷିଷ୍ୟ । ବଇବ ମନୁ ଅଷ୍ଟାଦଶ ଯୁଗ । ଦ୍ୱାପର ଶେଷରେ ସର୍ବ ସଂଯୋଗ । ପରମ ମୂଳ ନଭ ଶ୍ରୀବୃନ୍ଦାବନ ଶ୍ରୀରାଧାକୃଷ୍ଣ ସଂଯୋଗ ଯେ । ଏମନ୍ତ । ॥ ୩୦୮ ॥

ଅନନ୍ତ ବଇକୁଣ୍ଠେ ଯେତେ ମୂରତି ସକଳ ମୂଳେ କୃଷ୍ଣ ସ୍ଥିତି । ଯେଉଁ ରୂପେ କନ୍ଦମୂଳ ବର୍ତ୍ତନ୍ତି । ବହୁତ ମାଳ ଥାଇ ମୂଳେ କେବଳ ସ୍ୱାଦୁ ପୂର୍ଣ୍ଣ ହୋଏ ଅଛି ଯେ । ଏମନ୍ତ । ସହସ୍ର କଳା ପୂର୍ଣ୍ଣ କୃଷ୍ଣମୂର୍ତ୍ତି । ତେଣୁ ପୁରୁଷୋତ୍ତମ ଗୋକୁଳପତି । ନାହିଁ ଏଥି ଅନ୍ୟ ସ୍ୱୟଂ ପ୍ରକାଶକ ବେଦ ପୁରାଣରେ ଖ୍ୟାତି ଯେ । ଏମନ୍ତ । ॥ ୩୦୯ ॥

ନଳ କୁବେର ପଦ୍ମରନ୍ତୁ ହେମୁନି କହ ଠାକୁରାଣୀ ଚରିତ । ଅଭିମନ୍ୟୁ ରେ କାପଟ୍ୟ ବଚନ । କେଉଁ ସ୍ୱଭେ ଅବତରିଲେ ଭଉଁପ ବର୍ଣ୍ଣିଲେ କହ ବୃତାନ୍ତ ହେ । ହେମୁନ । ନାରଦ ବୋଲନ୍ତି ଶୁଣ ସୁବୁଦ୍ଧି । ତୁମ୍ଭେ ଏହା ପୁଚ୍ଛିପାର ଏପିଛି । କୃଷ୍ଣ ଗୋକୁଳରେ ପ୍ରକଟ ଶ୍ରୀରାଧା ଉଛାଠ ହେବାର ବଧି ହେ । ସୁମନ । ॥ ୩୧୦ ॥

ନିତ୍ୟ ସିଦ୍ଧ ଗଣ ଯେନ ଆହ୍ଲାଦିନୀ ଶକ୍ତି କର ଅବଲମ୍ବିତ । ବୃଷଭାନୁସୁତା କୀର୍ତ୍ତିଦା ମାତ । ଅତି ପଦ୍ମନିର୍ଯ୍ୟ ରାଧା ନାମ ବହି ଗୋପରେ ହୋଇଲେ ଖ୍ୟାତ ଯେ । ଏମନ୍ତ । ଅଭିମନ୍ୟୁ ପତି ହେଲା କେମନ୍ତେ । ତାହା କହିବା ଶୁଣ ଏକଚିତ୍ତେ । ସୁଦାମ ସଙ୍ଗେ ଜାତ କନ୍ଦର କୁଳେ ଶଙ୍ଖଚୂଡ ନାମ ଖ୍ୟାତ ଯେ । ଏମନ୍ତ । ॥ ୩୧୧ ॥

ତ୍ରିପୁରେ ଏହି ଅଜାଲେ ଜାତ ହୋଇ ତ୍ରିପୁରା ହେଲା ତାର କାନ୍ତା । ସତୀ ସାଧବୀ ଯେହ୍ନ ପତିବ୍ରତା । ଏହା ସଙ୍କାଶରୁ ଭିନ୍ନପୁରେ ତାକୁ ସଙ୍ଗ୍ରାମେ ନାହିଁ ଜିଣନ୍ତା ହେ । ସୁମନ । ଲକ୍ଷ୍ମୀ ସମ ନ ହୋଇବେ ଯାହାକୁ । ହରି କପଟେ ଛମିଲେ ତାହାକୁ । ଜାଣି ସେ ଦେହ ତେଜିଲା ସତୀ ଶଙ୍ଖଚୂଡ ହାରିଲା ପ୍ରାଣକୁ ଯେ । କାଳରେ । ॥ ୩୧୨ ॥

ଶାପରୁ ନିସ୍ତରି ଗୋପଙ୍କେ ଜନ୍ମିଲେ ଗୋବନ୍ଦ ସେବାରେ ମିଳିଲେ । ପୁଣି ତ୍ରିପୁରା ସ୍ୱୟଂଭବ କୁଳେ । କେଦାରସେନ ରାଜାଙ୍କ ଯଜ୍ଞ କାଳେ ହୋମ କୁଣ୍ଡୁ ଜାତ ହେଲେ ସେ । ସୁନ୍ଦରୀ । ରୂପ ଗୁଣେ ଜିଣି ରତି ପାର୍ବତୀ । ରାଜା ନନ୍ଦିନୀ ପାଳି ତୋଷ ମତି । ଯତନେ କେତେକ ବରଷ ପାଳିଲେ ପୁଣି ତପସ୍ୟାର ସ୍ଥିତି ହେ । ଏମନ୍ତ । ॥ ୩୧୩ ॥

ବନ୍ଧୁତା ହର ହୋଇଲେ ଉପଗତ ଯେ କନ୍ୟା ସନମତ ନୋହି । ଗତ ହେତୁକୁ ମାନସରେ ଧାଇ । କୃଷ୍ଣ ମୋ ପତି କେମନ୍ତେ ପାଇବ ମୁ ବୋଲି ସେତାଙ୍କୁ ଜଣାଇ ଯେ । ସୁନ୍ଦରୀ । ଯମୁନା କୂଳେ କତ୍ୟବଇ ଯୋଗ । ହେବ କୃଷ୍ଣରେ ଏମନା ତନୁ ବେଗ । ସେତା ସମ୍ମତେ ଯମୁନା କୂଳେ ବୃନ୍ଦାବନେ ଆରମ୍ଭିଲେ ଯୋଗ ଯେ । ସୁନ୍ଦରୀ । ॥ ୩୧୪ ॥

ଧ୍ୟାନେ ବସି ମାନସରେ କୃଷ୍ଣ ଚନ୍ଦ୍ର କାନ୍ତ ଭାବେ ତନୁ ନିବେଦି । ସେହିଦିନୁ ବୃନ୍ଦାନାମ ପ୍ରସିଦ୍ଧି । ସେବନ୍ତି ଖଗ ମୃଗ ତୃଣ ଲତିକା ବନଦେବ ନଦୀ ଅଦି ଯେ । ସେକାଳେ । ସପ୍ତ ସାଧବୀ ମହା ପତିବ୍ରତା । ସ୍ୱର୍ଗେ ଶିବରୁ ବ୍ରହ୍ମାଦି ଦେବତା । କେଦାର କନ୍ୟା ତପକରେ ଯାହାର ଅନ୍ତ୍ୟନପାଏ କଥିତା ଯେ । ବଚନ୍ତି । ॥ ୩୧୫ ॥

ନବ ତରୁଣୀ ଏକାଦଶୀ ଯମୁନା ତୀର ବନରେ ତନୁ ସାଜି । କର କାମ୍ୟ କେଶିତ ତପେ ମଜ୍ଜି । ଧର୍ମ୍ମକୁ ଅନାଇଁ ବୋଇଲେ ଯେ ଦୃଢ଼ ବ୍ରତ ଆସ ତୁମ୍ଭେ ହୋଇ ନ୍ୱେ । ସତ୍ୱରେ । ଇଚ୍ଛା କରୁଛ କାହାରେ ସୁନ୍ଦରୀ । ଯାଅ ତୁମ୍ଭେ ବ୍ରାହ୍ମଣ ରୂପ ଧର । ସଙ୍ଗେ ମଦନ ବସନ୍ତ ନାଥ ବଚନତ ହେଲେ ଉଙ୍କ କର ଯେ । ଅଥିବ । ॥ ୩୧୬ ॥

ତଥାତ ଅଦେଖେ ଚଳଗଲେ ଧର୍ମ୍ମ ପ୍ରବେଶ ହେଲେ ବୃନ୍ଦାବନେ । ଲତା ତରୁ କର୍ଣ୍ଣିତ ସୁମନେ । ମନ୍ଦ ସୁଗନ୍ଧ ଅନିଳ ବହେ ପୁଂସକୋକିଳ ଭୃଙ୍ଗ ନିଃସ୍ୱନେ ଯେ । ଶୋଭିତ । ଦିବ୍ୟ ସ୍ଥଳରେ ମାଧବୀ ମଣ୍ଡପ । ପୀତାମ୍ବର ମଣ୍ଡିତ ଚନ୍ଦ୍ରାତପ ରତ୍ନପଲଙ୍କ ହଂସତୂଳ ତୂଳ ପୁଷ୍ପ ପାଖୁଡ଼ା ଅଗରୁ ଧୂପ ସେ । ॥ ୩୧୭ ॥

ଚନ୍ଦନ କସ୍ତୁରୀ ଅତି ସୁବାସିତ ପଣ୍ଣୀରେ ଅତି ସୁଗନ୍ଧ । ହୋଏ ମାନସ ଅତିହିଁ ପ୍ରମୋଦ । ଦେଖି ଧର୍ମ ଦେବ ଏମନ୍ତ ସୀତିକି ଡେକିଲେ ମନ ପ୍ରସାଦ ସେ । ସେଠାରେ । କର୍ପୂର ଧୂଳ ସେନେ କନ୍ୟା ଜନେ ବସ୍ତ୍ର ସୁବେଶରେ ତନୁ ସାଜେ ହୃଦୟ ପଦ୍ମରେ ମାନସ ନିବେଶି କୃଷ୍ଣ ପଦ୍ମପାଦ ଭଜେ ସେ । ସୁନ୍ଦରୀ । ॥ ୩୧୮ ॥

ଯେମନ୍ତେ ବସନ୍ତ ସେବଣ କହିଲେ ମୁନି ମୋହିତ ଗୃହିଁ କରି । ଦେଖି ଧର୍ମ ଧୃତି ଧରି ନପାରି । ଏତେ ସୁନ୍ଦରୀ ଅମୃତେ କି କହିବ ବୋଲି ମାନସେ ବଗୃହସେଁ [?] ସେକାଳେ । ଚନ୍ଦ୍ର ଏମନ୍ତ ସନ୍ଧ୍ୟକୁ ଯାଇ । ତାଙ୍କୁ କୋମଳ କରି ବାଣୀ କହି । କାହା କନ୍ୟା ତୁମ୍ଭେ ତୁମ୍ଭ କାନ୍ତ କେଉଁ ତପ କରି ଭଜ ପାଇଁ ରେ । ସୁନ୍ଦରୀ । ॥ ୩୧୯ ॥

ଧର୍ମ ଦେବଙ୍କ ମୃଦୁ ବାଣୀ ଶ୍ରବଣେ ନୟନ ଫେଡ଼ିଣ ଗୃହିଁଲେ । ଦ୍ୱିଜ ବୋଲି ସେ ଓଳଗି ହୋଇଲେ । ଅତି ସମ୍ଭ୍ରମରେ ତାଙ୍କ ଜଳ ଆସନ ଫଳ ମୂଳ ନେଇ ଦେଲେ ସେ । ସୁନ୍ଦରୀ । ଅତିଥି ଭାବେ ତାଙ୍କୁ ପୂଜା କଲେ । ଧର୍ମ ରାଜନ ଯାହା ପୁଚ୍ଛିଥିଲେ । ପ୍ରତି ବଚନେ କନ୍ୟା ଜାତି ବୋଲିଣ କେଦାର କନ୍ୟା କହିଲେ ସେ । ଏମନ୍ତ । ॥ ୩୨୦ ॥

ମାନୁଷୀରେ ମୁଁ ଶ୍ରୀକୃଷ୍ଣଙ୍କୁ ସେବଇ ସେ ପତି ମୋହର ଗତି । ଶୁଣି ଧର୍ମ ଦେବ ଏହା କହନ୍ତି । ସୁନ୍ଦରୀ ଏକଥା କେଉଁ ହେ ସେ ଶ୍ରୀକୃଷ୍ଣ ରାଧାରେ ନାଗରେ ମତି ସେ । ସୁନ୍ଦରୀ । ଶିଖ ଯୋଗୀନ୍ଦ୍ର ମୁନିଙ୍କ ଅଗମ୍ୟ ଗୋଲୋକ ପତି ସେ ଅତି ଦୁର୍ଗମ । ସେଅର୍ଥେ ତନୁ ଗଞ୍ଜାଇ ହରାଉଛୁ ଏମନ୍ତ ଅଙ୍ଗ ସୁଯମରେ । ସୁନ୍ଦରୀ । ॥ ୩୨୧ ॥

ଶ୍ରେ କନ୍ୟା ଆନ ବର ବର ଗନ୍ଧର୍ବ ଇନ୍ଦ୍ରାଦି ଦେବତା ମାନଙ୍କୁ । ଅମ୍ଭେ ବଶ କରାଇବା ତାହାଙ୍କୁ । ଶୁଣି ସୁନ୍ଦରୀ କର୍ଣ୍ଣେ କର ଦେଇଣ ବୋଲେ କି କହ ଆମ୍ଭଙ୍କୁ ହେ । ସୁମନ । ସେ କୃଷ୍ଣ ଅଟେ ପରମ ପୁରୁଷ । ଯାବେ ବଶ ଅଭାବରେ ଅଦୃଶ୍ୟ । ତନ୍ତ୍ରେ ନର ଜପାଇ ନ ପାଇଲେ ଏ ଦେହ କହିବ ନାଶ ହେ । ସୁମନ । ॥ ୩୨୨ ॥

ଏରୂପେ ଶତପଦ୍ମରେ ଜାଣନ୍ତୁ କୃଷ୍ଣ ପତି ଅନରେ ନାହିଁ ଭ୍ରମ । ଶୁଣି କହନ୍ତି ଏବଚନ ଧର୍ମ୍ମ । ପରମ ସୁନ୍ଦରୀ ରାଧାଙ୍କୁ ଦେଖିଣ ଭୋରେ ରଚିବେନି ଶର୍ମ ଗୋ । ସୁନ୍ଦରୀ । ମୁହିଁ ଧର୍ମଙ୍କ ପକ୍ଷୀ ମୋତେ ବର । ଯହିଁ ମନ ଇଚ୍ଛା ସ୍ୱଚ୍ଛେ ବିହର । ବ୍ରହ୍ମାଣ୍ଡରେ ଯେତେ ରମ୍ୟସ୍ଥାନ ତହିଁ ସୁଖେ କରିବା ବିହାର ଗୋ । ସଜନୀ । ॥ ୩୨୩ ॥

କହୁ କହୁ କାମାତୁରେ ଧର୍ମ୍ମ କୋଳ କରିବାକୁ ମିଳେ ଲୁଚିତେ । ଦେଖି ସୁନ୍ଦରୀ ଅତି କୋପ ଚିତ୍ତେ । ଶାପ ଦେଲେ ମୁହିଁ ଯେବେ ପତିବ୍ରତା କ୍ଷୀଣ ତନୁ ହୁଅ ସତେ ରେ । ଏମନ୍ତ । କାମ ନ ପୀଡୁ ନପୁଂସକ ହୁଅ । ଯାଅ ଯା ଧର୍ମ୍ମ ନର ଯୋନି ପାଅ । ଶାପ ପାଇ ଧର୍ମ୍ମ କ୍ଷୀଣ ହେଲେ ଦେଖି କାତର ଦେବ ସମୂହ ସେ । ସେକାଳେ ॥ ୩୨୪ ।

ବ୍ରହ୍ମା ଆଦି ଦେବେ ମିଳିଲେ ସେ ପତିବ୍ରତା ଶାପରେ ଧର୍ମ୍ମ ନାଶ । ସନ୍ତ୍ରହିଁ ଅପି ହୋଇଲେ ପ୍ରବେଶ । ପତି କ୍ଷୀଣ ରୂପ ଦେଖିଣ ସେ ଧର୍ମ ପତ୍ନୀ ବଦନ ବିରସ ସେ । ସେକାଳେ । ଶୋକେ ନାରାୟଣ ପାଦେ ଜଣାଇ । କର ଉଦ୍ଧାର ପତି ଦାନ ଦେଇ । ଏବେ ମୋ ପତିଙ୍କ ଶାପଦେଲେ ଏନ୍ତୁ ରହୁ ତାଙ୍କ ପତ୍ନୀ ହୋଇ ହେ । ହେପ୍ରଭୁ । ॥ ୩୨୫ ॥

ଜନ ମୁଖରେ ଏ ବୋଲାଇ ଦୋଷର ଧର୍ମରୁ କୃଷ୍ଣ ସଙ୍ଗ ହେବ । ଶାପ ଦେଖି ଡରିଲେ ସବୁ ଦେବ । ବୃନ୍ଦାଙ୍କୁ ପ୍ରବୋଧ କହନ୍ତି ବୋଲନ୍ତି ଶାପତ ଆନ ନୋହିବ ହେ । ସୁମନ । ପତିବ୍ରତା ଦ୍ରୋହ ତନ୍ତ୍ରେ ଧର୍ମେ । ନପୁଂସକ ଅଜ୍ଞାନ ନରକରେ । କୃଷ୍ଣ ପତିଙ୍କ ପାଇଲେ ଶାପମୁକ୍ତ ହୋଇବ ତୈବେ ସୁଷମେ ହେ । ସୁମନ । ।୩୧୬॥

ଉଭୟ ମତରେ କହିଲେ ବିଧାତା କୃଷ୍ଣ ହୋଇବେ ନର ଦେହି । ତେବେ ବେନିଙ୍କ ଶାପ ଖଣ୍ଡ ଯାଇ । ଏମନ୍ତ ଶାପ ଥିବାରୁ ଧର୍ମ ଗୋପେ ଜନମ ହୋଇଲେ ଯାଇ ସେ । ଏମନ୍ତ । ବୃନ୍ଦାବତୀଙ୍କ ଶାପେ କ୍ଳୀବ ସେଣୁ । ଅଭିମନ୍ୟୁ ନାମ ସେ ହେଲେ ତେଣୁ । ଚନ୍ଦ୍ରପ୍ରାୟେ କ୍ଷୀଣ ଦେହରୁ ଯେ ଚନ୍ଦ୍ରସେନ ନାମ ହେଲା ଏଣୁ ଯେ । ଏମନ୍ତ । ।୩୧୭॥

ଦେଖିଲେ ଗୋକୁଳେ ଗର୍ଗ ଶ୍ରୀମନ୍ତ ଗୁଣ ଅତିହିଁ ଯୋଗ୍ୟ ବନ । ବୃଷଭାନୁସୁତା କଲେ ପ୍ରଦାନ । ଚନ୍ଦ୍ରସେନକୁ ସ୍ଥୂଳ ରୂପେ ସେ ବୃନ୍ଦାବତୀ କରନ୍ତି ସେବନସେ । ଏମନ୍ତ ! ମାନୁଷୀ ଦେହେ ଧର୍ମ ନପୁଂସକ । ପତିବ୍ରତା ଶାପେ ଏ ଅଟେବନ୍ତ । ରାଧାଙ୍କ ଅଙ୍ଗ ସଙ୍ଗ ସ୍ପର୍ଶ ନାହିଁ ପତି ପତ୍ନୀ ବୋଲାନ୍ତିଥାନ୍ତି ଲୋକ ଯେ । ଏମନ୍ତ । ॥୩୧୮॥

ଏହି ହେତୁରୁ କୃଷ୍ଣ ସ୍ୱୟଂ ପ୍ରକାଶ ରାଧା ପ୍ରେମରେ ସଦା ମନ । ଅଂଶ ଅଂଶଙ୍କେ ଅସ୍ଥିର ମାରିଣ । ଘଟାଇ ଭୂମିରେ କହିଲୁ ପୂର୍ବରେ କହିଲେ ଯା ନାରାୟଣ ଯେ । ସୁମନ । ବ୍ରହ୍ମବୈବର୍ତ୍ତ ପୁରାଣର ବାଣୀ । ମନ ସଂଶୟ ତେଜିଦେବ ଶୁଣି । ନାରଦ ପଦ୍ମପାଦ ପୂଜା କରନ୍ତି ତୋଷେ ବ୍ରଜଲୀଳା ଶୁଣି ସେ । ହରଷେ । ॥୩୧୯॥

ନଳ କୂବର ମଣିଗ୍ରୀବ ବେନି ଯେ ନାରଦ ପାଦେ ପ୍ରଣମିତ । ପୂର୍ବ ଶାପନାରୁ ବ୍ରଜ ଚରିତ । ଉପଦେଶ ଦେଇ ନାରଦ ଚଳନ୍ତେ ଗାଇ ଗୋବିନ୍ଦଙ୍କ ଗୀତ ଯେ । ସ୍ୱରସେ । ଏହୁ ବୃନ୍ଦାବନଚନ୍ଦ୍ର ବିହାର । ଚତୁର୍ଦ୍ଦଶ ପ୍ରକାଶ ଏ ବିସ୍ତାର । ଶ୍ରୀଗୁରୁ କୃପାରୁ ସମ୍ପୂର୍ଣ୍ଣ କଲି ମୁଁ ସୁଜନେ ଘେନ ମନର ହେ । ଏତାଧ । ॥ ୩୩୦ ॥

ମାରମକଳ୍ପତରୁ ବଟେର ଏ ଫଳ ହୋଇଛୁ ଭାଗବତେ ଠୁଳ । ଶୁକ ମୁଖ ଶବ୍ଦ ଅତି ମଞ୍ଜୁଳ । ପାନ କର୍ନ୍ତେ ସକଳ ଦ୍ରବ ହେଲେ ମାନସ ହୋଇ ନିଷ୍ଫଳ ହେ । ସୁଜନେ । ଅତି ମଧୁର ରସ ସୁଧା ସମ । ସେବନ ସ୍ୱମତି ହୋଇ ଅତି ପ୍ରେମ । ଭବେକ ଉପାୟକ ପଦମାର୍ଗ ନଜାଣେ ଖଳ ଅଧମ ହେ । ଏରଧ । ॥ ୩୩୧ ॥

ଶର୍କରା ସ୍ୱାଦୁ ଶୂକର ନଜାଣିଲା ପରାଏ ନରୂତେ ଖଳଙ୍କୁ । ଏହୁ ପୀରତି ସକ୍ଷେ ସୁଜନଙ୍କୁ । ବ୍ରଜ ପ୍ରକଟନ ମାଧୁର୍ଯ୍ୟଗାମୁ ଯେ ହୋଇଲା ଏଥି ଯୋଗ୍ୟଙ୍କୁ ହେ । ସୁଜନେ । ବସୁ ଗ୍ରହ ସଦନ୍ତ୍ର ଅଠ ଶତ । ସପ୍ତଷଠି ବରଷ ସମାପତ । ଶକାଙ୍କ ଶୋଳଷ ଅଣନବ ସମ୍ବତ୍ସର ନାମ ସର୍ବଜିତ ହେ । ସୁଜନେ । ॥ ୩୩୨ ॥

କାର୍ତ୍ତିକ ଶୁକ୍ଳ ପଞ୍ଚମୀରେ ଆରମ୍ଭ କଲି ଏହୁ ଗ୍ରନ୍ଥ ବିଧାନ । ମାଘ ବସନ୍ତ ପଞ୍ଚମୀରେ ପୂର୍ତ୍ତି । ମଙ୍ଗଳବାର ଦ୍ୱାଦଶ ଦଣ୍ଡ ଯୋଗ ବତିଶ ବଳନ୍ତି ପ୍ରମାଣ ହେ । ସୁଜନେ । ବସି ଶ୍ରୀରାମସ୍ୱାମୀଙ୍କ ସମ୍ମୁଖରେ । ଅତି ତୋଷେ ଖିମୁଣ୍ଡିପାଟଣାରେ । ଗଙ୍ଗବଂଶୋତ୍ପନ୍ନ ଜଗନ୍ନାଥ ନାରାୟଣଦେବ ସ୍ୱଛତ୍ରରେ ହେ । ସୁଜନେ । ॥ ୩୩୩ ॥

ବୃନ୍ଦାବନେ ରାଧାକୁଣ୍ଡ ଶ୍ୟାମକୁଣ୍ଡ ଆଦି କୁଞ୍ଜବର ଦର୍ଶନ, ପୁଣି ଯେତେ ସଙ୍କେତ ସ୍ଥଳ ମାନ । ଦ୍ୱିଧ ସ୍ଥଳ ଯାଇ ଶେଷ ପରିକ୍ରମା କରି ଗିରି ଗୋବର୍ଦ୍ଧନ ଦେଖି । ସୁଜନେ । ଶେଷେ ଦେଖିଲ ଲୋଚନ ଭରି । ତହିଁ ଯମୁନା ଜଳେ ଅବଗାହି । ପୁଣି ବୃନ୍ଦାଦେବୀ କୃପାରୁ ବର୍ତ୍ତିଲ ଯେତେ ସୁଜନ ନିବନ୍ଧ ହେ । ଏରାଧ । ॥ ୩୩୪ ॥

## ଶ୍ରୀ ବୃନ୍ଦାବନଚନ୍ଦ୍ର ବିହାର ସମ୍ପୂର୍ଣ୍ଣ ॥

